# ହିମାଦ୍ରୀର ହିମଖଣ୍ଡ

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଜୟକୃଷ୍ଣ ମହାନ୍ତିଙ୍କ
ପ୍ରଥମ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ

୨୫ ଅଗଷ୍ଟ, ୨୦୦୯, ମଙ୍ଗଳବାର

*ସମ୍ପାଦକ*

ଡା: ତପନ କୁମାର ମହାନ୍ତି

*ସଂଯୋଜନା*

ଡା: ଅଖିଳ ମୋହନ ପଟ୍ଟନାୟକ

ଜୟକୃଷ୍ଣଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଅବସରରେ ପ୍ରକାଶିତ ସ୍ମରଣିକା
ପାଇଁ ବହୁ ଉପାଦେୟ ଲେଖା
ସମାଜର ବିଭିନ୍ନ ବର୍ଗର ଯେଉଁ ପ୍ରତିଷ୍ଠିତ ବ୍ୟକ୍ତିମାନେ ଲେଖି
'ହିମାଦ୍ରୀର ହିମଖଣ୍ଡ'ର ଶ୍ରୀବୃଦ୍ଧି କରିଛନ୍ତି,
ସେମାନଙ୍କ ନିକଟରେ ଆମେ ଚିର ଋଣୀ।

*ଏହି ସ୍ମରଣିକାଟିର ପ୍ରକାଶନରେ ସାହାଯ୍ୟ ଓ ସହଯୋଗ କରିଥିବାରୁ*
*ବିଭିନ୍ନ ଅନୁଷ୍ଠାନ, ବ୍ୟକ୍ତିବିଶେଷଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛୁ।*

ସମୟର ସ୍ୱଳ୍ପତା ଦୃଷ୍ଟିରୁ ପ୍ରକାଶନରେ ରହିଯାଇଥିବା ତ୍ରୁଟି ପାଇଁ
ଏବଂ ହସ୍ତଗତ ହୋଇଥିବା ସମସ୍ତ ଲେଖା ପ୍ରକାଶ କରିପାରିନଥିବାରୁ
ଆମେ କ୍ଷମା ପ୍ରାର୍ଥନା କରୁଛୁ।


ଆଲୋକ ଚିତ୍ର : ଡ଼ାକ୍ତର ତପନ କୁମାର ମହାନ୍ତି
ଡ଼ାକ୍ତର ସବିତା ମହାନ୍ତି
ସ୍ୱୟଂ ପ୍ରକାଶ ଜେନା
ସାର୍ଥକ ମହାନ୍ତି
ଆଦର୍ଶ ମହାପାତ୍ର
ହାର୍ଦ୍ଦିକ ପଟ୍ଟନାୟକ
ଇନ୍ଦୁଲତା ମଣ୍ଡଳ
ରବିନ୍ଦ୍ର କୁମାର ପଣ୍ଡା

ପ୍ରଚ୍ଛଦପଟ ପ୍ରସ୍ତୁତି : ଶ୍ରୀ ବିଶ୍ୱନାଥ ବାରିକ

ମୁଦ୍ରଣ : ଶୋଭନ, ଭୁବନେଶ୍ୱର

ପ୍ରକାଶକ : କିରଣ ଲେଖା-ଜୟକୃଷ୍ଣ ମହାନ୍ତି ସ୍ମାରକୀ ଟ୍ରଷ୍ଟ, ଭୁବନେଶ୍ୱର

# ସମ୍ପାଦକୀୟ



ସେହିଠାକୁ ମତେ ନିଅ ପ୍ରଭୁହେ
ଯେଉଁଠାରେ ଖାଲି ଲୁହ,
ଆଜୀବନ ଯିଏ କାନ୍ଦୁଛି ଖାଲି
ପୋଛିବି ତା ଆଖି ଲୁହ।

ତୁମର ଜନ୍ମ ଦୁଃଖ, ଦାରିଦ୍ର୍ୟ, ଅନାଟନ - ଲୁହ ଭିତରୁ। ହେଲେ ସେ ସବୁକୁ ଭ୍ରୂକ୍ଷେପ ନକରି ଆଜୀବନ ତୁମେ ଏ ଦେଶର ଅଗଣିତ ନିଷ୍ପେଷିତ, ଦଳିତ, ଅନାହାରୀ, ଅର୍ଦ୍ଧାହାରୀଙ୍କ ଆଖିର ଲୁହରେ ବିଚଳିତ, କ୍ଷତ ବିକ୍ଷତ ଓ ରକ୍ତାକ୍ତ ହୋଇଛ। ସେମାନଙ୍କ ପ୍ରତ୍ୟେକଟି ଅଶ୍ରୁବିନ୍ଦୁରେ ନିଜକୁ କୃଶ-ବିଦ୍ଧ ଅନୁଭବ କରିଛ। ଦୁଃଖ, ଦୁର୍ବିପାକ, ଅନାଟନ, ସାମ୍ପ୍ରଦାୟିକ ଦଙ୍ଗା, ହିଂସା, ଦ୍ୱେଷ କବଳିତ ମଣିଷଙ୍କ ଯନ୍ତ୍ରଣା ଦୂରକରି ସେମାନଙ୍କ ଓଠ କଣରେ ହସଧାରେ ଫୁଟାଇବାରେ ଆତ୍ମ-ତୃପ୍ତି ଲାଭ କରିଛ। ତୁମ ମାନବ ପ୍ରେମର ପଟାନ୍ତର ନାହିଁ।

ତୁମେ କୌଣସି ପ୍ରତୀମା ପୂଜା କରୁନଥିଲ କି ଧର୍ମସ୍ଥଳୀକୁ ଯାଉନଥିଲ, ହେଲେ ତୁମେ ଥିଲ ଜଣେ ସଚ୍ଚା ଧାର୍ମିକ। କୌଣସି ନିର୍ଦ୍ଦିଷ୍ଟ ଦଳ, ବାଦ କିମ୍ବା ସମାଜତନ୍ତ୍ରର ପୁରୋଧା ନଥିଲେ ବି ତୁମେ ଥିଲ ଉଭୟ ଗାନ୍ଧୀବାଦୀ ଓ ମାର୍କ୍ସବାଦୀ। ମନନ ଓ ଚିନ୍ତନରେ ମଧ ଥିଲ ଜଣେ ଉଗ୍ର ପ୍ରଗତିବାଦୀ। ଧନରେ ଦରିଦ୍ର ଥିଲେ ବି ମନରେ ଥିଲ ହିମାଳୟ ପରି ମହାନ୍। ପ୍ରତିଷ୍ଠାର ଅଭିଳାଷ, ପ୍ରଚାରର ଅଭିପ୍ସା କିମ୍ବା ପୁରସ୍କାରର ପ୍ରଲୋଭନ ତୁମକୁ ସ୍ପର୍ଶ କରି ପାରିନଥିଲା। ତେଣୁ ସାମ୍ପ୍ରତିକ ସମୟର ମାପକାଠିରେ ତୁମେ ବହୁତ ପଛରେ ପଡ଼ିଯାଇଥିଲ।

ଆଜି ଯେତେବେଳେ ଆମର ସାମାଜିକ ଜୀବନରେ ଘୁଣ ଲାଗି ନୀତି, ଆଦର୍ଶ ସମାଧି ନେବାକୁ ବସିଲେଣି, ତ୍ୟାଗର ମୂଳଦୁଆରେ ଭୋଗର ନଭଶ୍ଚୁମ୍ବୀ ଅଟ୍ଟାଳିକାମାନେ ମୁଣ୍ଡ ଟେକିଲେଣି। ହିଂସା, ଦ୍ୱେଷ, ସାମ୍ପ୍ରଦାୟିକତା, ଜାତିଭେଦ, ଅର୍ଥନୈତିକ ବୈଷମ୍ୟର ଦୁନ୍ଦୁଭିରେ ଏ ସମାଜ ନିନାଦିତ ହେଲାଣି ସେତେବେଳେ ତୁମେ ବେଶୀ ମନେପଡୁଛ। ତୁମର ଆଜୀବନ ସଂଗ୍ରାମ, ତ୍ୟାଗ ଓ ଆଦର୍ଶର ଫଲଗୁ ଏ ପଙ୍ଗୁ ବଂଶଧରଙ୍କୁ ନବଜୀବନ ଦାନ କରିବ।

**ହେ ହିମାଦ୍ରୀର ହିମଖଣ୍ଡ !** ତୁମର ବିଶାଳ ହୃଦବଭାରୁ ନିର୍ଯ୍ୟାସିତ ଚିରସ୍ରୋତା ମନ୍ଦାକିନୀର ଆହ୍ଲାଦିତ ପ୍ଲାବନ ଆଜିର ସ୍ୱାର୍ଥସର୍ବସ୍ୱ ଭୋଗବାଦର ଉତପ୍ତ ମରୁରେ ସୃଜନୀକାର ମରୁନିର୍ଝର ସୃଷ୍ଟି କରି ଏ ଧରାକୁ ପୂଣ୍ୟଗର୍ଭା କରୁ। ଆଜିର ଏ ପବିତ୍ର ଶ୍ରାଦ୍ଧବାସରେ ତୁମକୁ ଶତକୋଟି ପ୍ରଣାମ।

**ଡ଼ା: ତପନ କୁମାର ମହାନ୍ତି**

## ଦୁଇଜଣ ଭିନ୍ନ ମଣିଷଙ୍କ ଅଭୂତପୂର୍ବ ତଥା ବିସ୍ମୟକର ସାମଞ୍ଜସ୍ୟ
## ଦୁଇଟି ବିରଳ ସଂଗ୍ରାମୀ ଜୀବନର ସଫଳ କାହାଣୀ





### ଭିନ୍ନ ମଣିଷ - ଅଭିନ୍ନ ସାମଞ୍ଜସ୍ୟ।

- ବାଲ୍ୟ ଅବସ୍ଥାରେ ପରିବାର, ବନ୍ଧୁ ସହୋଦରଙ୍କୁ ଛାଡ଼ି ଶିକ୍ଷାଲାଭ ପାଇଁ କୃଚ୍ଛ ସାଧନା।
- ଯୁବାବସ୍ଥାରେ ଭବିଷ୍ୟତକୁ ଖାତିର ନକରି ସ୍ୱାଧୀନତା ସଂଗ୍ରାମରେ ଝାସ।
- ଇଂରେଜ ଶାସନ ବିରୋଧରେ ବିଦ୍ରୋହ ଓ କାରାବାସ।
- ଜଣେ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଓ ଅନ୍ୟଜଣେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ପ୍ରତ୍ୟକ୍ଷ ଆଦର୍ଶରେ ଅନୁପ୍ରାଣିତ।
- ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାବେ ତାମ୍ରଫଳକ ଓ ସମ୍ମାନ ପ୍ରାପ୍ତି।
- ତ୍ୟାଗୀ, ସରଳ, ଆଦର୍ଶବାଦୀ, ନୀତିବାନ ଓ ସତ୍ୟନିଷ୍ଠ ଗୁଣର ଅପୂର୍ବ ସମାବେଶ।
- ରାଜ୍ୟ ବିଧାନ ସଭାକୁ ଗୋଟିଏ ନିର୍ବାଚନ ମଣ୍ଡଳୀରୁ ପ୍ରତିନିଧିତ୍ୱ।
- ବିଧାୟକ ପେନସନ୍‌କୁ ବିରୋଧ ଓ ପ୍ରତ୍ୟାଖ୍ୟାନ।
- ଆଜୀବନ ସମାଜ ସେବା ବ୍ରତ।






**ଶ୍ରୀ ନବୀନ ପଟ୍ଟନାୟକ**
ମୁଖ୍ୟମନ୍ତ୍ରୀ, ଓଡ଼ିଶା

ଭୁବନେଶ୍ୱର
ତା ୨୬.୦୮.୨୦୦୮

# ବାର୍ତ୍ତା

ଓଡ଼ିଶାର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ପ୍ରଖ୍ୟାତ ଗାନ୍ଧୀବାଦୀ ନେତା ଜୟକୃଷ୍ଣ ମହାନ୍ତିଙ୍କ ତିରୋଧାନ ଖବର ପାଇ ମୁଁ ବିଶେଷ ଭାବେ ମର୍ମାହତ। ସ୍ୱର୍ଗତ ମହାନ୍ତି ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରି ଦୀର୍ଘଦିନ ଜେଲଦଣ୍ଡ ଭୋଗ କରିଥିଲେ। ପରବର୍ତ୍ତୀ ସମୟରେ ସେ ପୂର୍ବ-ପୁରୀ-ସଦର ଏବଂ ପିପିଲି ନିର୍ବାଚନ ମଣ୍ଡଳୀରୁ ଦୁଇଥର ରାଜ୍ୟ ବିଧାନ ସଭାକୁ ପ୍ରତିନିଧିତ୍ୱ କରିଥିଲେ। ରାଜ୍ୟ ଖଦୀବୋର୍ଡ, ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି ତଥା ଓଡ଼ିଶାର ଅନେକ ଗାନ୍ଧୀବାଦୀ ଅନୁଷ୍ଠାନମାନଙ୍କ ସହ ଓତଃପ୍ରୋତ ଜଡ଼ିତ ରହିଥିଲେ। ରାଜ୍ୟର ବଣ ପାହାଡ଼ ଘେରା ଦୁର୍ଗମ ଅଞ୍ଚଳରେ ରହୁଥିବା ହଜାର ହଜାର ଆଦିବାସୀ ଓ ହରିଜନମାନଙ୍କ ଉନ୍ନତି ପାଇଁ ସେ ସର୍ବଦା ବ୍ୟାକୁଳ ଥିଲେ ଏବଂ ଜୀବନର ଶେଷଯାଏଁ ବିଭିନ୍ନ ଗଠନମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ।

ତାଙ୍କର ବିୟୋଗ ଏ ପ୍ରଦେଶ ପାଇଁ ତଥା ତାଙ୍କ ପରିବାରର ସଦସ୍ୟମାନଙ୍କ ପାଇଁ ଏକ ଅପୂରଣୀୟ କ୍ଷତି। ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି।

ସ୍ୱା/-
(ନବୀନ ପଟ୍ଟନାୟକ)







**ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ**
ବିରୋଧୀ ଦଳ ନେତା
ଓଡ଼ିଶା ବିଧାନ ସଭା
ଓଡ଼ିଶା


ସଂଖ୍ୟା - ୩୦୯୩
ଭୁବନେଶ୍ୱର
୧.୯.୨୦୦୮

# ବାର୍ତ୍ତା

ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କର ଦେହାନ୍ତ ଖବର ପାଇ ମୁଁ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ। ମୁଁ ତାଙ୍କୁ ଘନିଷ୍ଠଭାବେ ଜାଣିଥିଲି। ଯେଉଁ ଯୁବକମାନେ ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ପରେ ତତ୍‌କାଳୀନ ବିଧାନ ସଭାର ସଦସ୍ୟ ହୋଇଥିଲେ ସେ ତା ଭିତରୁ ଅନ୍ୟତମ ଥିଲେ। ୧୯୫୬ ମସିହାରେ ସେ ଦ୍ୱିତୀୟ ଥର ପାଇଁ ପିପିଲି ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ। ସେ ଓଡ଼ିଶାର ସାମାଜିକ ଜୀବନରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ଥିଲେ। ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସାରା ଜୀବନ ଆଦିବାସୀ ଓ ହରିଜନମାନଙ୍କ ଉନ୍ନତି ପାଇଁ ଅନେକ କାର୍ଯ୍ୟ କରିଯାଇଥିଲେ। ଜୀବନର ଶେଷଦିନ ଯାଏଁ ସିଏ କର୍ମଷ୍ଠ ଓ ସେବା ପରାୟଣ ଥିଲେ।

ତାଙ୍କର ବିୟୋଗରେ ଓଡ଼ିଶା ଜଣେ ବଳିଷ୍ଠ ସ୍ୱାଧୀନତା ସଂଗ୍ରାମୀଙ୍କୁ ହରାଇଲା। ମୁଁ ତାଙ୍କ ମୃତ୍ୟୁରେ ଗଭୀର ଶୋକ ଜ୍ଞାପନ କରି ଶ୍ରଦ୍ଧାଞ୍ଜଳି ଜଣାଉଛି ଓ ପରିବାରବର୍ଗଙ୍କୁ ମୋର ଆନ୍ତରିକ ସମବେଦନା ଜ୍ଞାପନ କରୁଛି।

ସ୍ୱା/-
(ଜାନକୀ ବଲ୍ଲଭ ପଟ୍ଟନାୟକ)

**ଶ୍ରୀ କିଶୋର କୁମାର ମହାନ୍ତି**
ବାଚସ୍ପତି
ଓଡ଼ିଶା ବିଧାନ ସଭା, ଭୁବନେଶ୍ୱର



ଭୁବନେଶ୍ୱର

# ବାର୍ତ୍ତା

ଜୟକୃଷ୍ଣବାବୁଙ୍କ ତିରୋଧାନ ଖବର ପାଇ ମୁଁ ଅତ୍ୟନ୍ତ ମର୍ମାହତ ଓ ଦୁଃଖିତ। ସେ ଛାତ୍ରଜୀବନରୁ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ। ୧୯୪୬ ଏବଂ ୧୯୫୨ ମସିହାରେ କ୍ରମାଗତ ଭାବେ ସେ ଦୁଇଥର ରାଜ୍ୟ ବିଧାନ ସଭାର ସଦସ୍ୟ ନିର୍ବାଚିତ ହୋଇ ରାଜ୍ୟର ପ୍ରଗତି ପାଇଁ ବିଭିନ୍ନ ପ୍ରଗତିଶୀଳ ବିଧେୟକ ଉତ୍‌ଥାପନ ଓ ପାଶ୍ କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ।

ଜନସେବା ତାଙ୍କ ଜୀବନର ଏକମାତ୍ର ବ୍ରତ ଥିଲା। ସାରା ଜୀବନ ସେ ଦେଶର ଦଳିତ ଓ ନିଷ୍ପେଷିତଙ୍କ ସେବାରେ ଉତ୍ସର୍ଗ କରିଥିଲେ। ଏଥିପାଇଁ ସେ ଅନେକବାର ସମ୍ମାନିତ ହୋଇଥିଲେ।

ଏହି ଦିବଂଗତ ପ୍ରତିଭା ଉଦ୍ଦେଶ୍ୟରେ ସାରା ବିଧାନ ସଭା ତରଫରୁ ମୁଁ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ଓ ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ବିଧାନ ସଭା ଗୃହର ସମବେଦନା ଜଣାଉଛି।

ସ୍ୱା/-
(କିଶୋର କୁମାର ମହାନ୍ତି)





**ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ**
ମନ୍ତ୍ରୀ
ଗ୍ରାମ୍ୟ ଉନ୍ନୟନ, ଶିକ୍ଷା, ଆଇନ୍
ଓଡ଼ିଶା

ଭୁବନେଶ୍ୱର
୭.୯.୨୦୦୮

# ବାର୍ତ୍ତା

ଶ୍ରଦ୍ଧେୟ ତପନ,

ଜୟୀବାବୁଙ୍କର ବିୟୋଗ ଆମମାନଙ୍କ ପାଇଁ ଅତୀବ ଦୁଃଖଦାୟକ। ୪ ତାରିଖ ଦିନ ଦିଲ୍ଲୀ ଚାଲିଯାଇଥିବାରୁ ଦଶାହ କିମ୍ବା ଏକାଦଶାହ କାର୍ଯ୍ୟକ୍ରମରେ ଯୋଗଦେଇ ପାରିଲି ନାହିଁ। ସେଥିପାଇଁ ମୁଁ ଅତ୍ୟନ୍ତ ଦୁଃଖିତ।

ପ୍ରଭୁଶ୍ରୀ ଜଗନ୍ନାଥଙ୍କ ଅପାର କରୁଣାରୁ ଜୟୀବାବୁଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି ହେଉ ଓ ତାଙ୍କ ବିୟୋଗଜନିତ ଦୁଃଖ ସହ୍ୟ କରିବା ପାଇଁ ପ୍ରଭୁ ପରିବାରର ସମସ୍ତଙ୍କୁ ଅସୀମ ଧୈର୍ଯ୍ୟ ଦିଅନ୍ତୁ।

ଶୁଭାନୁଧାୟୀ

**ବିଶ୍ୱଭୂଷଣ ହରିଚନ୍ଦନ**

# ଉତ୍କଳ ନବଜୀବନ ମଣ୍ଡଳ

ନଂ. ୩୨୫/୦୮-୦୯ ଚା ୩.୯.୨୦୦୮

## ଶୋକବାର୍ତ୍ତା

ଆମ୍ଭେମାନେ ସଂଗ୍ରାମୀ ଜୟକୃଷ୍ଣ ମହାନ୍ତି (ଜୟୀଭାଇ)ଙ୍କ ଗତ ତା ୨୫.୮.୨୦୦୮ରିଖ ସୋମବାର ଦିନ ନିଧନ ଖବର ଶୁଣି ସ୍ତମ୍ଭିଭୂତ ଓ ଦୁଃଖରେ ମ୍ରିୟମାଣ। ୰ ଜୟୀଭାଇ କେବଳ ଜଣେ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ନଥିଲେ, ସେ ଏକାଧାରରେ ଥିଲେ ଜଣେ ଗାନ୍ଧୀବାଦୀ, ବିଚକ୍ଷଣ ବ୍ୟବସ୍ଥାପକ, ସର୍ବୋଦୟ ସେବକ ଓ କ୍ରାନ୍ତିକାରୀ ସମାଜସେବୀ। ସେ ଜୀବନ ତମାମ ସମାଜର ତଳପାହାଚର ମଣିଷମାନଙ୍କ ପାଇଁ କାମ କରିଯାଇଛନ୍ତି।

ଉତ୍କଳ ନବଜୀବନ ମଣ୍ଡଳର ସେ ଥିଲେ ଆତ୍ମା ସଦୃଶ। ସେ ଥିଲେ ଆମ ସମସ୍ତଙ୍କ ପ୍ରେରଣାର ଉତ୍ସ। ତାଙ୍କର ମାର୍ଗଦର୍ଶନ ଆମକୁ ଆଗକୁ ବଢ଼ିବାର ସାହସ ଓ ଉତ୍ସାହ ଦେଉଥିଲା। ଓଡ଼ିଶାର ଯେ କୌଣସି ପ୍ରାନ୍ତରରେ ଆଦିବାସୀ, ଦଳିତମାନଙ୍କ ଉପରେ ଅନ୍ୟାୟ ଅତ୍ୟାଚାର ହେଉ କି ଯେ କୌଣସି ଜନବିରୋଧୀ ସମସ୍ୟା ହେଉ ସେଠି ଠିଆ ହେବାପାଇଁ ସେ ଆମକୁ ବିବେକର ବେତ୍ରାଘାତ କରୁଥିଲେ। ତାଙ୍କରି ଅବର୍ତ୍ତମାନରେ ଆମେ ଆଜି ଅସହାୟ।

ଆମେ ତାଙ୍କର ଶୋକସନ୍ତପ୍ତ ପରିବାର ବର୍ଗଙ୍କୁ ଗଭୀର ସମବେଦନା ଜଣାଉ ଅଛୁ।

(ଗୋଲକ ଚରଣ ପାତ୍ର)
ସାଧାରଣ ସମ୍ପାଦକ, ଓ
ଉତ୍କଳ ନବଜୀବନ ମଣ୍ଡଳ ପରିବାର

ଡାକ୍ତର ତପନ କୁମାର ମହାନ୍ତି
୩୭ ବୁଦ୍ଧନଗର
ଭୁବନେଶ୍ୱର-୭୫୧ ୦୦୬

**ଶ୍ରୀ ସମୀର ମହାନ୍ତି**
ସଭାପତି
ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ
ଭୁବନେଶ୍ୱର-୭୫୧୦୦୧, ଓଡ଼ିଶା




# ବାର୍ତ୍ତା

ଜୟକୃଷ୍ଣ ମହାନ୍ତିଙ୍କ ତିରୋଧାନ ଖବର ପାଇ ମୁଁ ବିଶେଷ ମର୍ମାହତ। ୧୯୬୫ ରୁ ୧୯୬୮ ପର୍ଯ୍ୟନ୍ତ ଖଦି ବୋର୍ଡର ସଭାପତି ଭାବରେ ସ୍ୱର୍ଗତଃ ମହାନ୍ତିଙ୍କ କାର୍ଯ୍ୟକାଳ ଅତ୍ୟନ୍ତ ସ୍ମରଣୀୟ ଓ ଉତ୍ସାହପ୍ରଦ। ଖଦି ବୋର୍ଡର କାର୍ଯ୍ୟ କଳାପକୁ ଲୋକାଭିମୁଖୀ କରିବା ସଙ୍ଗେ ସଙ୍ଗେ ଖଦିର ପ୍ରସାର ନିମନ୍ତେ ତାଙ୍କର ପ୍ରଚେଷ୍ଟା ଅବିସ୍ମରଣୀୟ।

ମୁଁ ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡର ସମସ୍ତ ସଭ୍ୟ ତଥା କର୍ମକର୍ତ୍ତାଙ୍କ ତରଫରୁ ସ୍ୱର୍ଗତଃ ମହାନ୍ତିଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଅଛି।

**(ସମୀର ମହାନ୍ତି)**
ସଭାପତି

# ସ୍ମୃତି-ତର୍ପଣ

ପତ୍ରାଙ୍କ ନଂ. ୯୨

ତା ୩୧.୦୮.୨୦୦୮

ପୁରୀ

ବର୍ଷିୟାନ୍ ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ ଚିନ୍ତକ, ପ୍ରାକ୍ତନ ବିଧାୟକ, ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ, ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟର ପଟପୁରୋଧା, ଉତ୍କଳ ନବଜୀବନ ମଣ୍ଡଳ, ଓଡ଼ିଶା ସର୍ବୋଦୟ ମଣ୍ଡଳର ପ୍ରାକ୍ତନ ସଭାପତି ୰ ଜୟକୃଷ୍ଣ ମହାନ୍ତିଙ୍କୁ ପୁରୀବାସୀ ଭକ୍ତିସହ ଶ୍ରଦ୍ଧାଞ୍ଜଳୀ ନିବେଦନ କରୁଛନ୍ତି। ପୁରୀ ସହରର ସାନବଡ଼ ସମସ୍ତଙ୍କର ସେଥିଲେ ଅତି ଆଦରଣୀୟ ଜୟୀଭାଇ।

ମହାତ୍ମା ଗାନ୍ଧୀଙ୍କ ପବିତ୍ର ଚିତାଭସ୍ମ ୧୯୪୮ ମସିହା ଫେବୃୟାରୀ ୧୨ ତାରିଖ ଦିନ ପୁରୀ ମହୋଦଧିରେ ବିସର୍ଜନ ବେଳେ ୰ ଜୟକୃଷ୍ଣ ଏ ସମସ୍ତ କାର୍ଯ୍ୟର ସୁପରିଚାଳନା ଓ ତଦାରଖ କରିଥିଲେ। ସେ ଥିଲେ ଅଜାତଶତ୍ରୁ। ଦୁଃଖରେ ଅଧୀର ବା ସୁଖରେ ବିଭୋର ନ ହୋଇ ଆଜୀବନ ଜନସେବାକୁ ସେ ବ୍ରତ କରିଥିଲେ। ମୂଲ୍ୟବୋଧ ରାଜନୀତିକୁ ସେ ସର୍ବଦା ସମ୍ମାନ ଦେଇ ଆସିଥିଲେ।

ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ ଓ ସର୍ବୋଦୟ ମେଳାଙ୍କ ମିଳିତ ଆନୁକୂଲ୍ୟରେ ୨୯.୦୮.୨୦୦୮ ତାରିଖ ଦିନ ବର୍ଷିୟସୀ ସମାଜସେବିନୀ କୁନ୍ତଳା କୁମାରୀ ଆଚାର୍ଯ୍ୟଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଶୋକ ସଭାରେ ସର୍ବଧର୍ମ ପ୍ରାର୍ଥନା ଏବଂ ସ୍ୱର୍ଗତଃ ମହାନ୍ତିଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରା ଯାଇଥିଲା।

ସମ୍ପାଦକ

ସର୍ବୋଦୟ ମେଳା, ପୁରୀ

# ବାଜିରାଉତ ଛାତ୍ରାବାସ

**ଅନୁଗୁଳ, ଓଡ଼ିଶା**

ଚିଠି ନଂ. ୧୯୭

ତା ୨୮.୦୮.୨୦୦୮

ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ ପରିବାରର ବୟୋଜ୍ୟେଷ୍ଠ ସଦସ୍ୟ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଆଦିବାସୀ ଓ ହରିଜନଙ୍କର ସହୃଦୟ ସେବକ ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କର ଦେହାବସାନ ଏ ଉଭୟ ଅନୁଷ୍ଠାନରେ ଗଭୀର ଶୋକର ଛାୟା ଖେଳାଇ ଦେଇଛି ।

ଆମ ଅନୁଷ୍ଠାନର ପରିଚାଳନା କ୍ଷେତ୍ରରେ ମୁଖ୍ୟ ଆସନରେ ଥାଇ ସେ ବହୁ ଅସମାହିତ ସମସ୍ୟାର ଯଥାଯଥ ସମାଧାନ କରି ପାରିଥିଲେ ଓ ଘଡ଼ିସନ୍ଧି ସମୟରେ ଅନେକ ମୂଲ୍ୟବାନ ପରାମର୍ଶ ମଧ୍ୟ ଦେଇଥିଲେ । ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନ ତାଙ୍କ ଜୀବନର ଅନ୍ୟତମ କୃତିତ୍ୱ । ଏହି ଟ୍ରଷ୍ଟର ସଭାପତି ଭାବରେ କାର୍ଯ୍ୟରତ ଥାଇ ସେ ମହାମୃତ୍ୟୁକୁ ଆଲିଙ୍ଗନ କରିଛନ୍ତି । ତାଙ୍କ ମୃତ୍ୟୁରେ ବ୍ୟଥିତ ବାଜିରାଉତ ଛାତ୍ରାବାସ ପରିସରରେ ହୋଇଥିବା ଏକ ଶୋକ ସଭାରେ ତାଙ୍କର ସ୍ମୃତିଚାରଣ କରାଯିବା ସହ ତାଙ୍କ ଆତ୍ମାର ସଦ୍‌ଗତି କାମନା କରି ଏକ ମିନିଟ ନିରବ ପ୍ରାର୍ଥନା କରିଥିଲେ ।

**କୃଷ୍ଣା ମହାନ୍ତି**
ସମ୍ପାଦିକା
ବାଜିରାଉତ ଛାତ୍ରାବାସ

# ପିପିଲି ସାଂସ୍କୃତିକ ପରିଷଦ

**ପୋ: ପିପିଲି, ଜି: ପୁରୀ**

ତା ୨୭.୦୮.୨୦୦୮

ପିପିଲି-ଡେଲାଙ୍ଗ ନିର୍ବାଚନ ମଣ୍ଡଳୀର ପ୍ରଥମ ବିଧାୟକ ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କ ଦୁଃଖଦ ବିୟୋଗ ସମ୍ବାଦରେ ପିପିଲି ସାଂସ୍କୃତିକ ପରିଷଦର ସମସ୍ତ ସଭ୍ୟ ଓ କର୍ମକର୍ତ୍ତା ତଥା ଏ ନିର୍ବାଚନ ମଣ୍ଡଳୀର ଅସଂଖ୍ୟ ଜନସାଧାରଣ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ।

ତାଙ୍କର ଅମାୟିକ ବ୍ୟବହାର ଏବଂ ସାବଲୀଳ ବ୍ୟକ୍ତିତ୍ୱ ପାଇଁ ସେ ଏହି ନିର୍ବାଚନ ମଣ୍ଡଳୀର ପିଲାଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ସବୁ ମହଲରେ ଅତ୍ୟନ୍ତ ପ୍ରିୟ ଥିଲେ। ଆମ ନିର୍ବାଚନ ମଣ୍ଡଳୀରେ ରାସ୍ତାଘାଟ ତଥା ଶିକ୍ଷାର ଉନ୍ନତି ପାଇଁ ଉଭୟ ଜୟକୃଷ୍ଣ ବାବୁ ଓ ତାଙ୍କର ଧର୍ମପତ୍ନୀଙ୍କର ଅଶେଷ ଅବଦାନ ଥିଲା।

ତାଙ୍କର ବିୟୋଗରେ ସମଗ୍ର ପ୍ରଦେଶ ବିଶେଷ କରି ପିପିଲି-ଡ଼େଲାଙ୍ଗ ନିର୍ବାଚନ ମଣ୍ଡଳୀର ଅପୂରଣୀୟ କ୍ଷତି ଘଟିଲା। ଆମେ ଭଗବାନଙ୍କୁ ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛୁ।

**ଶ୍ରୀ ରମେଶ ଚନ୍ଦ୍ର ମହାପାତ୍ର**
ସମ୍ପାଦକ

**ଶ୍ରୀ ମାଧବ ଚନ୍ଦ୍ର ବଡଥାରୁ**
ସଭାପତି

# ବନବାସୀ ସେବା ସମିତି

## ବାଲିଗୁଡ଼ା, କନ୍ଧମାଳ

ଚିଠି ନଂ. ୩୦୯(୨)/୦୮
ତା ୨୬.୦୮.୨୦୦୮

ଆମେ ବନବାସୀ ସେବା ସମିତି ପରିବାର ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କ ପରଲୋକ ଖବରରେ ଅତ୍ୟନ୍ତ ମର୍ମାହତ। ଜୟକୃଷ୍ଣ ବାବୁ ଜଣେ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ ପ୍ରେମୀ, ଗାନ୍ଧୀବାଦୀ ଓ ସମାଜ ସଂସ୍କାରକ ଥିଲେ। ସମାଜର ଦଳିତ, ନିଷ୍ପେସିତ ଓ ନିମ୍ନବର୍ଗର ଲୋକମାନଙ୍କ ପାଇଁ ସେ ସର୍ବଦା ଯତ୍ନଶୀଳ ଥିଲେ।

ବନବାସୀ ସେବା ସମିତି ତାଙ୍କର ପ୍ରଦର୍ଶିତ ମାର୍ଗରେ ଉନ୍ନତି କରିଚାଲିଥିଲା। ପ୍ରକୃତରେ କହିବାକୁ ଗଲେ ଜୟୀବାବୁ ଆମ ସେବା ସମିତିର ଆତ୍ମା ସଦୃଶ ଥିଲେ। ତାଙ୍କର ବିୟୋଗରେ ଏ ପ୍ରଦେଶର ସାମାଜିକ ଜୀବନରେ ଏକ ଶୂନ୍ୟସ୍ଥାନ ସୃଷ୍ଟି ହେଲା। ଆମେ ସମସ୍ତେ ତାଙ୍କ ଅମର ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛୁ।

**ଉଦ୍ଧବ ଚରଣ ଜେନା**
ସମ୍ପାଦକ

**ବିଶ୍ୱନାଥ ପଟ୍ଟନାୟକ**
ସଭାପତି

# ସୂଚୀପତ୍ର

# ଅଦ୍ୱିତୀୟ ରଚନାତ୍ମକ କର୍ମୀ ଜୟକୃଷ୍ଣ ମହାନ୍ତି

**ସର୍ବେଶ୍ୱର ଦାଶ**

ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ, ନିରଳସ ରଚନାତ୍ମକ କର୍ମୀ ଓ ଅନନ୍ୟ ଜନସେବକ ଜୟକୃଷ୍ଣ ମହାନ୍ତି ଆଉ ଆମଗହଣରେ ନାହାନ୍ତି । ଦେଶ ମାତୃକା ପାଇଁ ଉତ୍ସର୍ଗୀକୃତ ତାଙ୍କ ମହାନ୍ ଜୀବନର ଅବସାନ ଘଟିଲା ଅଗଷ୍ଟ ୨୫ ତାରିଖରେ ।

ମତେ ସେ ଆଜୀବନ ସାନଭାଇ ରୂପେ ଦେଖୁଥିଲେ । ତାଙ୍କୁ ପ୍ରଥମେ ଜାଣିଲି ପୁରୀ ଜିଲ୍ଲା ସ୍କୁଲରେ ସପ୍ତମ କି ଅଷ୍ଟମ ଶ୍ରେଣୀରେ ପଢ଼ିଲା ବେଳେ । ସେ ସେଠାରେ ତିନି କି ଚାରି ଉପର ଶ୍ରେଣୀରେ ପଢୁଥିଲେ । ଆବାଲ୍ୟରୁ ପିତୃହୀନ, ଦାରିଦ୍ର୍ୟ ସହିତ ସଦା ସଂଘର୍ଷରତ ଜୟକୃଷ୍ଣ ବାବୁ ସେତେବେଳେ ମଙ୍ଗୁମଠ କର୍ତ୍ତୃପକ୍ଷଙ୍କ ବଦାନ୍ୟତା ଲାଭ କରି ଚଳୁଥିବା ତାଙ୍କରି ଭଳି ଦାରିଦ୍ର୍ୟ ପୀଡ଼ିତ କିନ୍ତୁ ସଂଗ୍ରାମୀ, ସାମ୍ୟବାଦୀ ଆଦର୍ଶରେ ଉଦ୍‌ବୁଦ୍ଧ କେତେକ ତରୁଣ ଛାତ୍ରଙ୍କ ସହିତ ସେହି ମଠରେ ଅବସ୍ଥାନ କରୁଥିଲେ। ତାଙ୍କ ସହିତ ଥିଲେ ମୋର ସହପାଠୀ ଗୋବିନ୍ଦ ତ୍ରିପାଠୀ, ଧ୍ରୁବ ଚରଣ ମହାନ୍ତି, ନାଥ ପ୍ରଧାନ ପ୍ରମୁଖ। ତଳ କ୍ଲାସ୍‌ରେ ପଢୁଥିବା ବେଳେ ସେ ବାନର ସେନା ରୂପେ ନିଶାଦ୍ରବ୍ୟ ଦୋକାନ ଆଗରେ ପିକେଟିଂ କରି ଧରାହୋଇ ପୁଲିସ ହାତରେ ନିର୍ଯାତନା ଭୋଗ କରିଥିଲେ। ସେହି ସଂଗ୍ରାମୀ ମନୋବୃତ୍ତି ତାଙ୍କର ଜୀବନ ସାରା ଥିଲା। ସେତେବେଳେ ସେ ଭଗବତୀ ଚାନ୍ଦଙ୍କ ପରି କେତେକ ବନ୍ଧୁଙ୍କ ସହ ଜିଲ୍ଲା ସ୍କୁଲ ନିକଟରେ ଗୋଟିଏ ଘରେ ଅନ୍ତରୀଣ ବନ୍ଦୀ ରୂପେ ଥିବା ସନ୍ତ୍ରାସବାଦୀ ସତ୍ୟେନ ଗୁହଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ। ଅବଶ୍ୟ ଯଥା ସମ୍ଭବ ଗୁପ୍ତରେ ସେ, ଗୋବିନ୍ଦ ତ୍ରିପାଠୀ ଓ ଅନ୍ୟ କେତେକ ଛାତ୍ର ସତ୍ୟେନ୍ ଗୁହଙ୍କ ପାଖକୁ ଯାଉଥିଲେ। ସତ୍ୟେନ୍ ବାବୁ ସେହି ତରୁଣ ଗୋଷ୍ଠୀକୁ ପାଠପଢ଼ାରେ ସାହାଯ୍ୟ ତ କରୁଥିଲେ ସଙ୍ଗେ ସଙ୍ଗେ ସେମାନଙ୍କୁ ବିପ୍ଳବର ମନ୍ତ୍ରରେ ଦୀକ୍ଷିତ କରିଥିଲେ। ବ୍ରିଟିଶ ବିରୋଧୀ ସନ୍ତ୍ରାସବାଦୀ ବିପ୍ଳବ ଓ ବିପ୍ଳବୀଙ୍କର କାହାଣୀ କହି, ସୁଭାଷ ବୋଷଙ୍କ କାହାଣୀ ଶୁଣାଇ ସେମାନଙ୍କ ମଧ୍ୟରେ ବୈପ୍ଳବିକ ଚେତନା ଜାଗ୍ରତ କରାଇଥିଲେ। ମାର୍କସ୍, ଲେଲିନ୍‌ଙ୍କ ରଚନାବଳୀ, ଜୟପ୍ରକା. ଲୋହିଆ ପ୍ରଭୃତିଙ୍କ ରଚନାବଳୀ ସେମାନଙ୍କୁ ପଢ଼ିବାକୁ ଦେଉଥିଲେ।

ଜୟକୃଷ୍ଣ ବାବୁ ସୁଛାତ୍ର ରୂପେ ଶିକ୍ଷକ ସଂପ୍ରଦାୟରେ ପ୍ରିୟ ଥିଲେ। କିନ୍ତୁ ସେହି ସମୟରୁ ସେ ପ୍ରଗତିଶୀଳ ଛାତ୍ର ଆନ୍ଦୋଳନ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ହୋଇପଡ଼ିଲେ।

ମାଟ୍ରିକ୍ ପାସ୍ କରିବା ପରେ ପ୍ରଧାନ ଶିକ୍ଷକ ହରିହର ମିଶ୍ରଙ୍କ ଅନୁରୋଧ କ୍ରମେ ରେଭେନ୍ସା କଲେଜର ପ୍ରିନ୍ସିପାଲ ଡା. ପରିଜା ତାଙ୍କୁ ସେହି କଲେଜର ଛାତ୍ର ରୂପେ ଗ୍ରହଣ କଲେ। ଟିଉସନ୍ କରି ସେ ନିଜ ଖର୍ଚ୍ଚ ତୁଲାଇବା ସଙ୍ଗେ ସଙ୍ଗେ ପୀଡ଼ିତା ମାତାଙ୍କ ଚିକିତ୍ସା ବ୍ୟବସ୍ଥା କରାଇଥିଲେ। ମାତାଙ୍କ ମୃତ୍ୟୁରେ ମର୍ମାହତ ହୋଇପଡ଼ିଥିଲେ ମଧ୍ୟ ସେ ଛାତ୍ର ରୂପେ ତାଙ୍କ କର୍ତ୍ତବ୍ୟ ସମ୍ପାଦନ କରିଥିଲେ ଓ ଯଥା ସମୟରେ ଆଇଏସସି ପାସ୍ କରି କେମିଷ୍ଟ୍ରି ଅନର୍ସ ଶ୍ରେଣୀରେ ଯୋଗଦେଲେ। କେମିଷ୍ଟ୍ରି ବିଭାଗର ମୁଖ୍ୟ ଡକ୍ଟର ବଳଭଦ୍ର ପ୍ରସାଦ ଅତୀତରେ ଜୟପ୍ରକାଶ

ନାରାୟଣଙ୍କର ବନ୍ଧୁ ଥିଲେ, ବୋଧହୁଏ ସହପାଠୀ ଥିଲେ। ଦେଶପ୍ରେମୀ ଡକ୍ଟର ପ୍ରସାଦ, ଜୟକୃଷ୍ଣ ବାବୁଙ୍କ ଅଭାବ ଜାଣି ତାଙ୍କୁ ଲାବୋରେଟୋରୀ ଆସିଷ୍ଟାଣ୍ଟ ରୂପେ ନିଯୁକ୍ତି ଦେଇଥିଲେ। କିନ୍ତୁ ସଂଗ୍ରାମୀ ଜୟକୃଷ୍ଣବାବୁ ଦେଶପାଇଁ ପାଠପଢ଼ାର ମୋହ ଛାଡ଼ି କଂଗ୍ରେସ ସଙ୍ଗଠନକୁ ପରିପୁଷ୍ଟ କରିବାରେ ଲାଗିଗଲେ। ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ କାରାବରଣ କଲେ। କାରାଗାର ନିବାସ ତାଙ୍କର ତେଜ ନିଷ୍ପ୍ରଭ କରିପାରିଲା ନାହିଁ ବରଂ ଅଧିକ ଉଦ୍ଦିପ୍ତ କରିଦେଲା। ପୁରୀ ଓ ବ୍ରହ୍ମପୁର ଜେଲରେ ତାଙ୍କର ନିର୍ଭୀକ, ବିଦ୍ରୋହାତ୍ମକ କାର୍ଯ୍ୟ ପାଇଁ କର୍ତ୍ତୃପକ୍ଷଙ୍କ ଚକ୍ଷୁଶୂଳ ହୋଇଥିଲେ ଓ ବ୍ରହ୍ମପୁର କରାଗାରରେ ଲାଠିମାଡ଼ର ଶିକାର ହୋଇଥିଲେ। ସେହି ଜେଲରେ ସେ ଚୌଧୁରୀ ପରିବାର ସହ ଓ ଆଚାର୍ଯ୍ୟ ହରିହର ଦାଶଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଲେ ତାଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହେଲେ।

୧୯୪୫ରେ ଜେଲ୍‌ରୁ ମୁକ୍ତ ହେବା ପରେ ସେ ମୁମୂର୍ଷୁ ପୁରୀ କଂଗ୍ରେସକୁ ବନ୍ଧୁ ଭଗବାନ ପଢ଼ିଆରୀ, ଗୋବିନ୍ଦ ତ୍ରିପାଠୀ, କସ୍ତୁରୀ ନାୟକଙ୍କ ସହିତ ମିଶି ଉଜ୍ଜୀବିତ କରିବାକୁ ଉଦ୍ୟମ କଲେ। ବନମାଳୀ ପଟ୍ଟନାୟକଙ୍କ ପରି କେତେକ ବନ୍ଧୁଙ୍କ ପ୍ରରୋଚନାରେ ଓ ଆଚାର୍ଯ୍ୟ ହରିହରଙ୍କ ନିର୍ଦ୍ଦେଶରେ ୧୯୪୬ରେ ଜୟକୃଷ୍ଣବାବୁ ବିଧାନସଭା ସଭ୍ୟ ପାଇଁ ପ୍ରାର୍ଥୀ ହେଲେ ଓ ଲୋକପ୍ରିୟତା ହେତୁ ଅକ୍ଳେଶରେ ଜୟଲାଭ କଲେ। ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ସେ ଲାଗିପଡ଼ିଲେ ଭୂ ସଂସ୍କାର କାର୍ଯ୍ୟରେ। ଚାଷୀକୂଳର ସ୍ୱାର୍ଥରକ୍ଷା କାର୍ଯ୍ୟରେ ଜମିଦାର ଓ ମହାଜନଙ୍କ ଶୋଷଣରୁ ସେମାନଙ୍କୁ ରକ୍ଷା କରିବାରେ, ନିଶା ନିବାରଣ ଇତ୍ୟାଦି ଗାନ୍ଧି ବିଚାରପନ୍ଥୀ କାର୍ଯ୍ୟରେ ନିୟୋଜିତ ରହିଲେ। ନିର୍ବାଚନ ମଣ୍ଡଳୀର ଗାଁ ଗଣ୍ଡାରେ ବୁଲି ଲୋକମାନଙ୍କ ସହିତ ମିଶି ସେମାନଙ୍କ ଅଭାବ, ଅସୁବିଧା ଦୂର କରିବାର ପ୍ରୟାସ କଲେ। ବ୍ୟବସ୍ଥାପକ ସଭାର ସଭ୍ୟ ରୂପେ ପାଉଥିବା ଭତ୍ତାରୁ ବଡ଼ ଅଂଶ କଂଗ୍ରେସ ପାଣ୍ଠିକୁ ଦେଇ ଏବଂ ଲୋକହିତକର କାର୍ଯ୍ୟ କରି ବ୍ୟୟ କରୁଥିଲେ।

ଆବାଲ୍ୟରୁ ସ୍ୱାଧୀନତା ସଂଗ୍ରାମୀ, ମାଳତୀ ଚୌଧୁରୀଙ୍କ ଦ୍ୱାରା ଲାଳିତା କିରଣଲେଖା ଦେବୀଙ୍କ ସହିତ ତାଙ୍କର ବିବାହ ହେଲା ୧୯୪୨ରେ। କି ଅପୂର୍ବ ବିବାହ!! ହରେକୃଷ୍ଣ ମହତାବ ହେଲେ ବରକର୍ତ୍ତା, ନବକୃଷ୍ଣ ଚୌଧୁରୀ କନ୍ୟାପିତା, ଆଚାର୍ଯ୍ୟ ହରିହର ହେଲେ ପୁରୋହିତ। ସମଭାବାପନ୍ନ ଦମ୍ପତି ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀଙ୍କ ପ୍ରେରଣାରେ ନିଜକୁ ନିୟୋଜିତ କଲେ ରଚନାତ୍ମକ କର୍ମରେ।

ବାସ୍ତବରେ ନବକୃଷ୍ଣ ଚୌଧୁରୀ ଯେପରି କ୍ଷମତା ରାଜନୀତିର ଆବିଳତାରୁ ନିଜକୁ ଦୂରେଇ ନେଲେ ଜୟକୃଷ୍ଣ ମହାନ୍ତି ମଧ ସେହିପରି ନିଜକୁ ସେଥିରୁ ଦୂରେଇ ନେଲେ। ସେ ଏକପ୍ରକାର ଚୌଧୁରୀ ପରିବାରର ସଦସ୍ୟ ହୋଇଯାଇଥିଲେ। ମାଳତୀ ଦେବୀଙ୍କ ଦ୍ୱାରା ପ୍ରତିଷ୍ଠିତ ନବଜୀବନ ମଣ୍ଡଳରେ ସେ ଯୋଗଦେଲେ ଓ ଶେଷ ପର୍ଯ୍ୟନ୍ତ ସେଥି ସହିତ ସମ୍ପୃକ୍ତ ଥାଇ ଜନଜାତିଙ୍କ ମଧରେ ଓ ଆଦିବାସୀଙ୍କ ମଧରେ ଶିକ୍ଷା ପ୍ରସାର, ସ୍ୱାବଲମ୍ବିତ ପ୍ରସାର କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ। ୧୯୭୧ ମସିହା ଜରୁରୀକାଳୀନ ପରିସ୍ଥିତିରେ ସେ ପୁଣି କାରାରୁଦ୍ଧ ହୋଇଥିଲେ। ବନ୍ୟା-ବାତ୍ୟାରେ ବିପନ୍ନଙ୍କୁ ସହାୟତା କରିବା, ଭୂଦାନ ଆନ୍ଦୋଳନକୁ ସଫଳ କରିବା, ବାଜି ରାଉତ ଛାତ୍ରାବାସର ଉତ୍ତରୋତ୍ତର ଉନ୍ନତି କରିବା ଏବଂ ଖଦି କାର୍ଯ୍ୟର ପ୍ରସାର କରିବା ତାଙ୍କର ପ୍ରଧାନ କାର୍ଯ୍ୟଥିଲା।

ବହୁ ରଚନାତ୍ମକ ଅନୁଷ୍ଠାନ ସହିତ ସେ ଶେଷ ପର୍ଯ୍ୟନ୍ତ ସମ୍ପୃକ୍ତ ଥିଲେ। ତନ୍ମଧରେ ଆଚାର୍ଯ୍ୟ ହରିହର

ସ୍ମୃତି ସଂସଦ ଅନ୍ୟତମ। ଆଚାର୍ଯ୍ୟ ହରିହର ତାଙ୍କର ଜୀବନ। ଜ୍ୟେଷ୍ଠା କନ୍ୟା ଡା. ସବିତା ଦେବୀଙ୍କ ଠାରୁ ଶୁଣିଲି, ମୃତ୍ୟୁର ଦିନେ ଦୁଇଦିନ ପୂର୍ବରୁ ସେ ବାରମ୍ବାର ଆଚାର୍ଯ୍ୟ ହରିହରଙ୍କୁ ସ୍ମରଣ କରୁଥିଲେ। ଅବଚେତନ ମନରେ ଅନେକ ସମୟରେ କହୁଥିଲେ ଆଚାର୍ଯ୍ୟ ହରିହର ତାଙ୍କ ଘରକୁ ଆସିଛନ୍ତି ଓ ତାଙ୍କ ସହ କେଉଁଠାକୁ ଯିବାକୁ ଅଛି।

କିରଣଦେବୀ ମଧ୍ୟ ସ୍ୱଳ୍ପକାଳ ପାଇଁ ବିଧାନସଭାର ସଭ୍ୟା ହୋଇଥିଲେ। କିନ୍ତୁ ସେ ମଧ୍ୟ ପ୍ରତ୍ୟକ୍ଷ ରାଜନୀତିରୁ ଅପସରି ଯାଇ ସ୍ୱାମୀଙ୍କ ସହିତ ମାଳତୀ ଦେବୀଙ୍କ ପ୍ରେରଣାରେ ରଚନାତ୍ମକ କର୍ମରେ ବ୍ୟାପୃତ ରହୁଥିଲେ। ୧୯୯୭ ମସିହାରେ ତାଙ୍କର ଅକାଳମୃତ୍ୟୁ ଜୟକୃଷ୍ଣ ବାବୁଙ୍କୁ ଏକାକୀ କରିଦେଲେ ମଧ୍ୟ ସେ ଯଥାସମ୍ଭବ ପୂର୍ବପରି ସେବା ଏବଂ ରଚନାତ୍ମକ କାର୍ଯ୍ୟରେ ନିଜକୁ ଲିପ୍ତ ରଖିଥିଲେ। ତାଙ୍କର ବିୟୋଗ ମତେ ଯେପରି ମର୍ମାହତ କରିଛି, ସେହିପରି ଓଡ଼ିଶାର ସହସ୍ର-ସହସ୍ର ଲୋକଙ୍କୁ ମର୍ମାହତ କରିଥିବ। ତାଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଉଛି। ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଛି ତାଙ୍କର ଆତ୍ମା ଭଗବତ୍ ସାନ୍ନିଧ୍ୟରେ ଶାନ୍ତିରେ ଅବସ୍ଥାନ କରୁ।

**୧୮୪୧ ଏରୋଡ୍ରମ ଏରିଆ, ଭୁବନେଶ୍ୱର**

**ସୌଜନ୍ୟ : ଦୈନିକ "ସମୟ"**

●●

**ସ୍ଥିତିଶୀଳତା ଜଗତର ଧର୍ମ ନୁହେଁ। ଶିକ୍ଷାର ପରିଣାମରେ ମନୁଷ୍ୟ ଉନ୍ନତରୁ ଉନ୍ନତର ଅବସ୍ଥାକୁ ଅଗ୍ରସର ହେବା ନିମନ୍ତେ ସର୍ବଦା ବ୍ୟାକୁଳ। ମାନବ ହୃଦୟର ଏହି ଐଶ୍ୱରିକ ଅସନ୍ତୋଷ ମାନବ ସଭ୍ୟତାର ନିଦାନ ଓ ଶିକ୍ଷା ଏହାର ଉଦ୍ଦୀପକ। ମାତ୍ର ଅଳ୍ପାଧିକ ପରିମାଣରେ ସକଳ ମାସରେ ପ୍ରକୃତ ସ୍ଥିତିଶୀଳ। ସମାଜର ଉନ୍ନତ ପିପାସା ଅନୁରୂପ ଚରିତାର୍ଥ କରିବା ଲାଗି ଶାସନ ସବୁବେଳେ ପ୍ରସ୍ତୁତ ହୁଏନାହିଁ। ଫଳରେ ଶିକ୍ଷା ଓ ଶାସନ ମଧ୍ୟରେ ଭଣା ଅଧିକେ ଟଣାଟଣି ବରାବର ଲାଗିରହିଛି। କିନ୍ତୁ ଶିକ୍ଷାର ଜୟ ଅବଶ୍ୟମ୍ଭାବୀ। ପୁଣି ଶିକ୍ଷାର ଜୟ ହିଁ ଶାସନର ଜୟ।**

**- ଉତ୍କଳମଣି ଗୋପବନ୍ଧୁ**

# ମୁଁ ଯେପରି ଜାଣେ ଜୟୀବାବୁଙ୍କୁ

ଡଃ ସରସ୍ୱତୀ ସ୍ୱାଇଁ

ଏ ପୃଥିବୀରେ ଏଭଳି ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ସାରାଜୀବନ ଧରି ନୀତି ଓ ଆଦର୍ଶକୁ ନିଜର ସର୍ବସ୍ୱ ଭାବେ ଗ୍ରହଣ କରି ତାରି ଭିତରେ ବଞ୍ଚିରହିବାକୁ ଚାହାଁନ୍ତି। ଜୀବନ ଯେତେ ସଂଘର୍ଷମୟ ହେଉ, ପଥ ଯେତେ କଣ୍ଟକମୟ ହେଉ ତିଳେ ହେଲେ ଆଦର୍ଶରୁ ବିଚ୍ୟୁତ ହେବାର ପ୍ରଶ୍ନହିଁ ଉଠେନା। ସ୍ୱର୍ଗତ ଜୟକୃଷ୍ଣ ମହାନ୍ତି ଥିଲେ ସେହିଭଳି ଜଣେ ଅମଳିନ ବ୍ୟକ୍ତିତ୍ୱ। ଚଳିତ ଶତକରେ ଗାନ୍ଧିଜୀଙ୍କ ନୀତି ଏବଂ ଆଦର୍ଶକୁ ପାଥେୟ କରି ବଞ୍ଚିଥିବା ମୁଷ୍ଟିମେୟ ଲୋକଙ୍କ ଭିତରେ ସ୍ୱର୍ଗତ ମହାନ୍ତି ଥିଲେ ଅନ୍ୟତମ।

ସାମାଜିକ କ୍ଷେତ୍ରରେ କାର୍ଯ୍ୟକରିବା ପାଇଁ ଗାନ୍ଧିଜୀଙ୍କ ବ୍ୟତୀତ ସେ ପ୍ରେରଣା ପାଇଥିଲେ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀଙ୍କ ଠାରୁ। ବହୁଭାବରେ ଅନୁପ୍ରାଣିତ ହୋଇଥିଲେ ମାତୃପ୍ରତିମ ମାଳତୀଦେବୀଙ୍କ ଦ୍ୱାରା। ନବକୃଷ୍ଣ ଏବଂ ମାଳତୀ ଦେବୀ ସାମାଜିକ ସ୍ତରରେ ଯେଉଁସବୁ ଉନ୍ନତିମୂଳକ ତଥା ସଂସ୍କାରମୂଳକ କାର୍ଯ୍ୟମାନ ହାତକୁ ନେଇଥିଲେ ଜୟୀବାବୁ ସେ ସମସ୍ତ କାର୍ଯ୍ୟରେ ନିଜକୁ ଓତୋଃପ୍ରୋତ ଭାବରେ ଜଡ଼ିତ କରି ରଖିଥିଲେ। ବାଜିରାଉତ ଛାତ୍ରାବାସଠାରୁ ନବଜୀବନ ମଣ୍ଡଳ ଅଥବା ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନ ପର୍ଯ୍ୟନ୍ତ ସବୁଥିରେ ସେ ପୁରୋଧା ଭାବରେ କାର୍ଯ୍ୟକରିବାର ମୁଁ ଜାଣିଛି।

ଜଣେ ଅତ୍ୟନ୍ତ ନିଃସ୍ୱାର୍ଥପର, ହୃଦୟବାନ ଓ ସମ୍ବେଦନଶୀଳ ମଣିଷ। ସତ କହିବାକୁ ଏବଂ ସତ୍ ପଥରେ ଆଗେଇବାକୁ ସେ କେବେହେଲେ ପଛଘୁଞ୍ଚା ଦେବାର ଆମେ ଜାଣି ନାହୁଁ। ଜୟୀବାବୁଙ୍କ ସହ ମୁଁ ଅଧିକ ସମୟ ବିତାଇ ପାରିନାହିଁ। ମାତ୍ର ବାପି (ନବବାବୁ) ଏବଂ ନୁମା (ମାଳତୀ ଦେବୀ)ଙ୍କ ଶ୍ରାଦ୍ଧ ସଭାରେ ଯେଉଁ କେତେସମୟ ତାଙ୍କ ସହ କଟାଇଛି ଏବଂ ତାଙ୍କର ନିର୍ଭିକ ବକ୍ତବ୍ୟ ଶୁଣିଛି ତାହା ଏ ଯାଏ ମୋତେ ଆଶ୍ଚର୍ଯ୍ୟ କରିଦିଏ। ଜଣେ ଅତ୍ୟନ୍ତ ସଦାଚାରୀ ନିରଳସ ବ୍ୟକ୍ତି। ଏକ ନିଷ୍ଠାପର ଗାନ୍ଧିବାଦୀ ଭାବରେ ଦେଶ ସେବାରେ - କୌଣସି ଆଶା ବା ଆକାଂକ୍ଷା ନରଖି ନିଜକୁ ସେ ଉତ୍ସର୍ଗ କରିଥିଲେ। ଏକ ଅତ୍ୟନ୍ତ ସ୍ୱାଭିମାନୀ ସରଳ ମଣିଷଟିଏ। ମନରେ କେବେହେଲେ ଅହମିକା ଥିବାର ମୁଁ ଜାଣିନାହିଁ। ଅତ୍ୟନ୍ତ ଧୀର ଏବଂ ନମ୍ର ଭାବରେ କଥା କହିବେ। ମାତ୍ର କଥାରେ ଥିବ ପ୍ରଚୁର ଓଜନ ଏବଂ ଦାଢ଼।

ସ୍ୱର୍ଗତ ମାଳତୀ ଚୌଧୁରୀଙ୍କ ଜନ୍ମ ଶତବାର୍ଷିକୀ କମିଟିର ସଭାପତି ଭାବରେ ମୁଁ ଲକ୍ଷ୍ୟ କରିଛି ଜୟୀବାବୁଙ୍କ କର୍ମତତ୍ପରତା। ଆହୁତ ପ୍ରତ୍ୟେକ ବୈଠକରେ ଜୟୀବାବୁ ନିଜର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ନିଶ୍ଚୟ ଉପସ୍ଥିତ ରହିବାର ମୁଁ ଲକ୍ଷ୍ୟ କରିଛି। ସମୟାନୁବର୍ତ୍ତିତା ଏବଂ ଜବାବ ରଖିବା ଥିଲା ଯେପରି ତାଙ୍କ ଜୀବନର ଏକ ବ୍ରତ - ଯାହା ଆଜି ଆମ୍ଭମାନଙ୍କଠାରେ ବିରଳ।

କେବଳ ସାମାଜିକ କ୍ଷେତ୍ରରେ ନୁହେଁ ରାଜନୈତିକ କ୍ଷେତ୍ରରେ ମଧ୍ୟ ସେ ତାଙ୍କର କର୍ତ୍ତବ୍ୟନିଷ୍ଠାର ପରାକାଷ୍ଠା

ପ୍ରଦର୍ଶନ କରିଥିବାର ସମସ୍ତେ ଜାଣନ୍ତି। ରାଜ୍ୟ ବିଧାନ ସଭାର ସଭ୍ୟ ଭାବରେ ତାଙ୍କର ଭାଷଣର କିଛି ଅଂଶ ଆଜି ମଧ୍ୟ ଲୋକମୁଖରେ ଚର୍ଚ୍ଚିତ।

ତାଙ୍କର ଆଉ ଏକ ଗୁଣ ମୋତେ ଅତ୍ୟନ୍ତ ଆକୃଷ୍ଟ କରିପାରିଥିଲା। ସେ ଗୁଣର ପରିଚୟ ମୁଁ ପାଇଥିଲି ଥରେ ଅନୁଗୁଳ ବାଜିରାଉତ ଛାତ୍ରାବାସରୁ ଫେରିବା ସମୟରେ। ଏକ ନିମନ୍ତ୍ରିତ ବ୍ୟକ୍ତି ହୋଇଥିବାରୁ ତିନୁ (କୃଷ୍ଣା) ମୋର ଗାଡ଼ିଭଡ଼ା ଦେବାପାଇଁ ଜୟୀବାବୁଙ୍କୁ ଅନୁରୋଧ କରିଥିଲେ। ତାଙ୍କ ଉତ୍ତର ଆଜି ମଧ୍ୟ ମୋର ମନେ ଅଛି। "ଆମେ ତ ଡାଃ ସ୍ୱାଇଁଙ୍କୁ ଭଡ଼ା ଦେବୁ ନାହିଁ - ବରଂ ଆମକୁ ସେ ସାଥୀରେ ନେଇ ରାସ୍ତାରେ ଭୂରିଭୋଜନର ବ୍ୟବସ୍ଥା ପରେ ବ୍ରାହ୍ମଣଙ୍କୁ ଉପଯୁକ୍ତ ପରିମାଣ ଦକ୍ଷିଣା ଦେବାର ବ୍ୟବସ୍ଥା କରିବେ।" ଏହି ଘଟଣାରୁ ମୁଁ ତାଙ୍କ ମଉଜିଆ ଗୁଣର ଆଭାସ ପାଇଥିଲି।

ଜୟୀବାବୁଙ୍କ ସ୍ମରଣ ଶକ୍ତି ଥିଲା ଅତ୍ୟନ୍ତ ପ୍ରଖର। ମୃତ୍ୟୁର କିଛିଦିନ ପୂର୍ବରୁ କୋରାପୁଟ ଜଙ୍ଗଲରେ ତାଙ୍କ କାର୍ଯ୍ୟର କିଛି ଅଂଶ ଏଭଳି ଭାବରେ ସେ ବର୍ଣ୍ଣନା କରୁଥିଲେ ଯାହା ମୋତେ ସ୍ତମ୍ଭୀଭୂତ କରି ଦେଇଥିଲା। କି ଅଦ୍ଭୁତ ସମ୍ବେଦନଶୀଳ ବର୍ଣ୍ଣନା। ସେଠାକାର ନିଷ୍ପେଷିତ ଆଦିବାସୀମାନଙ୍କୁ ଅତ୍ୟନ୍ତ ଭଲ ପାଉ ନଥିଲେ ନିଜ ଜୀବନକୁ ପାଣିଛଡ଼ାଇ ଏଭଳି ବିପଦ ଶଂକୁଳ ଯାଗାରେ କାମ କରି ଏତେ ଆନନ୍ଦ ଲାଭ କରିନଥାନ୍ତେ।

ଅତ୍ୟନ୍ତ ନିରଳସ, ଶୃଙ୍ଖଳିତ ଜୀବନ ଧାରା। କାହାରି ଉପରେ ନିର୍ଭର କରିବା ମୁଁ ଜାଣେନାହିଁ। ସର୍ବଦା ହସ ହସ ମୁହଁ।

ଜୟୀବାବୁଙ୍କ ପାରିବାରିକ ଜୀବନ ଥିଲା ସୁଖମୟ। ନିଜ ଆଦର୍ଶରେ ସ୍ତ୍ରୀ ଓ ସନ୍ତାନମାନଙ୍କୁ ଗଢ଼ିଥିଲେ। ସ୍ତ୍ରୀ ବହୁଦିନରୁ ପରଲୋକଗତା। ସେ ମଧ୍ୟ ଥିଲେ ରାଜ୍ୟ ବିଧାନ ସଭାର ସଭ୍ୟା। ସନ୍ତାନମାନେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତ। ଜୟୀବାବୁଙ୍କ ପ୍ରତି ସନ୍ତାନମାନଙ୍କର ସମ୍ମାନବୋଧ ନ ଦେଖିଲେ ବିଶ୍ୱାସ କରି ହେବନାହିଁ।

ଜୟୀବାବୁ ଆଜି ନାହାନ୍ତି। ମାତ୍ର ତାଙ୍କର ତ୍ୟାଗ, କର୍ତ୍ତବ୍ୟନିଷ୍ଠା, ସମ୍ବେଦନଶୀଳତା ଭବିଷ୍ୟତ ବଂଶଧରମାନଙ୍କୁ ଦିଗ୍‌ଦର୍ଶନ ଦେଉ ଏହାହିଁ ମୋର କାମନା। ଆଜି ସମାଜର ଯେଉଁ ଅବକ୍ଷୟ ହୋଇ ଚାଲିଛି, ଦୁର୍ନୀତିର ଚେର ଯେପରି ଗଭୀରରୁ ଗଭୀରରେ ମାଡ଼ି ଚାଲିଛି ଆମେ ଯଦି ତାର ନିରାକରଣ ପାଇଁ ସାମାନ୍ୟତମ ଚେଷ୍ଟା କରି ପାରିବା ତାହେଲେ ତାହାହିଁ ହେବ ଜୟୀବାବୁଙ୍କ ପ୍ରତି ଆମର ଗଭୀର ଶ୍ରଦ୍ଧାଞ୍ଜଳି।

●●

**ମାନବ ସେବା ହିଁ ଏ ଯୁଗର ଆରାଧନା। ସେବା ଅନୁଷ୍ଠାନ ହିଁ ତୀର୍ଥ। ଆମ ପଡ଼ୋଶୀ ହିଁ ଆମର ଭଗବାନ।**

**- ଆଚାର୍ଯ୍ୟ ବିନୋବା**

# ଏକ ନୀତିନିଷ୍ଠ ନିର୍ଲୋଭ ନିର୍ଭୟତା ନିର୍ବାପିତ

**ଅଜୟ ସିଂହ**

ତାଙ୍କର ଚିର ହସହସ ଉଜ୍ଜ୍ୱଳ, ରେଖାହୀନ ମୁହଁକୁ ଦେଖିଲେ କେହି କହିବ ନାହିଁ ଯେ ସେ ସତୁରୀ ବର୍ଷରୁ ଅଧିକ। ଦୂରରୁ ସ୍ପଷ୍ଟ ଶୁଣିପାରୁଥିବା, ପାଖରୁ ଦେଖି ଚିହ୍ନିପାରୁଥିବା ଏବଂ ସ୍ମୃତିର ଅକ୍ଷତ ପୃଷ୍ଠାରୁ ଉପସ୍ଥିତ ବ୍ୟକ୍ତିଙ୍କ ନାମ ଅକ୍ଳେଶରେ କହିପାରୁଥିବା ୯୨ ବର୍ଷର ଚିରତରୁଣ ଜୟକୃଷ୍ଣ ହଠାତ୍ ବାହୁଡ଼ି ଗଲେ। ଜୀବନ ତାଙ୍କର ଥିଲା ଶ୍ରଦ୍ଧା, ସଂକଳ୍ପ ଓ ସଂଯମର ସରଣୀ। ତାଙ୍କ ପ୍ରାତଃ ଭୋଜନ ବେଳେ ଯେ କେହି ପହଞ୍ଚିଲା ତାଙ୍କୁ ସିଏ ଶ୍ରଦ୍ଧାରେ ଖୁଆଇବେ ମାଣ୍ଡିଆ ଯାଉ, ଗୁଡ଼ ଓ ଦହି, ନଚେତ୍ ପିଆଇବେ ବେଲପଣା। ବର୍ଷତମାମ ଏହା ହିଁ ତାଙ୍କର ନିୟମିତ ପ୍ରାତଃରାଶ; ଏହା ହିଁ ତାଙ୍କର ତେଜୋଦୀପ୍ତ ମୁହଁ ଓ ବୟସରେ ତାରୁଣ୍ୟ ସଞ୍ଚାର ରହସ୍ୟ।

ନିଜ ଜନ୍ମସ୍ଥାନ ନିମାପଡ଼ା ଅଞ୍ଚଳରେ ପ୍ରଚଣ୍ଡ ମରୁଡ଼ି କାଳରେ ସେଠାରେ ଉପସ୍ଥିତ ଉତ୍କଳମଣି ଗୋପବନ୍ଧୁଙ୍କ ସଭାରେ ଦେଶାତ୍ମବୋଧକ ଗୀତ ଗାଇ ତାଙ୍କର ଶ୍ରଦ୍ଧାମୟ କର ସ୍ପର୍ଶ ଲାଭ କରିଥିବା ୧୦ ବର୍ଷର ଜୟକୃଷ୍ଣ ପୁଣି ପାଇଥିଲେ ମାସାଧିକ କାଳଧରି ପରମହଂସ ନିଗମାନନ୍ଦଙ୍କ ସାନ୍ନିଧ୍ୟ। ସେତେବେଳେ ଜୟକୃଷ୍ଣ ଥିଲେ ପୁରୀ ଜିଲା ସ୍କୁଲର ଛାତ୍ର ଏବଂ ୧୯୩୨ର ମାଇନର ପରୀକ୍ଷାରେ ସମଗ୍ର ପାଟଣା ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପୂର୍ବର ସବୁ ରେକର୍ଡ ଭାଙ୍ଗି ରୌପ୍ୟ ପଦକ ସହ ମାସିକ ୫ ଟଙ୍କା ବୃତ୍ତି ପାଇବାରୁ ଶିକ୍ଷକମାନଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲେ। ଜଣେ ମେଧାବୀ ଛାତ୍ର, ଉଚ୍ଚମନା ଓ ଅନୁସନ୍ଧାନୀଙ୍କୁ ପ୍ରଚଳିତ ପାଠ୍ୟକ୍ରମ ସନ୍ତୁଷ୍ଟ କରିପାରୁ ନଥିଲା। ସୁତରାଂ ପୁରୀ ସହରର ମଙ୍ଗୁ ମଠରେ ରହି ପାଠ ପଢୁଥିବା ଜୟକୃଷ୍ଣ ପ୍ରତ୍ୟହ ଯୋଗ ପ୍ରାଣାୟମ, ଅରଟରେ ସୂତାକଟା ସହ ଉଚ୍ଚ ମୂଲ୍ୟବୋଧର ପୁସ୍ତକମାନ ପାଠ କରୁଥିଲେ। ଏଥି ମଧ୍ୟରେ କିଛି ଥିଲା ନିଷିଦ୍ଧ ସଂଗ୍ରାମୀ ପୁସ୍ତକ ଏବଂ ଏଥିପାଇଁ ତାଙ୍କୁ କିଛିମାସ ସ୍କୁଲରୁ ବହିଷ୍କୃତ ହେବାକୁ ପଡ଼ିଥିଲା। ମାତ୍ର ଶିକ୍ଷକମାନଙ୍କ ଶ୍ରଦ୍ଧାଧନ୍ୟ ଏହି ଛାତ୍ର ପୁନଃ ହେଲେ ବିଦ୍ୟାଳୟରେ ଗୃହୀତ। ଏହି ପୁରୀ ରହଣି କାଳରେ ତାଙ୍କର ବହୁ ବଙ୍ଗୀୟ ବିପ୍ଳବୀଙ୍କ ସହ ସମ୍ପର୍କ ମଧ୍ୟ ନିବିଡ଼ ହୋଇଛି ଏବଂ ଲାଭ କରିଛନ୍ତି ନେତାଜୀ ସୁଭାଷ ବୋଷଙ୍କ ସାନ୍ନିଧ୍ୟ।

ଜ୍ଞାନତୃଷ୍ଣା ତାଙ୍କୁ ଉଚ୍ଚତର ଶିକ୍ଷା ପାଇଁ ନେଇଯାଇଛି ରେଭେନ୍ସା କଲେଜ ଏବଂ ଆର୍ଥିକ ଦୁଃସ୍ଥିତି ଭିତରେ ୧୯୩୯ରେ ପାସ୍ କରିଛନ୍ତି ଆଇ.ଏସ୍‌ସି। ଅସ୍ୱଚ୍ଛଳ ଅବସ୍ଥା ଅଥଚ ମେଧାବୀତ୍ୱ ଦେଖି ମାଳତୀ-ନବକୃଷ୍ଣ ଚୌଧୁରୀ ନିଜ ଘରେ ଜୟକୃଷ୍ଣଙ୍କୁ ରଖି ବଡ଼ଝିଅ ଉତ୍ତରା ଓ ପୁଅ ବିନାୟକକୁ ଟିଉସନ ପଢ଼ାଇବାକୁ ସୁଯୋଗ ଦେଇଛନ୍ତି। ରେଭେନ୍ସାର ତତ୍କାଳୀନ କେମେଷ୍ଟ୍ରି ପ୍ରଫେସର ଓ ପରେ ଅଧ୍ୟକ୍ଷ ତଥା ଡି.ପି.ଆଇ ବଳଭଦ୍ର ପ୍ରସାଦ ଜୟକୃଷ୍ଣଙ୍କୁ ଦେଇଛନ୍ତି କେମିଷ୍ଟ୍ରି ଲାବୋରେଟୋରୀରେ ସହାୟକର ନିଯୁକ୍ତି। ପୂର୍ବର ଧାରକରଜ ଶୁଝି ହାତରେ କିଛି ଅର୍ଥ ହେବା ମାତ୍ରେ ସେ ପୁଣି ପଳାୟନ କଲେ କଲିକତା-ପୂର୍ବ ପରିଚିତ ବିପ୍ଳବୀ ସତ୍ୟେନ୍ଦ୍ରନାଥ ଗୁହଙ୍କ ଠାରୁ ଶିଖିବାକୁ ବୋମା ଓ ପିସ୍ତଲ

ନିର୍ମାଣର କୌଶଳ। ଏଥିରେ ମନ ମାନିଲା ନାହିଁ, ଚାଲିଲେ ୧୯୪୦ ରେ ଆୟୋଜିତ ରାମଗଡ଼ କଂଗ୍ରେସ ସମ୍ମିଳନୀ। ଭାରତମାତାର ମୁକ୍ତି ପାଇଁ ମନ ହୋଇଉଠୁଥାଏ ବ୍ୟାକୁଳ, ଚଞ୍ଚଳ। ପୁଣି ଫେରିଆସିଲେ ରେଭେନ୍ସା କଲେଜ - ବିଏସ୍‌ସି ଅଧ୍ୟୟନ। ଚୂଡ଼ାନ୍ତ ପରୀକ୍ଷା ପୂର୍ବରୁ ଆରମ୍ଭ ହୋଇଗଲା ୧୯୪୨ର "ଭାରତ ଛାଡ଼ ଆନ୍ଦୋଳନ"ର ଅଗ୍ନିପରୀକ୍ଷା। ସେ ଆହ୍ୱାନର ଅଗ୍ନିକୁ ଡେଇଁ ପଡ଼ିଲେ ଜୟକୃଷ୍ଣ। ପୁରୀ ଓ ବ୍ରହ୍ମପୁର ଜେଲ୍‌ରେ ୩ ବର୍ଷର କାରାଦଣ୍ଡ। ୧୯୪୫ରେ କାରାମୁକ୍ତି ପରେ କଂଗ୍ରେସର ନିଷ୍ପତ୍ତିରେ ନିର୍ବାଚନର ଆୟୋଜନ ଏବଂ ଜୟକୃଷ୍ଣ ହେଲେ ବିଧାୟକ। ପୁନଶ୍ଚ ଦେଶ ସ୍ୱାଧୀନ ହେବା ପରେ ୧୯୫୨ର ଗଣତାନ୍ତ୍ରିକ ନିର୍ବାଚନରେ ପିପିଲି-ଡେଲାଙ୍ଗ ନିର୍ବାଚନ ମଣ୍ଡଳୀରୁ ଦ୍ୱିତୀୟଥର ବିଧାୟକ। ମାତ୍ର ଜୀବନର ଶେଷଯାଏଁ କେବେଁ ବିଧାୟକ ଭତ୍ତା ଗ୍ରହଣ କରିନାହାନ୍ତି, ନିଜର ବହୁ ସାଙ୍ଗସାଥୀଙ୍କ ଚାପ ସତ୍ତ୍ୱେ। ସେ ନିଜେ ଏକ ସାକ୍ଷାତକାରରେ କହନ୍ତି : "ବିଧାୟକମାନଙ୍କ ପେନ୍‌ସନ୍ ବ୍ୟବସ୍ଥାକୁ ମୁଁ ବହୁତ ବିରୋଧ କଲି, ମାତ୍ର କେହି କର୍ଣ୍ଣପାତ କଲେ ନାହିଁ। ବହୁ ଚାପ ସତ୍ତ୍ୱେ ମୁଁ ଦରଖାସ୍ତ ମଧ୍ୟ କଲି ନାହିଁ। ଆମେ ଭୁଲିଯାଉଛୁ ଯେ ଅତି ଦୁଃସ୍ଥ, ଦରିଦ୍ରଙ୍କ ପ୍ରଦତ୍ତ ଟିକସରେ ଗଢ଼ାହୁଏ ରାଜକୋଷ। ଆମେ କାହାର ଅର୍ଥକୁ କେଉଁ ଉଦ୍ଦେଶ୍ୟରେ ନେଉଛୁ ? ମୁଁ ନିଜେ ଜାଣେ ଯେ ସେଇ ସାଧାରଣ ମଣିଷଙ୍କ ପାଇଁ ଜନକଲ୍ୟାଣକର କାର୍ଯ୍ୟ ଠିକ୍ ଭାବେ ହେଉ ନାହିଁ। ଏଥିପାଇଁ ୧୯୫୭ ପରେ ପୁଣି ବିଧାୟକ ହେବାର ଆମନ୍ତ୍ରଣ ସତ୍ତ୍ୱେ ଏହାକୁ ଏଡ଼ି ଦେଇ ଫୁଲବାଣୀ, ଗଞ୍ଜାମ ମାଳର ଆଦିବାସୀ କ୍ଷେତ୍ରକୁ କାମ କରିବାକୁ ଚାଲିଗଲି।" ସବୁ ସ୍ମୃତିକୁ ନେଇ ଜୟକୃଷ୍ଣ ବଞ୍ଚିଥିଲେ ଏବଂ କ୍ରମ ବର୍ଦ୍ଧମାନ ହିଂସାକାଣ୍ଡ ଓ ଉତ୍କଟ ଦାରିଦ୍ର୍ୟ ଦେଖି ହତାଶାର ଦୀର୍ଘଶ୍ୱାସ ଛାଡୁଥିଲେ। ତାଙ୍କ ଭଳି ନିଟୋଳ, ନୀତିବାନ, ନିରଳସ ମଣିଷଟିଏ ଖୋଜିଲେ ଆମେ ଆଉ ପାଇବା ନାହିଁ।

୧୯୧୮ ମସିହାର ଜନ୍ମାଷ୍ଟମୀ ତିଥିରେ ମାତାଙ୍କ ଅଷ୍ଟମ ଗର୍ଭରେ ଜନ୍ମିଥିବା ଯୋଗଜନ୍ମା ଜୟକୃଷ୍ଣ ଠିକ୍ ୯୨ ବର୍ଷ ବୟସରେ ଆଉ ଏକ ଜନ୍ମାଷ୍ଟମୀର ଦୁଇଦିନ ପରେ ଚାଲିଗଲେ। ଗାଧୁଆ ଘରେ ଅଚାନକ ପଡ଼ିଯାଇ ସେ ହେଲେ ଡାକ୍ତରଖାନାରେ ଶଯ୍ୟାଶାୟୀ। ସେଠାରେ ଜଣାପଡ଼ିଲା ତାଙ୍କ ଫୁସ୍‌ଫୁସ୍‌ରେ କ୍ୟାନ୍‌ସର। ଚିର ସଂଯମୀ, ମିତାହାରୀ, କୌଣସି ବଦ ଅଭ୍ୟାସ ନଥିବା, ଏପରିକି ପାନ ଖଣ୍ଡେ ଖାଇ ନଥିବା ମଣିଷଟିର ଫୁସ୍‌ଫୁସ୍‌ରେ କର୍କଟ ହୋଇପାରେ। ରାମକୃଷ୍ଣଙ୍କ କଣ୍ଠନାଳୀରେ ତ ପୁଣି ହୋଇଥିଲା କ୍ୟାନ୍‌ସର୍। ବୋଧେ ଏ ପୃଥିବୀର ପ୍ରଦୂଷିତ, ହିଂସା ପ୍ରମତ୍ତ, ଅସୁସ୍ଥ ପବନକୁ ଆଉ ନେବାକୁ ତାଙ୍କ ଫୁସ୍‌ଫୁସ୍ ନଥିଲା ପ୍ରସ୍ତୁତ।

୧୩୭୪, ଗଣ୍ଡମୁଣ୍ଡା, ଭୁବନେଶ୍ୱର-୩୦
ସୌଜନ୍ୟ : 'ସମାଜ', ତା ୦୪.୦୯.୨୦୦୮

●●

ନିର୍ଭୟତା ହେଉଛି ଆଧ୍ୟାତ୍ମିକତାର ସର୍ବପ୍ରଥମ ଆବଶ୍ୟକତା। ଭୀରୁମାନେ କଦାପି ସଦାଚାରୀ ହୋଇ ପାରିବେ ନାହିଁ।

- ମହାତ୍ମା ଗାନ୍ଧୀ

# ପିଲାଟିଦିନରୁ ସେବାପରାୟଣ

ଚନ୍ଦ୍ରଶେଖର ନାୟକ

୧୯୩୬ ମସିହାରେ ମୁଁ ପୁରୀ ଏଡଓ୍ୱାର୍ଡ ଏମ.ଇ. ସ୍କୁଲରେ ପଢୁଥାଏ। ପ୍ରଧାନ ଶିକ୍ଷକ ଥିଲେ ବୀର ହରେକୃଷ୍ଣପୁରର ୰ କୃଷ୍ଣଚନ୍ଦ୍ର ରଥ। ସେତେବେଳେ ପ୍ରଧାନ ଶିକ୍ଷକମାନେ ପଢ଼ାଇବାକୁ ବହୁତ ସୁଖ ପାଉଥିଲେ। ମୋ ଜାଣିବାରେ ଗୋଟିଏ ହେଲେ ପିରିଅଡ଼୍ ସେ ହାତଛଡ଼ା କରିନାହାନ୍ତି। ଶ୍ରେଣୀଗୃହରେ ଥିଲାବେଳେ କେହି ଆସିଲେ ସେ ବାହାରି ଆସୁ ନଥିଲେ।

ଦିନକର କଥା। ଅଧା ଢଙ୍ଗିଆ ପିନ୍ଧିଥିବା ପିଲାଟିଏ ହାତରେ ଖଣ୍ଡେ କାଗଜ ଧରି ଆସି ଅଫିସ ଦୁଆରେ ଛିଡ଼ାହୋଇଛି। ପ୍ରଧାନ ଶିକ୍ଷକଙ୍କୁ ପ୍ରତୀକ୍ଷା। କ୍ଲାସ ସାରି ସାର୍ ଆସିଲେ। ପିଲାଟି ପ୍ରଣିପାତ ଜଣାଇ କାଗଜଟି ବଢ଼ାଇ ଦେଲା। ସାର୍ ପଢ଼ିଲେ। କାଗଜଟି ଥିଲା ଏକ ଦରଖାସ୍ତ, ଫ୍ରି ଷ୍ଟୁଡେଣ୍ଟସିପ୍ ପାଇଁ। ଦରଖାସ୍ତକାରୀ ଆଉ ଜଣେ ପିଲା। ସତ୍ୟବାଦୀ ଅଞ୍ଚଳ ଅଳଗୁମ ପାଖ ଭାଣପୁର ଗାଁର। ପିଲାଟିର ନାମ କୃଷ୍ଣ। ସାର୍ କିଛି ବୁଝିପାରିଲେ ନାହିଁ। ଦରଖାସ୍ତକାରୀ ପିଲା ତ ଏ ନୁହେଁ। ଏ ତେବେ ଦରଖାସ୍ତଟି ଆଣିଛି କାହିଁକି? ବୁଝୁ ବୁଝୁ - ପିଲାଟି କହିଲା - "ସାର୍, ମୁଁ ମଙ୍ଗୁମଠରେ ରହେ। କୃଷ୍ଣ ମଧ୍ୟ ରହେ। ସେ ଗାଁକୁ ଯାଇଛି। ଆଜି ଦରଖାସ୍ତ ଦେବାର ଶେଷ ଦିନ। ମୁଁ ତା ପାଇଁ ଦରଖାସ୍ତଟି ଦେବାକୁ ଆଣିଛି।" ଲକ୍ଷ୍ୟ କଲି ସାର୍‌ଙ୍କ ଆଖି ଛଳ ଛଳ ହୋଇଗଲା। ସତେ କ'ଣ ଏପରି ସାଥୀ ଅଛନ୍ତି। ଦରଖାସ୍ତଟି ଗ୍ରହଣ କଲେ। ପିଲାଟି ଫେରିଗଲା। ସାର୍ କ୍ଷଣକାଳ ପିଲାଟିକୁ ଚାହିଁ ରହିଲେ।

ଏମାର ମଠ ସଂଲଗ୍ନ ମଙ୍ଗୁମଠ। ଗୁରୁଗ୍ରନ୍ଥ ସାହେବ ପୂଜିତ ହୁଅନ୍ତି। ଏ ମଠରେ ଝୁଲଣ, ନାଟତାମସା ହୁଏ ନାହିଁ କି ପେଟୁଆ ମହନ୍ତ ନାହାନ୍ତି। ମଠର ମହନ୍ତ ଓ କର୍ମକର୍ତ୍ତାମାନେ ସ୍ୱାଧୀନତା ସଂଗ୍ରାମକୁ ସୁଖ ପାଉଥାନ୍ତି। ଖଦଡ଼ ପିନ୍ଧୁଥାନ୍ତି। ମଠରେ ଏକ ବିଦ୍ୟାର୍ଥୀଶାଳା ଥାଏ। ସେତେବେଳର ବିଦ୍ୟାର୍ଥୀ ଥାନ୍ତି ବୀରଭଦ୍ରପୁରର ଫକୀର ମିଶ୍ର, ବାଲିଗୁଆଳୀର ଯଦୁମଣି ଜେନା, ବାଗଲପୁରର ଧ୍ରୁବଚରଣ ମହାନ୍ତି, ତୁଳସୀପୁରର ନରସିଂହ ତ୍ରିପାଠୀ, ବାଲିପୁଟର ଗୋବିନ୍ଦ ତ୍ରିପାଠୀ, ଭାଣପୁର ସୁଝେଇପଦାର କୃଷ୍ଣଚନ୍ଦ୍ର ରଥ ଓ ସର୍ବୋପରି ସେଦିନ ଦରଖାସ୍ତ ଧରି ଯାଇଥିବା ଜୟକୃଷ୍ଣ ମହାନ୍ତି। ବୀରବଳଭଦ୍ରପୁରର ମୁକୁନ୍ଦ ମିଶ୍ର, ଦଧିମାଛ ଗାଡ଼ିଆର ବିପିନବିହାରୀ ପଟ୍ଟନାୟକ, ପୁରୀ ବରାହୀ ଲେନ୍‌ର ଫକୀର ମିଶ୍ର, ବନ୍ତୁଳିଗାଁର ଭଗବତୀଚରଣ ଚାନ୍ଦ, ବୀରତୁଙ୍ଗର ଉପେନ୍ଦ୍ର ମହାନ୍ତି, ପୁରୀର ନିତ୍ୟାନନ୍ଦ ମହାନ୍ତି, ମଙ୍ଗୁମଠରେ ଅନ୍ତେବାସୀ ନହେଲେ ମଧ୍ୟ ନିୟମିତ ମଙ୍ଗୁମଠକୁ ଆସୁଥାନ୍ତି, ଏ ଲେଖକ ମଧ୍ୟ ଆସେ। ସମସ୍ତଙ୍କୁ କୁହାଯାଉଥାଏ ମଙ୍ଗୁମଠ ଗୋଷ୍ଠୀ। ସମସ୍ତେ ଭଲ ପଢ଼ନ୍ତି। ସ୍ୱାଧୀନତା ସଂଗ୍ରାମ କଥା ପଢୁଥାନ୍ତି। ସଭା ସମିତିରେ ଯୋଗ ଦେଉଥାନ୍ତି। ସମସ୍ତଙ୍କର ସଞ୍ଚାଳକ ଥାନ୍ତି ଜୟକୃଷ୍ଣ, ସେତେବେଳର ଜ୍ୟେଷ୍ଠ ଛାତ୍ର ଜୟୀବାବୁ।

ସ୍ୱର୍ଗଦ୍ୱାର ପାଖରେ ଜଣେ ନିର୍ବାସିତ ବଙ୍ଗୀୟ ବିପ୍ଳବୀ ରହୁଥାନ୍ତି। ତାଙ୍କ ନାମ ସତ୍ୟେନ୍ଦ୍ର ନାଥ ଗୁହ। ପୁରୀରେ ସେ ଦାଦା ନାମରେ ପରିଚିତ। ମଙ୍ଗୁମଠ ଗୋଷ୍ଠୀ ଦାଦାଙ୍କ ପାଖକୁ ନିୟମିତ ଯା'ନ୍ତି। ସଂଗ୍ରାମ

ପାଇଁ ପ୍ରେରଣା ପାଉଥାନ୍ତି। ପୁରୀରେ ନେତାଜୀ ସୁଭାଷଙ୍କୁ ସମ୍ବର୍ଦ୍ଧନା, ଦ୍ୱିତୀୟ ମହାସମର ବେଳେ ଆତ୍ମ-ଶକ୍ତି ଜାଗରଣ ପାଇଁ ଶିକ୍ଷା ଦେବାକୁ ଗାନ୍ଧିଜୀଙ୍କ ପ୍ରେରିତ ଶାନ୍ତିଦୂତ ମୀରାବେନ୍‌ଙ୍କୁ ସମ୍ବର୍ଦ୍ଧନା, ବାଟ ଭୁଲିଥିବା ବିପ୍ଳବୀ ମାନବେନ୍ଦ୍ର ରାୟଙ୍କ ପୁରୀ-ସଭା ଭଣ୍ଡୁର ଭଳି ବହୁ ସ୍ୱାଧୀନତା ସଂଗ୍ରାମର ପର୍ଯ୍ୟାୟଭୁକ୍ତ କାର୍ଯ୍ୟକ୍ରମକୁ ସଫଳ କରାଇବାରେ ଜୟକୃଷ୍ଣଙ୍କ ନେତୃତ୍ୱରେ ମଙ୍ଗୁମଠ ଗୋଷ୍ଠୀ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସେତେବେଳେ ପୁରୀ ଜିଲା କଂଗ୍ରେସ ସଭାପତି ଥାନ୍ତି ୰ ଲୋକନାଥ ମିଶ୍ର (ପଙ୍କବାବୁ)। ସେ ଥାନ୍ତି ଏହି ଛାତ୍ରଗୋଷ୍ଠୀର ପରାମର୍ଶଦାତା। ପୁରୀ ଜିଲା ସ୍କୁଲର ତଦାନିନ୍ତନ ଶିକ୍ଷକ ୰ କ୍ଷୀତିଶଚନ୍ଦ୍ର ଦେ ମଙ୍ଗୁମଠ ଗୋଷ୍ଠୀଙ୍କ ଜାତୀୟ ଜୀବନକୁ ପ୍ରଶଂସା କରି କହିଥିଲେ - ଏହି ଗୋଷ୍ଠୀ ହେଉଛି Hotbed of Comradism ମଙ୍ଗୁମଠ ଛାତ୍ରଗୋଷ୍ଠୀଙ୍କ ନାମ ଗୁପ୍ତ ପୁଲିସ ସିରସ୍ତାଭୁକ୍ତ ହୋଇଗଲା।

### "ଭାରତ ଛାଡ଼"

ଅନ୍ତିମ ସ୍ୱାଧୀନତା ସଂଗ୍ରାମ "ଭାରତ ଛାଡ଼' ଆସିଲା। ସମ୍ଭାବ୍ୟ ଉତ୍ତେଜନାକୁ ଘଟିବାକୁ ନଦେଇ ମଙ୍ଗୁମଠ ଗୋଷ୍ଠୀର ଅଧିକାଂଶଙ୍କୁ ପୁଲିସ ଗିରଫ କରିନେଲେ। ସେତେବେଳେ ଭାଇ ଶବ୍ଦ ପ୍ରଚଳିତ ନଥିଲା। ସମସ୍ତେ ଥିଲେ ବାବୁ। ନା ଆଗରେ ବାବୁ ଲେଖାଯାଉଥିଲା। ବିଶ୍ୱନାଥ ଦାସଙ୍କ ସରକାର ଅନ୍ୟାନ୍ୟ ସଂସ୍କାର ଭିତରେ ବାବୁ ବଦଳରେ ଶ୍ରୀ ରଖିଲେ। ସରକାରୀ ସିରସ୍ତାରେ ଏହା ଦରଜ ହୋଇଗଲା। ବନ୍ଦୀଶାଳାରେ ସାନବଡ଼ ସମସ୍ତେ ହୋଇଗଲେ ସ୍ୱାମୀ ବିବେକାନନ୍ଦଙ୍କ ମୁଖ ନିଃସୃତ "ଭାଇ"। ଜୟୀବାବୁ ହେଲେ ଆମ ସମସ୍ତଙ୍କର ପ୍ରିୟ ଜୟୀଭାଇ। ପୁରୀ ବନ୍ଦୀଶାଳାରେ ମୁଁ ତାଙ୍କର ସହବନ୍ଦୀ। ସମାଜବାଦୀ ଚିନ୍ତାଧାରାର ଅନବଦ୍ୟ ପ୍ରତୀକ ନବକୃଷ୍ଣ ଚୌଧୁରୀ ଥାନ୍ତି ପୁରୀ ଜେଲରେ। ଜେଲର ଦାମୋଦର ମହାନ୍ତିଙ୍କ ପାଇଁ ସେ ଥାନ୍ତି ନବଭାଇ। ଆମେ ପିଲାମାନେ କିନ୍ତୁ ନବଭାଇ କହିବାରେ ସଙ୍କୋଚ ବୋଧ କରୁ। ଆମ ପାଖରେ ସେ ଥାନ୍ତି ନବବାବୁ। ଜୟୀଭାଇ ତାଙ୍କୁ ନବବାବୁ କହନ୍ତି। ନବବାବୁଙ୍କ ବିଚାରଧାରା, ନିଜ କାମ ନିଜେ କରିବା, ପିଲାମାନେ ଖାଇବା ପରେ ନିଜେ ଖାଇବା ଭଳି କେତେକ ଆଚରଣ ଆମକୁ ଅନୁପ୍ରାଣିତ କରାଉଥାଏ। ମୁଁ ଅନୁଭବରେ ଆଣିଛି ଜୟୀଭାଇ ଖୁଆଡ଼ ଖୁଆଡ଼ ବୁଲି କିଏ ଖାଇଲା ନଖାଇଲା ତଦାରଖ କରୁଥାନ୍ତି।

### ହାତରେ କଡ଼ି, ପାଟିରେ ରଡ଼ି

ଜୟୀଭାଇଙ୍କୁ ଥରକୁ ଥର ଜେଲରୁ କଟେରୀକୁ ନିଆଯାଉଥାଏ। କୋର୍ଟ ଭ୍ୟାନ ନଥାଏ। ବନ୍ଦୀମାନେ ଚାଲି ଚାଲି ଯାଉଥାନ୍ତି। ହାତରେ କଡ଼ି, ମାତ୍ର ମୁହଁରେ ରଡ଼ି - ଇନ୍‌କିଲବ ଜିନ୍ଦାବାଦ, ବନ୍ଦେ-ମାତରମ, ମହାତ୍ମାଗାନ୍ଧୀଜୀ-ଜୟ, ଅଂଗ୍ରେଜୋଁ ଭାରତ ଛାଡ଼, ଇତ୍ୟାଦି ରାଜବନ୍ଦୀଙ୍କ ମୁହଁରୁ ଉଚ୍ଚାରିତ ହେଉଥାଏ। ଲୋକେ ବନ୍ଦୀଙ୍କ ଗହଣରେ ଚାଲିଥାନ୍ତି, ପାଳି ଧରୁଥାନ୍ତି। ସାହସିକତା ବଢୁଥାଏ। ସେ ବେଳର ଦୃଶ୍ୟ ଏବେ ଆଉ ନାହିଁ।

### ତ୍ରିରଙ୍ଗା ଉଡ଼ିଲା - ବ୍ରିଟିଶ ଗଲେ

ବହୁ ପ୍ରତ୍ୟାଶିତ ସ୍ୱାଧୀନତା ଆମକୁ ମିଳିଲା - ୧୯୪୭ ଅଗଷ୍ଟ ୧୫ରେ। ଐତିହାସିକ ଲାଲକିଲ୍ଲାରେ ନେତାଜୀ ସୁଭାଷଙ୍କୁ ତଦ୍‌ଗତ ଚିତ୍ତରେ ସ୍ମରଣ କରି ଅଶୋକଚକ୍ର ଲାଂଛିତ ତ୍ରିରଙ୍ଗା ଝଣ୍ଡା ଉତ୍ତୋଳନ ପୂର୍ବକ କଷ୍ଟଲବ୍ଧ ସ୍ୱାଧୀନତାକୁ ସ୍ୱାଗତ କଲୁ। ୟୁନିୟନ ଜ୍ୟାକ୍‌କୁ ସସମ୍ମାନ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କଲୁ। ବିଡ଼ମ୍ବନା ଯେ ଆମ ଉପରେ ଦୀର୍ଘ ୩ଶହ ବର୍ଷ ପ୍ରଭୁତ୍ୱ

କରି ଆସିଥିବା ବ୍ରିଟିଶ ପ୍ରଶାସନ ଆମ ପାଖେ ଦୁଇବର୍ଷ ଚାକିରୀ କରି ବିଦାୟ ନେଲେ।

## ନିର୍ବାଚନ ପ୍ରଚାରରେ ଜୟୀଭାଇ

୧୯୪୫ରେ ନିର୍ବାଚନ। ସବୁଆଡ଼େ କଂଗ୍ରେସ ହାୱା। ଚାଡ଼ିଆଡ଼େ ଗାନ୍ଧୀ ମୁହଁ। ଆଗେ ଆସିଲା ଜିଲ୍ଲାବୋର୍ଡ। ପଛେ ରାଜ୍ୟ ବ୍ୟବସ୍ଥାସଭା। ଜିଲ୍ଲାବୋର୍ଡ ପାଇଁ ସ୍ୱାଧୀନତା ସଂଗ୍ରାମୀ ୰ଜଗନ୍ନାଥ ମିଶ୍ର ଓ ଆସେମବ୍ଲି ପାଇଁ ୰ଲୋକନାଥ ମିଶ୍ର (ପଙ୍କବାବୁ) ପ୍ରାର୍ଥୀ ହେଲେ। ଆମେ ଜେଲ୍ ଫେରନ୍ତା ଯୁବ କଂଗ୍ରେସ କର୍ମୀମାନେ ହେଲୁ ପ୍ରଚାରକ। ଜୟୀଭାଇ ଆମର ନେତା ହେଲେ। ଡେରା ପଡ଼ିଲା ଶ୍ରୀ ଅଲାରନାଥଙ୍କ ପୀଠ ପାଖେ ଏକ ଚାଳଘରେ। ମଶା ତ ନୁହଁନ୍ତି, ଡ଼ାଉଁଶ ପଲପଲ। ମଶାରି ସ୍ୱପ୍ନ। ତେବେ ଜୟୀଭାଇ ମଶାରିଟିଏ ଯୋଗାଡ଼ କଲେ। ଜାକି ଜୁକି ହୋଇ ସେଇ ମଶାରି ଭିତରେ ପଶି କୌଣସି ମତେ ରାତିଯାପନ କଲୁ। ସକାଳୁ ସକାଳୁ ଜୟୀଭାଇ ରାନ୍ଧିକରି ଖୁଆଇ ଦିଅନ୍ତି। ଡାକବାଜି ଯନ୍ତ ତ ନଥାଏ। ଖୋଳ କରତାଳ ସହ ଆମେ ଗାଁ ଗାଁ ବୁଲୁ। କୀର୍ତ୍ତନ ହୁଏ। ଲୋକେ ଜମନ୍ତି। କଂଗ୍ରେସ ବାର୍ତ୍ତା ପ୍ରଚାର କରି ଆମେ ପୁଣି ଡେରାକୁ ଫେରିଆସୁ। ଦୁଇଟିଯାକ ନିର୍ବାଚନରେ କଂଗ୍ରେସ ଜିଣିଲା।

## ମାଛୁ ମାଛୁ ମହନ୍ତ

୧୯୫୦ ଜାନୁୟାରୀ ୨୬ରେ ଆମର ହେଲା ସାଧାରଣତନ୍ତ୍ର। ଆଗେ ପଇସାବାଲା ଭୋଟ ଦେଉଥିଲେ ଏବେ ସାଧାରଣ ସମସ୍ତେ ଭୋଟ ଅଧିକାର ପାଇଲେ। ଆମ ନିଜସ୍ୱ ସମ୍ବିଧାନ ଆମେ ନିଜପ୍ରତି ଲାଗୁକଲୁ। ବିପୁଳ ଉତ୍ସାହ ଉଦ୍ଦୀପନା ସହ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେଲା।

ପୁରୀରେ କଥା ଅଛି ମାଛୁ ମାଛୁ ମହନ୍ତ। ଆଗେ ମଠରେ ହଣ୍ଡିମାଜ, ମଠ କାମରେ ଅଭ୍ୟସ୍ତ ହୁଅ। ତାହାହେଲେ ଯାଇ ମହନ୍ତ ପଦ ମଣ୍ଡନ ପାଇଁ ଯୋଗ୍ୟ ହେବ। ଜୟୀଭାଇ ପାଠପଢ଼ା ବେଳରୁ, ବନ୍ଦୀଶାଳାର ପ୍ରଚାରକ୍ଷେତ୍ରରୁ ସେବା ଓ ସାଙ୍ଗଠନିକ ଦକ୍ଷତାର ଯେଉଁ ପରିଚୟ ଦେଇଥିଲେ, ତାଙ୍କର ପଦୋନ୍ନତି ହେଲା ଆସେମବ୍ଲିକୁ। ପିପିଲି-ଡେଲାଙ୍ଗ ନିର୍ବାଚନ ମଣ୍ଡଳୀରୁ ସେ ଜିଣିଲେ। ଗାଁକୁ ପାଇପ ପାଣି ମିଳିବ ଏହାଥିଲା କଳ୍ପନାର ବାହାରେ। ଜୟୀଭାଇ ଏହାକୁ ବଦଳାଇ ଦେଲେ। ଦାଣ୍ଡମୁକୁନ୍ଦପୁର ଗାଁରେ ଏ ଯୋଜନା ସାକାର ହେଲା। ଏବେ ବି ଗାଁ ଲୋକେ ଜୟୀଭାଇଙ୍କୁ ମନେ ପକାନ୍ତି।

ତାଙ୍କ ବେଳର ବିଧାନ ସଭା ଥିଲା ମନ୍ଦିର ପରି। ଦେଖିବାକୁ ଆଗ୍ରହ ଜନ୍ମୁଥିଲା। ବିଧାୟକମାନେ ପଢୁଥିଲେ। ବଳିଷ୍ଠ ଯୁକ୍ତି ବାଢୁଥିଲେ। ବାହୁବଳରେ ବଳୀୟାନ ହେଉ ନଥିଲେ। ଆସେମବ୍ଲି ନାଟ୍ୟଶାଳା ହେଉନଥିଲା। ସରକାରୀ ସମ୍ପତ୍ତିର ସୁରକ୍ଷା ବିଧାୟକଙ୍କ କର୍ତ୍ତବ୍ୟ ଥିଲା। ମୁଁ ନିଜେ ଅନୁଭବରେ ଆଣିଛି, ଅଧିବେଶନ ସରିଯିବା ପରେ ଜୟୀଭାଇ ଗୃହରେ କ୍ଷଣକାଳ ରହି ସୁଇଚ ଚିପି ଫ୍ୟାନ ଆଲୋକ ବନ୍ଦ କରୁଥାନ୍ତି। ଏକଥା ଶୁଣିଲେ ଏବେ ଲୋକେ ହସିବେ। ଏ ହାତୀ ଗଳା ଯୁଗରେ ପିମ୍ପୁଡ଼ି କଥା ଭାବୁଛି କିଏ!!

## ଟ୍ରଷ୍ଟିସିପ

ଅନନ୍ତର ଜୟୀଭାଇ ଉଠି ଉଠି ଗଲେ। ସାଧାରଣ ସମ୍ପତ୍ତି ବା ଅନୁଷ୍ଠାନ ପ୍ରତି ତାଙ୍କର ଅନନ୍ୟ ଅସାଧାରଣ ନିଷ୍ଠା ଥିଲା। ମହାତ୍ମାଗାନ୍ଧୀଙ୍କ ବିଚାରରେ ସେ ଥିଲେ ଟ୍ରଷ୍ଟି। ଉତ୍କଳ ସର୍ବୋଦୟ ମଣ୍ଡଳ, ନବଜୀବନ ମଣ୍ଡଳ, ଗାନ୍ଧୀ ସ୍ମାରକ ନିଧି, ସର୍ବୋଦୟ ପତ୍ରିକା, ନବକୃଷ୍ଣ ମାଳତୀ ଟ୍ରଷ୍ଟ ଭଳି ବହୁ ସାଧାରଣ ସଂସ୍ଥାର ସେ ଥିଲେ

ପ୍ରତିଷ୍ଠାତା-ପ୍ରମୁଖ କର୍ମକର୍ତ୍ତା। ସେ ଥିଲେ ଜଣେ ସଚ୍ଚୋଟ ହିସାବରକ୍ଷକ। ନିଜ ହାତରେ ଲେଖୁଥିଲେ, କାହାରି ହାତକୁ ଟେକି ଦେଉ ନଥିଲେ। ଅନୁଭବର କଥା। ପୁରୀ ବଗଲା ଧର୍ମଶାଳାର "ଉତ୍କଳ ଗ୍ରାମ ସ୍ୱରାଜ୍ୟ ସମ୍ମେଳନ" ଅନୁଷ୍ଠିତ ହେଉଥାଏ। ବିଶିଷ୍ଟ ସର୍ବୋଦୟ ଚିନ୍ତାନାୟକ ୰ମନମୋହନ ଚୌଧୁରୀ (ବୁଲୁଭାଇ)ଙ୍କ କଡ଼ା ନିର୍ଦ୍ଦେଶ ପୁଞ୍ଜିପତିଙ୍କୁ ଚାନ୍ଦା ମଗାଯିବ ନାହିଁ। ଲୋକେ ସବୁ ବୁଝିବେ। ଜୟୀଭାଇଙ୍କ ଉପରେ ଥାଏ ସଞ୍ଚାଳନା ଦାୟିତ୍ୱ। ହିସାବ ରକ୍ଷକ ଥାନ୍ତି ବିଶିଷ୍ଟ ସର୍ବୋଦୟ ସେବକ ୰ଗୋପାଳ ପ୍ରସାଦ ଦାସ (ଗୋପାଳଭାଇ)। ପ୍ରତିଦିନର ହିସାବ ସେହିଦିନର ସନ୍ଧ୍ୟାରେ ଉପସ୍ଥାପିତ ହେବ। ବାସି ରହିବ ନାହିଁ କି ମିଛ-ସତ ହିସାବ ପାଇଁ ମଉକା ଜୁଟିବ ନାହିଁ। ଏଥିପାଇଁ ଗୋପାଳଭାଇଙ୍କୁ ସେ ଘଡ଼ିକି ଘଡ଼ି ତାଗିଦ୍ କରୁଥାନ୍ତି, ଶୁଆଇ ବସାଇ ଦେଉନଥାନ୍ତି।

## ହରିହର ଜୟନ୍ତୀ

ପୁଣ୍ୟଶ୍ଳୋକ ଆଚାର୍ଯ୍ୟ ହରିହରଙ୍କୁ ସେ ବହୁତ ମାନ୍ୟ କରୁଥିଲେ। ହରିହର ମଧ୍ୟ ତାଙ୍କୁ ଜୟୀ ବୋଲି ଡାକି ପାଖକୁ ଆଣୁଥିଲେ। ହରିହରଙ୍କ ବିୟୋଗ ପରେ ଗଠିତ ହେଲା ଆଚାର୍ଯ୍ୟ ହରିହର ସ୍ମୃତିସଂସଦ। ଅନ୍ନପୂର୍ଣ୍ଣା ମହାରଣା (ଚୁନୀଅପା) ଅଧ୍ୟକ୍ଷ୍ୟ ଓ ଜୟୀଭାଇ ହେଲେ ପ୍ରତିଷ୍ଠାତା ସମ୍ପାଦକ। ଘଟଣାକ୍ରମେ ମୁଁ ସଂପୃକ୍ତ ହେଲି। ମୋତେ ଯୁଗ୍ମ ସମ୍ପାଦକ କରାଗଲା। ହରିହରଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ପୁରୀରେ ପାଳିତ ହେଉଥିବା ଦୃଷ୍ଟିରୁ ସମସ୍ତ ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଗଲା। ସେ ଦାୟିତ୍ୱ ମୁଁ କେତେଦୂର ତୁଲାଇଛି, କହିପାରିବି ନାହିଁ। ତେବେ ମାର୍ଗଦର୍ଶକ ଜୟୀଭାଇ କେତେବେଳେ ପ୍ରତିକୂଳ ମନ୍ତବ୍ୟ ଦେବା ମୁଁ ସ୍ମରଣ କରିପାରୁ ନାହିଁ। ତାଙ୍କ ହସ୍ତାକ୍ଷର ବହୁତ ସୁନ୍ଦର, ସୁଢଳ, ଧାଡ଼ିସିଧା, ସୁପାଠ୍ୟ। କାହାରିକୁ ଅପେକ୍ଷା ନ କରି ନିଜେ ସବୁ ଲେଖନ୍ତି। ନିଜେ ବା କେହି ବିଶ୍ୱସ୍ତଙ୍କ ହାତରେ ଡାକରେ ପକାନ୍ତି। ମୁଁ ତାଙ୍କଠାରୁ ଏହି ଗୁଣଟିକୁ ଏବେ ବି କାମରେ ଲଗାଉଛି। ସ୍ମୃତିସଂସଦର ବାର୍ଷିକ ଅଧିବେଶନ ପ୍ରାୟତଃ ତାଙ୍କ ବୁଦ୍ଧନଗର ଘରେ ଅନୁଷ୍ଠିତ ହୋଇଥାଏ। କାଗଜପତ୍ର ଧରି ମୁଁ ଯାଏ ବୈଠକକୁ। ଜୟୀଭାଇ ସବୁ ତନ୍ନ ତନ୍ନ କରି ଦେଖନ୍ତି। ତା'ପରେ ବୈଠକରେ ପେଶ୍ ହୁଏ। ସବୁଥର ପଂକ୍ତି ଭୋଜନ, ପୂରା ସାତ୍ୱିକ, ସୁସ୍ୱାଦୁ ଓ ରୁଚିକର। କେହି ପତ୍ରରେ ଛାଡ଼ିଯିବା ମୁଁ ଦେଖିନାହିଁ। ପଂକ୍ତିରେ ବସିଲା ବେଳେ ୧୯୪୫ ମସିହା ନିର୍ବାଚନ ପ୍ରଚାର କଥା, ଅଲାରନାଥ ପୀଠ ବସାଘରେ ଜୟୀଭାଇଙ୍କ ହାତରନ୍ଧା ଖାଇବା କଥା ସବୁ ମନକୁ ଆସିଯାଏ। ଖୁଆଇବାରେ ତାଙ୍କର କି ଆନନ୍ଦ ସତରେ !!

## ସର୍ବୋଦୟ ମେଳା

୧୯୪୮ ଜାନୁୟାରୀ ୩୦ରେ ମହାତ୍ମାଗାନ୍ଧୀ ଦିଲ୍ଲୀ ବିରଳାଭବନ ପରିସର ମଧ୍ୟରେ ଅନୁଷ୍ଠିତ ସାନ୍ଧ୍ୟ ଉପାସନା ସଭାରେ ନିହତ ହେଲେ। ଦେଶ ବିଦେଶ ଚାରିଆଡ଼େ ଅଭୂତପୂର୍ବ ଶୋକର ଛାୟା। ରାଷ୍ଟ୍ରୀୟ ଝଣ୍ଡା ଶୋକସୂଚକ ଅର୍ଦ୍ଧ ନମିତକରଣ। ତାଙ୍କର ଚିତାଭସ୍ମ ମହୋଦଧିରେ ବିସର୍ଜନ ପାଇଁ ପୁରୀ ଆସିବାର ହେଲା। ଡଃ. କୈଳାସ ନାଥ କାଟଜୁ ରାଜ୍ୟପାଳ ଓ ଡଃ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ। ସେତେବେଳେ ଆତ୍ମଶକ୍ତି ଉପରେ କଂଗ୍ରେସର ପୁରା ଆସ୍ଥା ଥାଏ। ଏହି ପରିପ୍ରେକ୍ଷିରେ ସେଦିନର ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ କଂଗ୍ରେସ କର୍ମୀମାନେ ସ୍ୱୟଂସେବକ ରୂପେ ତାଲିମ ନେଲେ। ମଙ୍ଗୁମଠରେ କ୍ୟାମ୍ପ୍ ଗଢ଼ିଲା। ଜୟୀଭାଇ ହେଲେ ପ୍ରଶିକ୍ଷକ। ଯେଉଁ ପ୍ରମୁଖ ସେବକମାନେ କ୍ୟାମ୍ପରେ ଯୋଗ ଦେଇଥିଲେ ସେମାନଙ୍କ ଭିତରେ

ଥିଲେ ଅନ୍ଧ ସତ୍ୟାଗ୍ରହୀ ବାମଦେବ ଦାସ, ସ୍ୱାଧୀନତା ସଂଗ୍ରାମୀ ବାଲଚର ପ୍ରମୁଖ ରାଧାଚରଣ ଦାସ, ମୁରାରି ତ୍ରିପାଠୀ, ଶଶିଭୂଷଣ ମିଶ୍ର (ପରବର୍ତ୍ତୀ ଲୋକସମ୍ପର୍କ ନିର୍ଦ୍ଦେଶକ), ଡଃ ଗୌରାଙ୍ଗଚରଣ ପାତ୍ର (ମହାପାତ୍ର), ଭଗବାନ ପ୍ରତିହାରୀ ଓ ଏ ଲେଖକ। ସେଦିନ ଫେବୃୟାରୀ ୧୨ ତାରିଖ। ବିରାଟ ଶୋକାକୁଳିତ ପରିବେଶ ମଧ୍ୟରେ ଡଃ କାଟଜୁ ମହୋଦଧିରେ ଚିତାଭସ୍ମ ବିସର୍ଜ୍ଜନ କଲେ।

ସେହି ସ୍ମୃତିରେ ପ୍ରତିବର୍ଷ ଫେବୃୟାରୀ ୧୨ରେ ପୁରୀରେ ସର୍ବୋଦୟ ମେଳା ଅନୁଷ୍ଠାନର ବ୍ୟବସ୍ଥା ହେଲା। ଜୟୀଭାଇଙ୍କ ନେତୃତ୍ୱରେ ଅଧିବକ୍ତା ୰ଯଦୁମଣି ଦାସ, ୰ରାମଚନ୍ଦ୍ର (ଗୋବିନ୍ଦ) ଗୋଛିକାର, ୰କଣ୍ଡୁରିଚରଣ ନାୟକ, ୰ପଦ୍ମଚରଣ ସାମନ୍ତ ସିଂହାର ଓ ଶ୍ରୀ ସୁରଜିତ ମହାନ୍ତି ମେଳା ସଞ୍ଚାଳନ କଲେ। ମୁଁ ସରକାରୀ ଚାକିରୀରେ ଯେଉଁଠାରେ ଥାଏ ପଛେ ସର୍ବୋଦୟ ମେଳାକୁ ରାଣଦେଲାପରି ଆସୁଥାଏ। ଚାକିରୀ ସରିଲା, ପୁରୀ ଆସିଲି। ୧୯୮୭ରୁ ଜୟୀଭାଇ ମେଳାର ଦାୟିତ୍ୱ ମୋ ଉପରେ ଦେଇ ନିଶ୍ଚିନ୍ତ ହୋଇଗଲେ। ତାଙ୍କରି ପ୍ରେରଣା ଓ ପ୍ରୋତ୍ସାହନରେ ମେଳା ଶାଖା ପ୍ରଶାଖା ମେଳାର ଦଳ-ମତ-ନିର୍ବିଶେଷରେ ସମସ୍ତଙ୍କ ଅକୁଣ୍ଠ ସହଯୋଗ ଲାଭ କରି ଅଗ୍ରଗତି କରୁଛି।

ଏହିପରି କେତେ କଥା ଅଛି। ଗୁଣମୁଗ୍ଧମାନେ ତାଙ୍କୁ ଅନ୍ଧ ହାତୀ ଦେଖିଲା ପରି ଦେଖୁଥିବେ। ସମସ୍ତଙ୍କ ଦର୍ଶନକୁ ଏକାଠି କଲେ ପୂର୍ଣ୍ଣାଙ୍ଗ ହାତୀଟିଏ ହେବ। ଜୟୀଭାଇଙ୍କ କୀର୍ତ୍ତି ଓ କୃତୀକୁ ଏକାଠି କଲେ ମୋ ଦୃଷ୍ଟିରେ ସେ ପୂର୍ଣ୍ଣାଙ୍ଗ ହାତୀଟି ସେବା, କାର୍ପଣ୍ୟ, ସମୟାନୁବର୍ତ୍ତିତା, ସହଯୋଗ, ସହଭୋଗ ଓ ତୃଷ୍ଟିସିପ୍ର ବିପୁଳ ସମାହାର ହେବ।

ଜୟୀଭାଇଙ୍କ ସାରାଜୀବନ ଥିଲା କର୍ମମୟ। କର୍ମ କରି କରି, କର୍ମରେ ଆନନ୍ଦ ପାଇ ସହଧର୍ମିଣୀ କିରଣ ଲେଖାଙ୍କୁ ଶଙ୍ଖା ସିନ୍ଦୂର ସହ ଅହିଅ ବେଶରେ ବିଦାୟ ଦେଇ ନିଜେ ଅମୃତ-ଲୋକର ଯାତ୍ରୀ ହେଲେ। ଇଂରେଜ ଦାର୍ଶନିକଙ୍କ ଉକ୍ତି died in harness ତାଙ୍କଠାରେ ପୂର୍ଣ୍ଣ ସାର୍ଥକତା ଲଭିଛି।

ଜ୍ୟେଷ୍ଠ ଭ୍ରାତା ପ୍ରତିମ ଜୟୀଭାଇଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି।

ମନେ ପଡୁଛି କବି ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ କାଳଜୟୀ ଲେଖନୀ :

"ନିଜଦୁଃଖେ ନୟନୁ ମୋ ନଗଳୁ ଲୋତକ
ପରଦୁଃଖେ କାନ୍ଦି ହେଉ ଜୀବନ ସାର୍ଥକ"

ଆସନ୍ତୁ। ଜୟୀଭାଇଙ୍କୁ ଏହି ଦୃଷ୍ଟିରେ ଆମେ ମୂଲ୍ୟାୟନ କରିବା ॥

**ମାର୍କଣ୍ଡେଶ୍ୱର ସାହି, ଯମୁନା ଲେନ୍, ପୁରୀ।**

●●

**ଯିଏ ସର୍ବସାଧାରଣଙ୍କ କଲ୍ୟାଣ ପାଇଁ କାର୍ଯ୍ୟ କରିବ, ଅର୍ଥ ଖୋଜି ଖୋଜି ତା ପାଖରେ ପହଞ୍ଚିଯିବ। ପାଣ୍ଠି ଅଭାବରୁ କେବେ କୌଣସି ସର୍ବସାଧାରଣ କାର୍ଯ୍ୟ ଅଧୁରା ରହିଯିବ ନାହିଁ। ଯଦି ବନ୍ଦ ହୋଇଯାଏ, ତେବେ ସେ ପ୍ରକାର କାର୍ଯ୍ୟରେ କିଛି ଦୋଷ ତ୍ରୁଟି ଅଛି ବୋଲି ବୁଝିବାକୁ ହେବ।**

**- ଗାନ୍ଧିଜୀ**



୧୯୭୨ ମସିହା ସାଧାରଣ ନିର୍ବାଚନ ପାଇଁ ଚୂଡ଼ାନ୍ତ ପ୍ରାର୍ଥୀ ତାଲିକା ପ୍ରସ୍ତୁତି । ବିଜୁ ପଟ୍ଟନାୟକ, ଡକ୍ଟର ହରେକୃଷ୍ଣ ମହତାବ, ନୀଳମଣି ରାଉତରାୟ ଓ ଦଳର ଦୁଇଜଣ ସାଧାରଣ ସମ୍ପାଦକ ଜୟକୃଷ୍ଣ ମହାନ୍ତି ଏବଂ ଭବାନୀ ଚରଣ ପଟ୍ଟନାୟକ ଆଲୋଚନାରତ ।



ପିପିଲି-ଡ଼େଲାଙ୍ଗ ନିର୍ବାଚନ ମଣ୍ଡଳୀରେ ବିଭିନ୍ନ ଉନ୍ନୟନ କାର୍ଯ୍ୟ ତଦାରଖ କରୁଛନ୍ତି ନିଜ ବିଧାୟିକା ପତ୍ନୀ କିରଣ ଲେଖାଙ୍କ ସହିତ ।



ରାଜ୍ୟ ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ ମିଟିଂରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ଭି. ସିତାରାମାୟା, ଶ୍ରୀ ଜୟକୃଷ୍ଣ ମହାନ୍ତି, ଶ୍ରୀ ରାଜକୃଷ୍ଣ ବୋଷ, ଶ୍ରୀ ମଦନ ମୋହନ ପଟନାୟକ ଏବଂ ଶ୍ରୀ ନିଶାମଣି ଖୁଣ୍ଟିଆ ପ୍ରମୁଖ।



ମୁଖ୍ୟମନ୍ତ୍ରୀତ୍ୱର ଶେଷଦିନ....

ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ ଓ ଜୟକୃଷ୍ଣ ମହାନ୍ତି ନିଜର ପୁତ୍ର ତପନ ଓ କନ୍ୟା ଡ଼ଲି ସହ

# ମୋ ସ୍ମୃତିରେ ଜୟକୃଷ୍ଣ ମହାନ୍ତି

**ଲିଙ୍ଗରାଜ**

ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କର ସହ ମୋର ପ୍ରଥମ ପ୍ରତ୍ୟକ୍ଷ ସାକ୍ଷାତ, ବୋଧହୁଏ, ୧୯୮୮ ଫେବୃୟାରୀ ମାସରେ ନିଜର ବିବାହ କାର୍ଯ୍ୟକ୍ରମ ଅବସରରେ ଗନ୍ଧମାର୍ଦ୍ଦନ ପାଦଦେଶର ନିସର୍ଗ ନିବାସ ଆଶ୍ରମରେ। ମୋର ଶ୍ୱଶୁର ଶ୍ରୀ ଅଲେଖ ପାତ୍ରଙ୍କ ସହ ତାଙ୍କର ଅତି ଅନ୍ତରଙ୍ଗ ସମ୍ପର୍କ ଥିବା କଥା ଆଗରୁ ଶୁଣିଥିଲି। ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଝାସ ଦେଇ ପୁରୀ ଜେଲ୍‌ରେ ସହବନ୍ଦୀ ଜୀବନଠୁ ଆରମ୍ଭ କରି ପରବର୍ତ୍ତୀ ଜୀବନରେ ଗାନ୍ଧି ବିଚାର ଓ ସଙ୍ଗଠନ ସହ ଏକାଠି ରହି ବିଚାର, କର୍ମ ଓ ଭାବର ଅତି ଘନିଷ୍ଠ ସାଥି ଭାବରେ ସେମାନେ ରହିଥିଲେ। ପ୍ରଥମ ଭେଟ ହେଲେ ବିଶେଷ କଥାବାର୍ତ୍ତାର ତ' ସୁଯୋଗ ନ ଥିଲା, ତାଙ୍କର ମନଖୋଲା ଠୋ ଠୋ ହସ ତାଙ୍କୁ ଚୁମ୍ବକୀୟ ବ୍ୟକ୍ତିତ୍ୱର ଏକ ବିଶେଷ ବିଭବ ବୋଲି ମନେ ହୋଇଥିଲା। ପରବର୍ତ୍ତୀ ସମୟରେ ତାଙ୍କ ସହ ସମ୍ପର୍କର ସ୍ମୃତିକୁ ରୋମନ୍ଥନ କଲେ ସେହି ହସ ହସ ଚେହେରା ସାମ୍ନାକୁ ଆସିଯାଏ। ୧୯୯୭ରେ ତାଙ୍କର ସହଧର୍ମିଣୀ ଶ୍ରୀମତୀ କିରଣବାଳା ମହାନ୍ତିଙ୍କର ବିୟୋଗର ଅଳ୍ପ ଦିନ ପରେ ଜଣେ ବନ୍ଧୁଙ୍କ ସହ ତାଙ୍କୁ ସଙ୍ଖୋଳିବା ପାଇଁ ଯାଉଥାଉ। ଆମ ଦୁହିଁଙ୍କୁ ଦେଖି ସେ ଏମିତି ମନ ଖୋଲା ହସ ସହ ସ୍ୱାଗତ କଲେ ଯାହା ମୋତେ ଅଭିଭୂତ କରିଥିଲା। ଆମମାନଙ୍କର ହାଲ୍‌ଚାଲ୍ ଓ ଆନ୍ଦୋଳନର ଗତିବିଧି କଥା ପଚାରି ବୁଝିବା ପରେ ସେ ଆସିଥିଲେ କିରଣ ଅପାଙ୍କ ଅବର୍ତ୍ତମାନ ପ୍ରସଙ୍ଗକୁ। ବ୍ୟକ୍ତିଗତ ଜୀବନର ଦୁଃଖକୁ ଅନ୍ୟ ସାମନାରେ ଢ଼ାଙ୍କି ପାରିବାର ଏହା ଏକ ବିଶେଷ ଗୁଣ ନିଶ୍ଚୟ। ଏହା ଏକ ବିରଳ ଗୁଣ।

୧୯୯୧ରେ ଆମ ଦେଶରେ 'ନୂଆ ଆର୍ଥିକ ନୀତି' ନାମରେ ଯେଉଁ ଏକ ନୂଆ ଯୁଗର ସୂତ୍ରପାତ କରାଗଲା, ତାହାର ଅବଶ୍ୟମ୍ଭାବୀ ଭୟାବହ ପରିଣତି ସମ୍ବନ୍ଧରେ ଆରମ୍ଭରୁ ବୁଝିପାରି ଦେଶବାସୀଙ୍କୁ ସଚେତ, ସଜାଗ ଓ ସଙ୍ଗଠିତ କରିବାର ଐତିହାସିକ ଆବଶ୍ୟକତାକୁ ହୃଦୟଙ୍ଗମ କରି ଓଡ଼ିଶାରେ ଯେଉଁ କେତେଜଣ ଚିନ୍ତକ ଅଣ୍ଟା ଭିଡ଼ିଲେ ସେମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ସର୍ବଶ୍ରୀ ମନମୋହନ ଚୌଧୁରୀ, ରବି ରାୟ, କିଶାନ ପଟ୍ଟନାୟକ, ଗଣନାଥ ପାତ୍ର ପ୍ରମୁଖ। ଗାନ୍ଧିବାଦ, ସମାଜବାଦ, ମାର୍କ୍ସବାଦ-ଲେଲିନବାଦ ଭଳି ଭିନ୍ନ ଭିନ୍ନ ମତବାଦରେ ବିଶ୍ୱାସୀ ଏହି ବ୍ୟକ୍ତିମାନେ ସେଇ କାଳରେ ଏକାସାଙ୍ଗରେ ଅନୁଭବ କଲେ ଯେ ଦେଶର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ମତବାଦର ଭେଦକୁ ଭୁଲି ଏକାଠି କାମ କରିବାର ଆବଶ୍ୟକତା ରହିଛି। ଏପରି ଏକ ପ୍ରକ୍ରିୟାର ଫଳସ୍ୱରୂପ ରାଜ୍ୟସ୍ତରରେ ସର୍ବୋଦୟ ବିଚାରର ସଙ୍ଗଠନ ସହ ନିକଟ ସମ୍ପର୍କ ଲାଭ କରିବାର ଏକ ସ୍ୱାଭାବିକ ସୁଯୋଗ ମୋ ପାଇଁ ଜୁଟିଲା। ଉତ୍କଳ ସର୍ବୋଦୟ ମଣ୍ଡଳ ଓ ନବଜୀବନ ମଣ୍ଡଳ ଭଳି ସଙ୍ଗଠନ ଓ ସଂସ୍ଥାର ସମ୍ମିଳନୀ, ଶିବିର ଆଦି କାର୍ଯ୍ୟକ୍ରମରେ ସାମିଲ ହେବାର ଅନେକ ଥର ଅବସର ମିଳିଲା। ସେହି କ୍ରମରେ ସର୍ବୋଦୟ ଧାରାର ଅନ୍ୟାନ୍ୟ ନେତୃବୃନ୍ଦଙ୍କ ସହ ଜୟକୃଷ୍ଣ ମହାନ୍ତିଙ୍କ ସହ ମୋର ସମ୍ପର୍କ ବଢ଼ିଲା। ଧୀରେ ଧୀରେ ତାଙ୍କର

ଭୁବନେଶ୍ୱରସ୍ଥିତ ବାସଭବନକୁ ଯାଇ ତାଙ୍କ ସହ ଘଣ୍ଟା ଘଣ୍ଟା ଧରି ଆଳାପ ଆଲୋଚନା କରିବାର ମଧ୍ୟ ସୁଯୋଗ ମିଳିଲା।

ସଭାସମିତି ଭଳି ସାର୍ବଜନିନ କାର୍ଯ୍ୟକ୍ରମମାନଙ୍କରେ ସେ ନିଜେ କମ୍ କହି ଅନ୍ୟମାନଙ୍କର କଥାକୁ ଅଧିକ ଶୁଣିବାର ଆଗ୍ରହୀ ରହୁଥିଲେ। ବ୍ୟକ୍ତିଗତ ଆଲୋଚନା ବେଳେ ସେ ନିଜ କଥା କମ୍ ଅନ୍ୟମାନଙ୍କ ବିଷୟରେ ଅଧିକ କହୁଥିଲେ।

ଯେଉଁ କାଳଖଣ୍ଡରେ ମୁଁ ତାଙ୍କ ସମ୍ପର୍କରେ ଆସିଲି, ଓଡ଼ିଶାରେ ସର୍ବୋଦୟ ଆନ୍ଦୋଳନର ସବୁଠୁ ବଡ଼ ତଥା ସର୍ବାଦୃତ ନେତା ଥିଲେ ଶ୍ରୀ ମନମୋହନ ଚୌଧୁରୀ। ମାତ୍ର ତାଙ୍କର ବ୍ୟକ୍ତିତ୍ୱର କେତେକ ଗୁଣ କାରଣରୁ ଅଧିକାଂଶ କର୍ମୀ ମନମୋହନ ଚୌଧୁରୀଙ୍କ ସମ୍ମୁଖରେ ଅନେକ କଥା କହିବାକୁ ସାହସ ପାଉ ନ ଥିଲେ। ପରବର୍ତ୍ତୀ ସମୟରେ ସେମାନେ ଜୟକୃଷ୍ଣ ମହାନ୍ତିଙ୍କ ସହ ଅଲଗା ସେସବୁ କଥା ଆଲୋଚନା କରୁଥିଲେ। ସାଧାରଣ କର୍ମୀମାନେ ଜୟୀ ଭାଇଙ୍କୁ ମନଖୋଲି ନିଜର ସବୁ କଥା କହି ପାରୁଥିଲେ। କାହା ମନରେ କିଛି ଅଭିଯୋଗ ଥିଲେ ତାହାର ସେ ନିରାକରଣ କରୁଥିଲେ, କୌଣସି ମତଭେଦ ଉପୁଜିଥିଲେ ସେ ତାର ସମାଧାନର ସୂତ୍ର ଦେଉଥିଲେ। ସାଧାରଣ କର୍ମୀମାନଙ୍କର ସୁଖଦୁଃଖ, ସୁବିଧା ଅସୁବିଧା ବିଷୟରେ ସେ ଅତି ସମ୍ବେଦନଶୀଳ ରହୁଥିଲେ। ତାଙ୍କ ସହ ସାକ୍ଷାତ ଆଲୋଚନା ବେଳେ ଗୋଟିଏ ପ୍ରସଙ୍ଗ କହିଲା ବେଳେ ସେ ଭାବବିହ୍ୱଳ ହୋଇଯିବା ମୁଁ ଅନୁମାନ କରିଛି। ତାହା ହେଉଛି, ଆଦିବାସୀ ବହୁଳ ଦୁର୍ଗମ ଗାଁମାନଙ୍କରେ କାମ କରୁଥିବା ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନଙ୍କୁ ଅତି କମ୍ ଆର୍ଥିକ ମାନଦେୟ ଦେଇ ପାରୁଥିବାର କ୍ଷୋଭ। ୧୯୯୧ ପରବର୍ତ୍ତୀ ସମୟରେ ମନମୋହନ ଚୌଧୁରୀଙ୍କ ପରାମର୍ଶକ୍ରମେ ଏକ ନୀତିଗତ ନିଷ୍ପତ୍ତି ନିଆଗଲା ଯେ ସେମାନଙ୍କ ଦ୍ୱାରା ସଞ୍ଚାଳିତ କୌଣସି ସଂସ୍ଥା ବିଦେଶୀ ଧନ (ସଂସ୍ଥାଗତ) ଉପରେ ଆଶ୍ରିତ ହେବେ ନାହିଁ। ଏପରି ଏକ ଆଦର୍ଶଗତ ନିଷ୍ପତ୍ତିକୁ ଗ୍ରହଣ କଲା ଫଳରେ ବିଦେଶୀ ଧନ ଆଶ୍ରିତ ଏନ୍.ଜି.ଓ.ମାନଙ୍କ ବହୁଳତା ବାତାବରଣରେ ଉତ୍କଳ ନବଜୀବନ ମଣ୍ଡଳ ପାଇଁ ଏହା ଏକ ବଡ଼ ଆହ୍ୱାନ ଥିଲା। ଏବେ ବି' ରହିଥିବ ନିଶ୍ଚୟ। ଏହି ପ୍ରସଙ୍ଗ ଆଲୋଚନା ବେଳେ ଜୟକୃଷ୍ଣ ମହାନ୍ତିଙ୍କ ଠାରୁ କର୍ମୀମାନଙ୍କ ଅବସ୍ଥାକୁ ନେଇ ଉପରୋକ୍ତ ମନୋଦଶା ମୁଁ ଅନୁମାନ କରିଥିଲି।

ଜୀବନର କିଶୋରାବସ୍ଥାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଜୟକୃଷ୍ଣ ମହାନ୍ତି ତ୍ୟାଗ ଓ ନିଷ୍ଠାର ସାଧନା କରିଥିଲେ। ସେହି ଯୁଗରେ ତାଙ୍କ ଭଳି ହଜାର ହଜାର କିଶୋର ଭାବପ୍ରବଣ ହୋଇ ସଂଗ୍ରାମରେ ସାମିଲ ହୋଇଥିଲେ। ତାହା ଥିଲା ସେ କାଳର ଯୁଗଧର୍ମ। କିନ୍ତୁ ଜୟକୃଷ୍ଣ ମହାନ୍ତି ସ୍ୱାଧୀନୋତ୍ତର ସମୟରେ ଓଡ଼ିଶାର ପ୍ରଥମ ବିଧାନ ସଭାକୁ ନିର୍ବାଚିତ ହୋଇ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ ନ ହୋଇ ମଧ୍ୟ ମନ୍ତ୍ରୀଙ୍କ ଠାରୁ ଯଥେଷ୍ଟ ଅଧିକ ସମ୍ମାନ ଓ ମର୍ଯ୍ୟାଦାର ଅଧିକାରୀ ଥିଲେ। ପରବର୍ତ୍ତୀ ସମୟରେ ଯଦିଓ ସେ ସମ୍ପୂର୍ଣ୍ଣ ଭାବରେ ନିର୍ବାଚନ ରାଜନୀତିରୁ ଦୂରେଇ ଯାଇ ନାହାନ୍ତି, ଜୀବନର ବଡ଼ ଅଂଶ ଗାନ୍ଧି ବିଚାରର ଅନୁଷ୍ଠାନ ଚଳେଇବାର ରଚନାତ୍ମକ ଦାୟିତ୍ୱରେ ବିତାଇଛନ୍ତି। ନବକୃଷ୍ଣ ଚୌଧୁରୀ ଧାରାର ସେ ଜଣେ ରାଜନେତା। ତେଣୁ ବିଭିନ୍ନ ସମୟରେ ସରକାରରେ ଅନେକ ଗୁରୁ ଦାୟିତ୍ୱରେ ଅବସ୍ଥାପିତ ହୋଇଥିବାର ଅହଂ ତାଙ୍କ ଭିତରେ ତିଳେମାତ୍ର ନ ଥିଲା।

ସମାଜ ପରିବର୍ତ୍ତନ ପାଇଁ ସମର୍ପିତ କାମ କରିବାକୁ ଆଗ୍ରହୀ ଯୁବ ପାଢ଼ିର କର୍ମୀମାନଙ୍କ ପ୍ରତି ତାଙ୍କର ଏକ ଅନାବିଳ ଶ୍ରଦ୍ଧା ଥିଲା। ଗାନ୍ଧି ବିଚାରର ସଙ୍ଗଠନ ପ୍ରତି

ସେମାନଙ୍କୁ କେମିତି ଆକୃଷ୍ଟ କରିହେବ ସେ ଚିନ୍ତା ତ' ନିଶ୍ଚୟ ଘାରୁଥିଲା, ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଲଢ଼େଇ କରି କେହି କର୍ମୀ କଷ୍ଟ ବରଣ କରିଥିବା ଜାଣିଲେ ସେ ଗଦଗଦ ହୋଇଯାଉଥିଲେ। ଥରେ ସେ ମୋ ସହିତ ଗପୁଥାନ୍ତି। ନିଜ ନାତିମାନେ କେଉଁଠି କଣ କରୁଛନ୍ତି, କେତେ ରୋଜଗାର କରୁଛନ୍ତି ସେସବୁ କଥା କହିଲେ। ତା'ପରେ ହଠାତ୍ ଚୁପ୍ ହୋଇଗଲେ। ପୁଣି କହିଲେ, "କେବଳ ନିଜ ପାଇଁ ଅର୍ଥ ରୋଜଗାରରେ କି ଆନନ୍ଦ! ଦେଶ ପାଇଁ ସମାଜ ପାଇଁ କଷ୍ଟ ବରଣ କରିବାରେ ଯେଉଁ ଆନନ୍ଦ ତାହା ଅପୂର୍ବ!" ତାଙ୍କର ନାତିମାନେ ବା ସେହି ପୀଢ଼ିର ପିଲାମାନେ ଏକଥା ଶୁଣିଲେ ଉଦ୍ଭଟ ଚିନ୍ତା ଭାବି ବିଦ୍ରୁପ କରିପାରନ୍ତି। କିନ୍ତୁ ଗୋଟିଏ ଯୁଗରେ ଜୟକୃଷ୍ଣ ମହାନ୍ତିଙ୍କ ଭଳି କିଶୋରମାନଙ୍କୁ ଏହି ଶାଶ୍ୱତ ମୂଲ୍ୟବୋଧ ଉଦ୍‌ବୁଦ୍ଧ କରିଥିଲା। ଅନେକେ ସେହି ମୂଲ୍ୟବୋଧକୁ ପାଶୋରି ଗଲେ। ଜୟକୃଷ୍ଣ ମହାନ୍ତି ତାଙ୍କର ଶେଷ ଜୀବନ ଯାଏଁ ତାକୁ ହିଁ ବଞ୍ଚିବାର ମୂଳମନ୍ତ୍ର କରିଥିଲେ। ତାହାହିଁ ତାଙ୍କ ଜୀବନର ସାର୍ଥକତା।

**ସମତା ଭବନ, ବରଗଡ଼।**

●●

ପ୍ରିୟ ଜୟୀଭାଇଙ୍କ ପ୍ରଥମ ବାର୍ଷିକୀ ଶ୍ରାଦ୍ଧଦିବସ ଅବସରରେ ଉତ୍କଳ ନବଜୀବନ ମଣ୍ଡଳର କର୍ମୀ ଓ କର୍ମକର୍ତ୍ତାଙ୍କ ତରଫରୁ ବିନମ୍ର ଶ୍ରଦ୍ଧାଞ୍ଜଳି।

**ଶ୍ରୀ ଶିବରାମ ମିଶ୍ର**
ସାଧାରଣ ସମ୍ପାଦକ

**ଶ୍ରୀ ଗୁରୁ ମହାନ୍ତି**
ସଭାପତି

# ପୂର୍ଣ୍ଣାନନ୍ଦ

ପଦ୍ମଚରଣ ନାୟକ

ପୂର୍ଣ୍ଣତାକୁ ଶୂନ୍ୟତା ଭଳି କଳ୍ପନାରେ ବି କଳିବା ସମ୍ଭବପର ନୁହେଁ। ସେଇଥିଲାଗି କଳ୍ପନାତୀତର ଆଶ୍ରୟ ନେବାକୁ ହୋଇଥାଏ। କୁହାଯାଏ ବ୍ରହ୍ମହିଁ ପୂର୍ଣ୍ଣ। ସେହି ପୂର୍ଣ୍ଣତା ଲାଭ ଅଚିନ୍ତନୀୟ ସାଧନାରେ ସମ୍ଭବପର। ଏହା ଅଲଭ୍ୟ ହେଲେ ବି ସେହି ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେବା ଲାଗି ସାଧକମାତ୍ରେ ବ୍ୟାକୁଳ। ହେଲେ ଆମେ ସେହି ସମ୍ପୂର୍ଣ୍ଣତାର କେତେ ନିକଟରେ ହେଉଥାଏ ତାହାହିଁ ଆମ ସାଫଲ୍ୟର ମାପକାଠି। ସେଥିରୁ ଯେଉଁ ଆନନ୍ଦ ମିଳେ ତା'ର ପଟାନ୍ତର ନାହିଁ।

ଜୟୀ ଭାଇ ପୁରୀ ଜିଲ୍ଲା ସ୍କୁଲରେ ପଢୁଥିଲା ବେଳେ ଦଶମ ଶ୍ରେଣୀ ପରୀକ୍ଷା ପର୍ଯ୍ୟନ୍ତ ଶ୍ରେଣୀରେ ପ୍ରଥମ ହୋଉଥିଲେ। ଦୁର୍ଭାଗ୍ୟକୁ ମାଟ୍ରିକ ପରୀକ୍ଷା ପୂର୍ବରୁ ତାଙ୍କୁ ନିମୋନିଆ ଜ୍ୱର ହେଲା। ତାଙ୍କ ବଞ୍ଚିବା ସମ୍ପର୍କରେ ସମସ୍ତଙ୍କର ସଂଶୟ ଥିଲା। ସୌଭାଗ୍ୟକୁ ସେ ବଞ୍ଚିଗଲେ। ପରୀକ୍ଷା ପାଖେଇ ଆସିବାରୁ ସମସ୍ତ ଗୁରୁଜନ ଚାହିଁଲେ ସେ ପରବର୍ଷକୁ ପରୀକ୍ଷା ଦିଅନ୍ତୁ। ଜୟୀଭାଇ ଆଉ ବର୍ଷଟା ପଡ଼ି ରହିବାକୁ ଚାହିଁଲେ ନାହିଁ। ସେହି ଭଙ୍ଗା ସ୍ୱାସ୍ଥ୍ୟରେ ପରୀକ୍ଷା ଦେଇ ସେ ଦ୍ୱିତୀୟ ଶ୍ରେଣୀରେ ପାସ୍ କଲେ। ତାଙ୍କ ଶ୍ରେଣୀରେ ଯିଏ ପରୀକ୍ଷାରେ ତାଙ୍କ ତଳକୁ ରହୁଥିଲେ ସିଏ ମାଟ୍ରିକ ପରୀକ୍ଷାରେ ବିହାର ଓଡ଼ିଶାରେ ପ୍ରଥମ ହେଲେ। ଏହା ପରେ ସେ ଆଇ.ଏସ୍.ସି. ପଢ଼ିବା ଲାଗି ରେଭେନ୍ସା କଲେଜରେ ନାମ ଲେଖାଇଲେ। ସେତେବେଳେ କଟକରେ ରହି ପଢ଼ିବା ଅତି ବ୍ୟୟସାଧ୍ୟ ଥିଲା। ଏଣୁ ସେ ଏକ ଟ୍ୟୁସନ କରି ପଢ଼ିବେ ବୋଲି ସ୍ଥିର କଲେ। ଏଭଳି ଅବସ୍ଥାରେ ନବକୃଷ୍ଣ ଚୌଧୁରୀଙ୍କ ପୁଅ କାଳୁକୁ ପଢ଼ାଇବାର ସୁଯୋଗ ଘଟିଲା। ସେ ରହିଲେ ତାଙ୍କ ଘରେ। ବାଖରାବାଦର ଚୌଧୁରୀ କୋଠା ସେତେବେଳେ ସ୍ୱରାଜ୍ୟ ଆନ୍ଦୋଳନର ପୀଠ। ସେଠାକୁ ସ୍ୱାଧୀନତା ସଂଗ୍ରାମୀମାନେ ଆସନ୍ତି ଓ ଦେଶର ତଥା ରାଜ୍ୟର ସମସ୍ୟା ଏବଂ ଗାନ୍ଧୀଙ୍କ ବାର୍ତ୍ତା ଆଲୋଚିତ ହୁଏ। ସେ ସବୁ ଜୟୀଭାଇଙ୍କ କାନରେ ପଡ଼େ। କ୍ରମେ ଶ୍ରେଣୀ ପାଠପଢ଼ା ଠାରୁ ଅନ୍ୟ ଆଡ଼କୁ ତାଙ୍କ ମନ ଢଳେ। ସେ ଆଇ.ଏସ୍.ସି. ପାସ୍ ପରେ ବି.ଏସ୍.ସି. ପଢ଼ିଲେ। ଏତିକି ବେଳକୁ ବିଖ୍ୟାତ ଅଗଷ୍ଟ ବିପ୍ଳବର ଆହ୍ୱାନ ଆସେ। ଜୟୀଭାଇଙ୍କର ବି.ଏସ୍.ସି. ପରୀକ୍ଷା ଦେବା ନୋହିଲା। ଦେଶର ହଜାର ହଜାର ଯୁବକଙ୍କ ଭଳି ସେ କାରାବରଣ କଲେ। କାରାଗାରରେ ବହୁ ବିଖ୍ୟାତ ତଥା ବିପ୍ଳବୀଙ୍କର ସାନ୍ନିଧ୍ୟ ମିଳିଲା। ମୁକ୍ତି ପରେ ସେ ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କର ହୋଇଗଲେ ଅତ୍ୟନ୍ତ ବିଶ୍ୱସ୍ତ ଏବଂ ୧୯୪୬ ନିର୍ବାଚନରେ ନିର୍ଦ୍ଦନ୍ଦରେ ନିର୍ବାଚିତ ହେଲେ। ସେହି ସମୟକୁ କଂଗ୍ରେସ ଦଳର ପୁରୁଣା ନେତା ନୀଳକଣ୍ଠ ଓ ଗୋଦାବରୀଶ ଦଳରୁ ବିଚ୍ଛିନ୍ନ ହୋଇଯାଇଥାନ୍ତି ଏବଂ ପୁରୀ ଜିଲ୍ଲାର କଂଗ୍ରେସ ସଙ୍ଗଠନରୁ ସାମ୍ୟବାଦୀମାନେ ଅଲଗା ହୋଇପଡ଼ିଥାନ୍ତି। ଏଭଳି ଏକ ଶୂନ୍ୟତା ମଧ୍ୟରେ ସଙ୍ଗଠନକୁ ପୁଣି ଗଢ଼ିତୋଳିବା ତାଙ୍କ ଭଳି ଜଣେ ଯୁବକ ପକ୍ଷରେ କେତେ କଷ୍ଟକର ତାହା ଅନୁମେୟ। ସେହି କାର୍ଯ୍ୟକୁ ସେ ଦକ୍ଷତାର ସହ ସମ୍ପୂର୍ଣ୍ଣ କଲେ। ଫଳରେ ୧୯୫୨ ମସିହା ନିର୍ବାଚନରେ କଂଗ୍ରେସ ଦଳ

ପୁରୀ ଜିଲ୍ଲାରୁ ସଂଖ୍ୟାଧିକ ଆସନ ଲାଭ କଲା। ନବକୃଷ୍ଣ ଚୌଧୁରୀଙ୍କ ଅନୁସାରୀ ଭାବରେ ସେ ଥିଲେ କଂଗ୍ରେସ ଦଳର ବାମପନ୍ଥୀ ଗୋଷ୍ଠୀର ଲୋକ। କିନ୍ତୁ ସମାଜବାଦୀମାନେ କଂଗ୍ରେସ ଦଳରୁ ଅଲଗା ହୋଇଯିବା ପରେ ତାଙ୍କ ସାଙ୍ଗକୁ ଗୌରାଙ୍ଗ ଦାସଙ୍କ ବ୍ୟତୀତ ବିଶେଷ କେହି ରହିଲେ ନାହିଁ। ଏଣୁ ପରବର୍ତ୍ତୀକାଳ ରାଜନୀତିରେ ସେ ଓଡ଼ିଶା ରାଜନୀତିର କେନ୍ଦ୍ରାଞ୍ଚଳରେ ରହି ପାରିଲେ ନାହିଁ। କିନ୍ତୁ ତାହା ପରେ ଖଦୀ ବୋର୍ଡ ହେଉ ବା ଉତ୍କଳ ନବଜୀବନ ମଣ୍ଡଳ ହେଉ ଯେଉଁଠି ରହିଲେ ସେଠାରେ ସେ ତାଙ୍କର କର୍ମ ଦକ୍ଷତାର ଛାପ ଛାଡ଼ିଦେଇଗଲେ ।

ନବଜୀବନ ମଣ୍ଡଳ ସହିତ ସଂପୃକ୍ତ ହେଲା ପୂର୍ବରୁ ନବକୃଷ୍ଣ ଚୌଧୁରୀଙ୍କ ଶତବାର୍ଷିକୀ କାର୍ଯ୍ୟକ୍ରମରେ ମୁଁ ତାଙ୍କର ନିକଟତର ହୋଇଥିଲି ଓ ତାଙ୍କ କାର୍ଯ୍ୟର ଢ଼ଙ୍ଗ ମଧ୍ୟ ଲକ୍ଷ୍ୟ କରିଥିଲି। ସେ ଗୋଟିଏ ଭୂଲ ବି ବରଦାସ୍ତ କରିବେ ନାହିଁ। ଲେଖା କି କାମ ନିଖୁଣ ନ ହେଲା ପର୍ଯ୍ୟନ୍ତ ସଂଶୋଧନ ପାଇଁ ଫିଗର ଲେଖାଇବେ। ଠିକ୍ ସମୟରେ କାମ ହେବ ଏବଂ ପଇସାର ହିସାବ ଠିକ୍ ରହିବ। ଏହା ନ ହେଲେ ଜୟୀଭାଇଙ୍କୁ ଭଲ ନିଦ ହେବ ନାହିଁ। ନବଜୀବନ ମଣ୍ଡଳ ଏବଂ ମାଳତୀଦେବୀଙ୍କର ସେ ଥିଲେ ଅତ୍ୟନ୍ତ ନିର୍ଭରଯୋଗ୍ୟ ଅନୁଗାମୀ। ତାଙ୍କ ନେତୃତ୍ୱରେ ନବଜୀବନ ମଣ୍ଡଳ ବହୁବର୍ଷ ଧରି ଓଡ଼ିଶାର ବିଖ୍ୟାତ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଭାବରେ କାର୍ଯ୍ୟ କରିଆସିଥିଲା। ଅନୁଗୋଳଠାରେ ନବଜୀବନ ମଣ୍ଡଳର ବୈଠକ ବସିବାର ଥିଲେ ସେ ସବୁ ସମୟରେ ସେଥିରେ ଯୋଗ ଦେଉଥିଲେ। କର୍ମକର୍ତ୍ତା ଭାବରେ ଯେଭଳି ଉପଦେଷ୍ଟା ଭାବରେ ସେହିଭଳି ନିହାତି ଅସୁସ୍ଥ ହେଲା ପର୍ଯ୍ୟନ୍ତ ସେ ସେଥିରେ ଯୋଗ ନ ଦେଇ ରହିପାରୁନଥିଲେ। ସେ ଖାଲି ତା'ର ଦିଗଦର୍ଶକ ନ ଥିଲେ ସବୁ ଟିକିନିଖି କାର୍ଯ୍ୟକଳାପର ଖବର ରଖୁଥିଲେ ଓ ଯେଉଁଠି ଆବଶ୍ୟକ ହେଉଥିଲା ପରାମର୍ଶ ଦେଉଥିଲେ। ଏବକାର ପିଢ଼ିର ଲୋକେ ଅନେକ କାମକୁ ଚଳାଇ ନିଅନ୍ତି। କିନ୍ତୁ ଗୋଟିଏ କେଉଁଠି ଦୋଷ ଥିଲେ ତାହା ଜୟୀଭାଇଙ୍କ ଆଖିରେ ନ ପଡ଼ି ରହିବ ନାହିଁ ଓ ସେଇଟି ସଂଶୋଧିତ ନ ହେଲା ପର୍ଯ୍ୟନ୍ତ ସେ ଛାଡ଼ିବେ ନାହିଁ। ଅନୁଷ୍ଠାନ ବାବଦ କେଉଁଠି କାହାଠାରୁ କିଛି ପାଇବାର ଥିଲେ ସେ ସେତକ ଆଦାୟ କରିବାପାଇଁ ନଛୋଡ଼ବନ୍ଧା। ପୂର୍ଣ୍ଣତା ପ୍ରତି ତାଙ୍କର ଆଗ୍ରହ ମୋତେ ଖୁବ୍ ଭଲ ଲାଗୁଥିଲା। ଯାହା ଆଜିକାଲିର ସହକର୍ମୀମାନଙ୍କ ଠାରୁ ମିଳୁନାହିଁ। ସାଧାରଣ କ୍ଷେତ୍ରରେ କାମ କରୁଥିବା କର୍ମୀମାନେ ହିସାବ କିତାବ ଠିକଣା ଭାବରେ ରଖିବା ପାଇଁ ଗାନ୍ଧୀଜୀ ଖୁବ୍ ଗୁରୁତ୍ୱ ଦେଇଥିଲେ। ସେ ଦିଗରେ ଜୟୀଭାଇ ଥିଲେ ଆଦର୍ଶସ୍ଥାନୀୟ।

ଗୋପବନ୍ଧୁ ରମାଦେବୀ ଆଶ୍ରମ, ପୁରୀ।

••

# ମୁଁ ତାଙ୍କୁ ଯେତିକି ଜାଣେ

ଶ୍ରୀମତୀ ଶାନ୍ତି ପଟନାୟକ

ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି ଥିଲେ ମୋର ସ୍ୱାମୀ ବନମାଳୀ ପଟ୍ଟନାୟକଙ୍କର ବାଲ୍ୟବନ୍ଧୁ। ମୋ ବିବାହ ପରଠାରୁ ମୁଁ ଜୟୀବାବୁଙ୍କୁ ଜାଣିଲି। ତାଙ୍କ ସହିତ ପ୍ରଥମ ସାକ୍ଷାତ ବେଳେ ମୋ ସ୍ୱାମୀ ତାଙ୍କୁ ଚିହ୍ନା କରାଇ କହିଲେ ଏ ବାବୁ ଜଣଙ୍କ ମୋର ଖାଲି ସହପାଠୀ ନୁହନ୍ତି ଏ ମୋର ବଡ଼ ଭାଇ ପରି। ତାଙ୍କ ଠାରୁ ଜୟୀବାବୁ ଦୁଇବର୍ଷ ବଡ଼ ଥିଲେ। ସେହିଦିନ ଠାରୁ ମୁଁ ତାଙ୍କୁ ଓ ତାଙ୍କ ସ୍ତ୍ରୀ କିରଣ ଅପାଙ୍କୁ ବଡ଼ ଯା ଓ ଦେଢ଼ଶୁର ହିସାବ କରେ। ମୋ ଶ୍ୱଶୁରଘର ପରିବାରରେ ସେ ଜଣେ ସଦସ୍ୟ ପରି ମଧ୍ୟ ଥିଲେ। ପିଲାଦିନୁ ତାଙ୍କର ସରଳ ବ୍ୟବହାର ଓ ସବୁବେଳେ ମନ ଖୋଲା ହସ ଓ ଦୃଢ଼ ମନୋବଳ ଦେଖି ସମସ୍ତେ ତାଙ୍କୁ ସ୍ନେହ ଆଦର କରୁଥିଲେ। ଏପରିକି ମୋ ଶାଶୁ, ଶଶୁର ତାଙ୍କୁ ତାଙ୍କର ଏକମାତ୍ର କନ୍ୟାକୁ ବିବାହ ଦେବାକୁ ସ୍ଥିର କରିଥିଲେ। କିନ୍ତୁ କଂଗ୍ରେସ ଆନ୍ଦୋଳନରେ ଯୋଗଦେବା ପରେ ତାହା ସମ୍ଭବ ହୋଇପାରିଲା ନାହିଁ। ଉଭୟେ ବନ୍ଧୁ ପୁରୀ ଜିଲ୍ଲା ସ୍କୁଲରେ ପଢୁଥିଲେ। ମୋ ଶାଶୁ କହନ୍ତି ଜଣଙ୍କର ଦେହ ଖରାପ ବା ମନ ଖରାପ ହେଲେ ଅନ୍ୟଜଣକ ଖାଇବା ପିଇବା ଛାଡ଼ି ଏକାଠି ବସି ରହନ୍ତି। ଥରେ ଜୟୀବାବୁ ମନ ମାରି ବସିଥିବାର ଦେଖି ବନମାଳୀବାବୁ ବୁଝିଲେ ଯେ କୌଣସି ଅସୁବିଧା ବଶତଃ ସେ ଠିକ୍ ସମୟରେ ପରୀକ୍ଷା ଫିସ୍ ଦେଇପାରିବେ ନାହିଁ ଫଳରେ ତାଙ୍କୁ ପରୀକ୍ଷାରୁ ବଞ୍ଚିତ ହେବାକୁ ପଡ଼ିବ। ତେଣୁ ବନମାଳୀବାବୁ ବାପ, ମା'ଙ୍କୁ ଲୁଚାଇ ତାଙ୍କ scholarship ଟଙ୍କା ଦେଇ ସାହାଯ୍ୟ କରିଥିଲେ। ସମୟ ଆସିବା ପରେ ବାପା, ମା ଶୁଣି ବହୁତ ଖୁସି ହୋଇଥିଲେ ଓ ଆଶୀର୍ବାଦ କରି କହିଥିଲେ, ଏହି ସ୍ନେହ ଓ ସାହାଯ୍ୟ ଖାଲି ଅନ୍ତରଙ୍ଗ ବନ୍ଧୁ ପାଇଁ ରଖିଲେ ଚଳିବ ନାହିଁ। ଭବିଷ୍ୟତରେ ଏହି ମନୋବୃତ୍ତି ଦେଶବାସୀଙ୍କ ପାଇଁ ଯେପରି ରହେ। ପୁରୀ ଜିଲା ସ୍କୁଲରେ ପଢ଼ିଲାବେଳେ ଜୟୀବାବୁ, ସତ୍ୟନାରାୟଣ ଗୁହ ନାମକ ଜଣେ terrorist ବଙ୍ଗାଳୀ ଭଦ୍ରଲୋକଙ୍କ ସହିତ ମିଶିଲେ। ଭାରତର ସ୍ୱାଧୀନତା ଆଣିବା ପାଇଁ ଇଂରେଜ ସରକାରଙ୍କର ସବୁ ପୋଡ଼ାଜଳା କରି ଆନ୍ଦୋଳନ କରୁଥିବାରୁ ତାଙ୍କୁ ସରକାର ବେଙ୍ଗଲ ବାହାରକୁ ପଠାଇଥିଲେ। ସତ୍ୟନାରାୟଣ ପୁରୀ ଜିଲା ସ୍କୁଲ ପାଖରେ ଗୋଟିଏ ଘରଭଡ଼ା ନେଇ ରହୁଥିଲେ। ଛାତ୍ରମାନଙ୍କୁ ଖାଇବା ପିଇବାକୁ ଦେଇ ତାଙ୍କ ଦଳରେ ସାମିଲ ହେବାପାଇଁ ପ୍ରବର୍ତ୍ତାଉଥିଲେ। ଜୟୀବାବୁ ଓ ବନମାଳୀ ବାବୁ ଉଭୟେ ସେଥିରେ ମିଶିଥିଲେ। କିଛିଦିନ ପରେ ସେପରି ଆନ୍ଦୋଳନରେ ଯୋଗ ଦେବାକୁ ଏମାନଙ୍କର ମନ ମାନିଲା ନାହିଁ। କିନ୍ତୁ ସେହିଦିନୁ ଏମାନଙ୍କର ଦେଶାତ୍ମବୋଧ ଭାବନାର ମୂଳଦୁଆ ପଡ଼ିଥିଲା। ପରବର୍ତ୍ତୀ କାଳରେ ସେମାନେ ଯେତେବେଳେ ରେଭେନ୍ସା କଲେଜରେ ପଢ଼ିଲେ ଗାନ୍ଧିଜୀଙ୍କ ସ୍ୱରାଜ ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ।

ଜୟୀବାବୁ ରେଭେନ୍ସା କଲେଜରେ ପଢ଼ିଲାବେଳେ ନବକୃଷ୍ଣ ଚୌଧୁରୀଙ୍କର ଝିଅ ଉତ୍ତରା ଓ ପୁଅ କାଲୁଙ୍କୁ ଘରେ ଟ୍ୟୁସନ୍ କରୁଥିଲେ। ନବକୃଷ୍ଣ ଚୌଧୁରୀ, ତାଙ୍କ ସ୍ତ୍ରୀ ମାଳତୀ ଦେବୀ, ଭାଇ ଗୋପବନ୍ଧୁ ଚୌଧୁରୀ,

ଭାଉଜ ରମାଦେବୀ ପ୍ରଭୃତି ଆନ୍ଦୋଳନରେ ଯୋଗଦେଇ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରୁଥିଲେ। ଜୟୀବାବୁ କଲେଜ ପଢ଼ା ଶେଷ କରିବା ପୂର୍ବରୁ ସେମାନଙ୍କ ସହିତ ଯୋଗଦେଇ କାରାବରଣ କଲେ। ତାଙ୍କ ସହିତ ତାଙ୍କର ବନ୍ଧୁ ବନମାଳୀ ପଟ୍ଟନାୟକ ଓ ଅନ୍ୟ ସହପାଠୀମାନେ ମଧ୍ୟ ଗିରଫ ହୋଇ ଜେଲ ଗଲେ। ସେମାନେ ୧୯୪୨ ରୁ ୧୯୪୬ ପର୍ଯ୍ୟନ୍ତ ଜେଲଦଣ୍ଡ ଭୋଗିଥିଲେ। ଯାହା ଶୁଣିଛି ଜେଲ ସେମାନଙ୍କ ପାଇଁ ଏକପ୍ରକାର ଶିକ୍ଷାର କେନ୍ଦ୍ର ଥିଲା। ସେମାନେ ରାଜବନ୍ଦୀ ଥିବା ହେତୁ ଯେତେବେଳେ ଯାହା ଚାହୁଁଥିଲେ ସରକାର ତା ଯୋଗାଇ ଦେଉଥିଲେ। ବିଭିନ୍ନ ଭାଷା ଶିଖିବା, କାରୀଗରୀ କାମ, ସଙ୍ଗୀତ, ରୋଷେଇ ଶିଖିବା ଇତ୍ୟାଦିରେ ସମସ୍ତେ ତାଲିମ ପାଉଥିଲେ। ସେମାନଙ୍କର ଖାଇବା ସେମାନେ ନିଜେ ତିଆରି କରୁଥିଲେ କାରଣ ଅନ୍ୟ ରୋଷେଇଆ ହୁଏତ ଖାଦ୍ୟରେ କିଛି ଅପମିଶ୍ରଣ କରିପାରେ, ସେଥିପାଇଁ ସେମାନେ ସଜାଗ ରହୁଥିଲେ। ଆଇନ ଅମାନ୍ୟ ଓ ଅସହଯୋଗ ଆନ୍ଦୋଳନରେ ଜେଲ ଯାଇ ସେମାନେ ସେଠି ଚୁପ୍ ଚାପ୍ ରହିପାରୁ ନଥିଲେ। ଶୁଣିଛି ସନଲାଇଟ ସାବୁନ ଭିତରେ ପାମ୍ପଲେଟ ଭର୍ତ୍ତି କରି ପାଚେରୀ ଚଢ଼ି ବାହାରକୁ ଦେଉଥିଲେ ଓ ବାହାରୁ ଖବର ଆଣୁଥିଲେ।

ଜୟୀବାବୁ ୧୯୪୬ରେ ଜେଲରୁ ଖଲାସ ହୋଇ ପ୍ରଥମେ ନିମାପଡ଼ା, ଗୋପ, କାକଟପୁର ନିର୍ବାଚନ ମଣ୍ଡଳୀର ଆସେମ୍ବ୍ଲି ସଭ୍ୟ ହେଲେ। ସେତେବେଳେ ୬୦ ଜଣ ସଦସ୍ୟଙ୍କୁ ନେଇ ଓଡ଼ିଶା ବିଧାନସଭା ଥିଲା। ପରେ ସଭ୍ୟ ସଂଖ୍ୟା ବଢ଼ିଲା। ସେ ଦ୍ୱିତୀୟ ଥର ପାଇଁ ପିପିଲି ନିର୍ବାଚନ ମଣ୍ଡଳୀରୁ ସଭ୍ୟ ନିର୍ବାଚିତ ହୋଇଥିଲେ। ପରେ ସେ ଖଦୀ ବୋର୍ଡର ସଭାପତି କିଛିଦିନ ପାଇଁ ଥିଲେ। ପରେ ସେ ସକ୍ରିୟ ରାଜନୀତିରୁ ଦୂରେଇ ଯାଇଥିଲେ। ସର୍ବୋଦୟ ମଣ୍ଡଳ ଓ ଭୂଦାନ ଯଜ୍ଞ ସମିତି ସହିତ ସମ୍ପୃକ୍ତ ରହି ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରୁଥିଲେ।

ଜୟୀବାବୁ ଗାନ୍ଧି ବିଚାରଧାରାରୁ କେବେହେଲେ ଦୂରେଇ ଯାଇ ନଥିଲେ। ସେ ସ୍ୱାବଲମ୍ବନଶୀଳତା ଉପରେ ଜୋର ଦେଉଥିଲେ। ସୂତା କାଟିବା, ଲୁଗା ବୁଣିବା, ନିଜର ଚାହିଦା ମୁତାବକ ପୋଷାକ ତିଆରି କରିବା ଓ ନିଜ ପିଲାମାନଙ୍କୁ ମଧ୍ୟ ସବୁଥିରେ ତାଲିମ ଦେଉଥିଲେ। ସମସ୍ତଙ୍କୁ ଖଦୀ ପିନ୍ଧାଇଥିଲେ। ନିଜ ଘରେ ସୁନ୍ଦର ଫୁଲ, ଫଳ ଲଗାଇବା, ଗୋ ପାଳନ ଓ କୁକୁଡ଼ା ପାଳନ ଇତ୍ୟାଦି ପାଠପଢ଼ା ସହିତ ତାଲିମ ଦେଇଛନ୍ତି। ପିଲାମାନେ ଉଚ୍ଚଶିକ୍ଷା ମଧ୍ୟ ପାଇଛନ୍ତି। ପୁଅ, ଝିଅ ଘରୁ ଦୁଇଜଣ ଡାକ୍ତର ବାହାରିଛନ୍ତି। ସବୁ ପିଲାମାନେ ସଙ୍ଗୀତ କଳାରେ ମଧ୍ୟ ପାରଙ୍ଗମ। ପରିବାରର ସମସ୍ତେ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ।

ଜୟୀବାବୁଙ୍କ ପରି ଏପରି ଆଦର୍ଶ କଂଗ୍ରେସ ଲୋକ ଖୁବ କମ୍ ଅଛନ୍ତି। ସେ ନିଜ ନିଷ୍ଠା ଓ ଆଦର୍ଶରେ ଅଟଳ ରହିଥିଲେ। ସେଥିପାଇଁ ସେ ଅତ୍ୟନ୍ତ ଲୋକପ୍ରିୟ ଥିଲେ।

••

# 'ଅହିଂସକ ମାଡ଼'ର ସ୍ୱାଦ

ରବୀନ୍ଦ୍ର ନାଥ ସାହୁ

'ଅହିଂସକ ମାଡ଼'ର ସ୍ୱାଦ ନିଆରା। 'କମଳ ଘୋଡ଼ିଆ' ମାଡ଼ ପରି ଇଏ ଦେହକୁ ଜଖମ କରିଦେବ। ସର୍ବାଙ୍ଗ ହାକୁ ହାକୁ ପୋଡୁଥିବ ଅଥଚ ଖଣ୍ଡିଆ ଖାବରାର ଚିହ୍ନ ସହିତେ ନଥିବ। ତେବେ କେବଳ ପାର୍ଥକ୍ୟ : କମଳ ଘୋଡ଼ିଆ ମାଡ଼ ଚଢ଼ୁଇଥିବା ଲୋକ ମନରେ ଜମାଟ ବାନ୍ଧିଥାଏ କ୍ରୋଧ, ପ୍ରତିଶୋଧ ଓ ବିଦ୍ୱେଷ ବିଷର ବନ୍ଧରକ୍ତ। କିନ୍ତୁ ଅହିଂସକ ମାଡ଼ ମାରୁଥିବା ବ୍ୟକ୍ତି ମନରେ 'ମାଡ଼' ଖାଉଥିବା ବ୍ୟକ୍ତି ପ୍ରତି କୌଣସି ବି' ଅସୂୟାଭାବ ନଥାଏ। ପ୍ରକୃତରେ 'ମାଡ଼' ଖାଇବାଭଳି କୌଣସି ଭାବନ କି ଅଭିପ୍ରାୟ ମଧ୍ୟ ତା'ର ନଥାଏ। ବରଂ ତା'ର ସ୍ୱାଭାବିକ ସ୍ନେହ, ପ୍ରେମ, କ୍ଷମା ଗୁଣହିଁ 'ମାଡ଼'ର କାମ ଦିଏ। ଅନ୍ୟଭାଷାରେ କହିଲେ, ଏ 'ମାଡ଼' ଖାଉଥିବା ବ୍ୟକ୍ତିର ନିଜ ଲାଜ ନିଜକୁ ଖାଇଯାଉଥାଏ। ଏମିତି 'ଅହିଂସକ ମାଡ଼' ଥରେ ଜୟୀଭାଇଙ୍କ ଠାରୁ ଖାଇଛି।

ସେ ଥାଆନ୍ତି ନବଜୀବନ ମଣ୍ଡଳର ସଭାପତି। ମୁଁ ଥାଏ କାର୍ଯ୍ୟକାରୀ ସମିତିର ଜଣେ ସଭ୍ୟ। ମଣ୍ଡଳର ଗୋଟାଏ ବୈଠକରେ ଆମ ଭିତରେ କଥା କଟାକଟି ଚାଲିଲା। ସେ ଜଣେ କର୍ମୀଙ୍କ ପ୍ରତି ଖୁବ୍ କଡ଼ା ଭାଷା ପ୍ରୟୋଗ କଲେ। ଉକ୍ତ କର୍ମୀ ମଧ୍ୟ ସେହିଭଳି ଭାଷା ପ୍ରୟୋଗ କଲେ। ସେଠି ଜଣେ ଗୁରୁଜନ ସ୍ଥାନୀୟ ବ୍ୟକ୍ତି ଉକ୍ତ କର୍ମୀଙ୍କୁ ଜୟୀଭାଇଙ୍କ ପାଖରେ କ୍ଷମା ମାଗିବାକୁ ବାଧ୍ୟ କଲେ। ମୁଁ କହିଲି, ଜୟୀଭାଇ ମଧ୍ୟ ସେପରି କହିଥିବାରୁ ସେ ମଧ୍ୟ ଦୁଃଖ ପ୍ରକାଶ କରିବା ଉଚିତ। ସମ୍ପୃକ୍ତ ଉଭୟ କୁଣ୍ଠା ବୋଧ କରୁଥାଆନ୍ତି। ଏଇଥିରୁ ଆମର କଥା କଟାକଟି ଚାଲିଲା। ମୁଁ କ୍ଷଣକୋପୀ। କ୍ରୋଧବଶତଃ ଜୟୀଭାଇଙ୍କ ପ୍ରତି ଖୁବ୍ କଟୁଭାଷା ପ୍ରୟୋଗ କରି ଗୁଡ଼ାଏ ଇଆଡୁ ସିଆଡୁ ମନ୍ତବ୍ୟ ଦେଲି। ଅଧଘଣ୍ଟା ପରେ ବୈଠକ ସରିଲା। ଖିଆପିଆ ଆରମ୍ଭ ହେଲା। ମୁଁ ଦେଖିଲି ଜୟୀଭାଇ ଉକ୍ତ କର୍ମୀଭାଇଙ୍କ ପାଖରେ ବସି ଖାଉଛନ୍ତି। ଉଭୟଙ୍କର ଭିତରେ ବେଶ୍ ହସଖୁସି କଥାବାର୍ତ୍ତା ଚାଲିଛି। ସତେକି ଉଭୟଙ୍କର ଭିତରେ କିଛିବି ଅପ୍ରୀତିକର ଘଟଣା ଘଟିନାହିଁ। ସେତେବେଳକୁ ମୋ ମୁଣ୍ଡରୁ ପାରଦ ପୁରା ଖସି ଯାଇଥିଲା। ତଥାପି ମୁଁ ପୁରା ପ୍ରକୃତିସ୍ଥ ହୋଇନଥିଲି। ଏ ଦୃଶ୍ୟ ଦେଖି ମୋ ମନକୁ ବହୁତ କଥା ଗୋଟାଏ ପରେ ଗୋଟାଏ ଆସିଗଲା। (୧) ଜୟୀଭାଇଙ୍କ ଗୁରୁ ନୁମାଙ୍କ ପରି ଜୟୀଭାଇ ମଧ୍ୟ କର୍ମୀଙ୍କୁ ଯେପରି ଦଣ୍ଡ ଦିଅନ୍ତି ସେହିପରି ଉପରେ ପଡ଼ି ପିଠି ମଧ୍ୟ ଆଉଁସି ଦିଅନ୍ତି। (୨) ମୋର ଜୟୀଭାଇଙ୍କୁ ସେଠି ସେପରି କହିବାର ନୈତିକ ଅଧିକାର ନଥିଲା। କାରଣ ସେ କ୍ଷେତ୍ର ଉପରେ ଅଛନ୍ତି। ମୁଁ କେବଳ ଶୁଖିଲା ବକ୍ତୃତା କରୁଛି। ଯିଏ କ୍ଷେତ୍ର ଉପରେ ଦାୟିତ୍ୱ ସମ୍ଭାଳୁଛି, ସେ ନେଇ ଆଣି ଥୋଇବା କେତେ କଷ୍ଟ ତାହା ଜାଣେ। ତାଙ୍କରି ଭଳି ଯିଏ ଦାୟିତ୍ୱ ମୁଣ୍ଡେଇଛି ସେହି ଭଳି ଜଣେ କେହି ତାଙ୍କ ଦୋଷ ଦେଖାଇଥିଲେ ଶୋଭା ପାଇଥାଆନ୍ତା। ମୋର ସେ ନୈତିକ ଅଧିକାର ନାହିଁ। ଏହିଭଳି ଗୁଡ଼େଇତୁଡ଼େଇ ମୁଁ ନିଜ ସହ ମନେ ମନେ ଯୁକ୍ତି କରୁଥାଏ। ମୋ ସାମ୍ନାଧାଡ଼ିରେ ଟିକେ ଦୂରରେ ବସି ଜୟୀଭାଇ

ଖାଉଥାଆନ୍ତି । ହଠାତ୍ ଆମ ଦୁହିଁଙ୍କ ଆଖି ମିଳିଗଲା । ସେ ମୋ ଆଡ଼େ ଚାହିଁ ତାଙ୍କର ସବୁଯାକ ଦାନ୍ତ ଦେଖାଇ ଟିପିକାଲ୍ ନିରସ୍ତକାରୀ ହସଟାଏ ମୋ ଆଡ଼େ ନିକ୍ଷେପ କଲେ । ଅବଶ୍ୟ ସେତେବେଳକୁ ମୋ ମୁଣ୍ଡରୁ ପାରଦ ପୁରା ଖସି ଯାଇଥିଲା । ତାଙ୍କ ହସ ଯୋଗୁଁ ତାହା ଉପରକୁ ଉଠିବା ପରିବର୍ତ୍ତେ ତଳକୁ ଖସିବା ଆରମ୍ଭ କଲା । ନର୍ଭସ ଲାଗିଲା । ସେଦିନ ଅନୁଗୁଳରୁ କଟକ ଫେରି ରାତିରେ ଆଉ ଶୋଇ ପାରିଲିନାହିଁ । ସେହି ହସ ମାଧ୍ୟମରେ ଆସିଥିବା ଅହିଂସକ ମାଡ଼ ମୋତେ ଆକ୍ରାମାକ୍ତ କରି ପକାଇଥାଏ । ତାଙ୍କର ଶତ୍ରୁଜିଣା ହସ, ଅଜାଡ଼ି ହୋଇ ପଡୁଥିବା ସ୍ନେହ ଆଉ ଆତିଥ୍ୟ - ସବୁ ଗୋଟି ଗୋଟି ହୋଇ ମନେ ପଡ଼ିଗଲା । ସକାଳ ହେଲା । ସ୍ୱତଃ ମନକୁ ଆସିଲା, ତାଙ୍କ ଅହିଂସକ ମାଡ଼ର ବଦଳା ନ ନେବାଯାଏ ମୋର ଶାନ୍ତି ନାହିଁ । ସିଧା ଚାଲିଲି ଭୁବନେଶ୍ୱର ବୁଦ୍ଧନଗର ।

ଜୟୀଭାଇ ତାଙ୍କ ଗେଟ୍ ସାମ୍ନାରେ ଛିଡ଼ାହୋଇ ଜଣେ କାହାଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ଆଗପଛ କିଛି ନ ଭାବି ସିଧା ଯାଇ ତାଙ୍କ ପାଦଛୁଇଁ କ୍ଷମା ମାଗିଲି । ସେ ଏହା ଆଶା କରିନଥିଲେ । ପ୍ରଥମେ ଚମକି ପଡ଼ିଲେ । ତାପରେ କୁଣ୍ଢାଇ ପକାଇଲେ । ମୋର ଭାରାକ୍ରାନ୍ତ ହୃଦୟ ଉଶ୍ୱାସ ହୋଇଗଲା । ଦିହିଁଙ୍କ ଆଖି ଛଳଛଳ ହୋଇଗଲା । ସେଦିନ ଅହିଂସକ ମାଡ଼, ତଦ୍‌ଜନିତ ଅନ୍ତର୍ବେଦନା ଓ ତା'ର ମହୌଷଧି - ଉପରୋକ୍ତ ଘଟଣା ହେତୁ ସବୁର ଦିବ୍ୟ ସ୍ୱାଦ ଯୁଗପତ୍ ପାଇଗଲି । ଅବଶ୍ୟ ସେହିଭଳି ଅଜାତଶତ୍ରୁ, ଉଦାରଚରିତ ବ୍ୟକ୍ତିତ୍ୱ ନହେଲେ ଅହିଂସକ ମାଡ଼ ଦ୍ୱାରା କାହାରିକୁ ସାବାଡ଼ କରିବା ଏତେ ସହଜ ବ୍ୟାପାର ନୁହେଁ । ସେହି ପ୍ରେରଣାଦାୟୀ ବ୍ୟକ୍ତିତ୍ୱଙ୍କ ପ୍ରତି ମୋର ଶତଶତ ଜୁହାର ।

ବନମାଳି ଭବନ
ଖାନ୍‌ନଗର, କଟକ-୭୫୩୦୧୨

●●

ଯଦି ମତେ କେହି ପଚାରିବେ ସେ ସ୍ତ୍ରୀ ଓ ପୁରୁଷ ଭିତରେ ପରୋପକାର ପାଇଁ କିଏ ଉପଯୁକ୍ତ, ତେବେ ମୁଁ ନିଃସଙ୍କୋଚରେ କହିବି ଯେ ସେବା ପାଇଁ ସ୍ତ୍ରୀ ଯେତେ ଉପଯୁକ୍ତ ପୁରୁଷ ସେତେ ନୁହେଁ । ଈଶ୍ୱର ସ୍ତ୍ରୀ ଭିତରେ ସହଜେ କିଛି ମଙ୍ଗଳକାରୀ ସଦ୍‌ଗୁଣ ରଖିଛନ୍ତି ଏବଂ ସେହି ସଦ୍‌ଗୁଣର ବିକାଶ ହେବାକୁ ନଦେବାର ପାପ ଆମେ ପୁରୁଷମାନେ କରୁ । ଆମ ପୁରୁଷମାନଙ୍କ ଭିତରେ ସେ ସଦ୍‌ଗୁଣ ନାହିଁ । ତଥାପି ବି ପତି, ଭାଇ, ପିତା ଆଦି ଅନେକ ରୂପରେ ଆମେ ସ୍ତ୍ରୀ ଉପରେ ନିଜ ହୁକୁମ ଚଳାଇଉଛୁ ।

- ଗାନ୍ଧିଜୀ

# ଏକ ଅବିସ୍ମରଣୀୟ ପ୍ରତିଭାର ଅବସାନ

**ଶ୍ରୀ ବିଶ୍ୱନାଥ ପଟ୍ଟନାୟକ**

ନଖ ସହ ମାଂସର ସମ୍ପର୍କ ଯାହା ମୋର ସମ୍ପର୍କ ଜୟକୃଷ୍ଣ ମହାନ୍ତିଙ୍କ ସହ ଠିକ୍ ସେହିପରି। ପ୍ରତ୍ୟେକ ବିଷୟରେ ମୁଁ ତାଙ୍କର ପରାମର୍ଶ ନେଉଥିଲି। ମୁଁ ତାଙ୍କୁ ଜୟୀଭାଇ ବୋଲି ଡାକୁଥିଲି ଓ ସେ ମଧ୍ୟ ମତେ ବିଶ୍ୱନାଥ ଭାଇ ସମ୍ବୋଧନ କରୁଥିଲେ। ଶେଷଯାଏ ଆମର ସମ୍ପର୍କ ଅତି ନିବିଡ଼ ଓ ନିର୍ମଳ ଥିଲା। ନବଜୀବନ ମଣ୍ଡଳ ଗଠନ ଏବଂ ପରିଚାଳନାରେ ଜୟୀଭାଇ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ। ୧୯୫୮ ମସିହାରେ ନବଜୀବନ ମଣ୍ଡଳ ନାନାଦି ପରିଚାଳନାଗତ ଅବ୍ୟବସ୍ଥା ମଧ୍ୟ ଦେଇ ଗତି କରୁଥିଲା ବେଳେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ଦୁହେଁ ଜୟୀଭାଇଙ୍କୁ ଅନୁଗୁଳକୁ ଡାକି ଏହାର ସମସ୍ତ ଦାୟିତ୍ୱ ନେବାକୁ କହିଲେ। ଜୟୀଭାଇ ମଧ୍ୟ ପ୍ରତ୍ୟକ୍ଷ୍ୟ ରାଜନୀତିରୁ ସନ୍ୟାସ ଗ୍ରହଣ କରି ସପରିବାର ଅନୁଗୁଳରେ ରହି ଏ ଅନୁଷ୍ଠାନର ସୁପରିଚାଳନା ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କଲେ।

ଏହି ପରିପ୍ରେକ୍ଷୀରେ ଉତ୍କଳ ନବଜୀବନ ମଣ୍ଡଳ ଅନୁଷ୍ଠାନ ଆରମ୍ଭ ଓ ଗଠନ ସମୟର କଥା ମନକୁ ଆସିଯାଉଛି ଏବଂ ସେ ବିଷୟରେ ଏଠାରେ କିଛି ଲେଖିବାକୁ ସମିଚୀନ ମନେ କରୁଛି। ନବଜୀବନ ମଣ୍ଡଳ ଯେତେବେଳେ ଗଢ଼ାହେଲା ସେତେବେଳେ ମୁଁ କୁଳେନ୍ଦ୍ରୀରେ ଥାଏ। ସାରଙ୍ଗଧର ଦାସଙ୍କ ଠାରୁ ଚିଠି ଆସିଲା। ଆଦିବାସୀ ଅଞ୍ଚଳରେ ଗୋପବାବୁ, ରମାଦେବୀ ଓ ମାଳତୀଦେବୀ ପ୍ରଭୃତି ଆଦିବାସୀମାନଙ୍କ ପାଇଁ ଏକ ଅନୁଷ୍ଠାନ ଗଢ଼ିବାକୁ ଚାହୁଁଥାନ୍ତି। ମତେ ସେଥିରେ ଯୋଗ ଦେବାକୁ କୁହାଗଲା। ଏହି ଅନୁଷ୍ଠାନ ଗୋପବନ୍ଧୁ ଚୌଧୁରୀ, ମାଳତୀ ଚୌଧୁରୀ, ଭରତ ମହାନ୍ତି, କେନ୍ଦୁଝରର ଉପେନ୍ଦ୍ରବାବୁ ଏବଂ ମତେ ନେଇ ଗଠିତ ହେଲା। ଗୋପବନ୍ଧୁ ସେତେବେଳେ ଅଖିଳ ଭାରତୀୟ ଚରଖା ସଂଘର ସମ୍ପାଦକ ଥିଲେ। ସେ ଓଡ଼ିଶା ସାରା ବୁଲିଆସି ଠକ୍କର ବାପାଙ୍କୁ ଚିଠି ଦେଲେ ଆଦିବାସୀ ଓ ନିଷ୍ପେଷିତ ଜାତି ଲୋକଙ୍କ ପାଇଁ କାମ କରିବା ମୋ ଶକ୍ତିର ବାହାରେ। ଆପଣ ମିନୁଙ୍କୁ (ମାଳତୀ ଚୌଧୁରୀ) କୁହନ୍ତୁ। ସେ ଏହି କାମ କରିବାକୁ ଉପଯୁକ୍ତ ବ୍ୟକ୍ତି। ସେହି ମର୍ମରେ ଗୋପବାବୁ ସାରଙ୍ଗଧର ବାବୁଙ୍କ ପାଖକୁ ଚିଠି ଲେଖିଲେ। କଟକ ବାଖରାବାଦସ୍ଥ ତାଙ୍କ ବାସଭବନରେ ଏକ ବୈଠକ ଆହୂତ ହେଲା। ମୁଁ ଯାଇ ସେ ବୈଠକରେ ଯୋଗ ଦେଲି। ସେହି ବୈଠକରେ ସାରଙ୍ଗଧର ବାବୁ, ଗୋପବାବୁ, ରମାଦେବୀ, ମାଳତୀଦେବୀ ପ୍ରଭୃତି ସମସ୍ତେ ଯୋଗଦେଲେ। ପ୍ରସ୍ତାବିତ ଅନୁଷ୍ଠାନର ନାମକରଣ ନେଇ ଅପରାହ୍ନ ଅଧିବେଶନରେ ସବିଶେଷ ଆଲୋଚନା ହେଲା। କିଏ ପ୍ରସ୍ତାବ ଦେଲା ଅବହେଳିତ ଆଦିବାସୀ ଦେଲେ ଭଲହେବ ଓ ଆଉକିଏ କହିଲା ଅବହେଳିତ ଜନଜାତି ଏବଂ ଅନ୍ୟାନ୍ୟ କେତେକ୍ ନାମ ମଧ୍ୟ ଉଠିଲା। ଶେଷରେ ଗୋପବାବୁ କହିଲେ ମିନୁ (ମାଳତୀଦେବୀ) ସମାଜବାଦୀ ପାର୍ଟିର କୃଷକ ପତ୍ରିକାରେ ଯେଉଁ ଧାରାବାହିକ ଲେଖା ଲେଖୁଛନ୍ତି ସେହି ନାମ ଅନୁସାରେ ପ୍ରସ୍ତାବିତ ଅନୁଷ୍ଠାନଟିର ନାଁ ଉତ୍କଳ ନବଜୀବନ ମଣ୍ଡଳ ରଖାଯାଉ। ସେହିଦିନରୁ ହିଁ ଉତ୍କଳ

ନବଜୀବନ ମଣ୍ଡଳ ଓଡ଼ିଶାର ବିଭିନ୍ନ ଅନୁନ୍ନତ ଆଦିବାସୀ ଅଞ୍ଚଳରେ ଏକ ଆଦର୍ଶ ସେବାକାରୀ ଅନୁଷ୍ଠାନ ରୂପେ ତାର ଖ୍ୟାତି ବଜାୟ ରଖିପାରିଛି ।

ସେ ସମୟରେ ଗୁଜୁରାଟରୁ ଜୀବରାମ୍ କଲ୍ୟାଣଜୀ ଗାନ୍ଧିଜୀଙ୍କୁ ଏକ ଲକ୍ଷ ଟଙ୍କା ଦେଇ ଓଡ଼ିଶାରେ ଗାଁ ଗହଳରେ ଉନ୍ନୟନ କାର୍ଯ୍ୟକ୍ରମ ସହିତ କୁଷ୍ଠରୋଗୀଙ୍କ ଚିକିତ୍ସା ଏବଂ ଅବହେଳିତଙ୍କ ପାଇଁ ସେବା କରିବାକୁ ଓଡ଼ିଶା ପଠାଇଲେ । ଗାନ୍ଧିଜୀ ଅଖିଳ ଭାରତ ଚରଖା ସଂଘର ସଭାପତି ଥିଲେ । ଗାନ୍ଧିଜୀ କହିଲେ ମୋ ନିଜ ନାମରେ କୌଣସି ଅନୁଷ୍ଠାନ ହେବନାହିଁ । ସେ କେତୋଟି ଅନୁଷ୍ଠାନ ଗଠନ କଲେ । ସେଗୁଡ଼ିକ ହେଲା ବେଡ଼ଚିରେ କୁଯନଲାଲ ଭାଇ, ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ, ସାବରମତୀରେ କସ୍ତୁରବା, ସେବାଗ୍ରାମରେ ଜମୁନାଲାଲ୍ ବଜାଜ୍ ଓ ଜାନକୀବେନ ଓ ଦକ୍ଷିଣରେ ଜଗନ୍ନାଥଜୀ ଓ ତାଙ୍କ ସ୍ତ୍ରୀ ଜଗଦମ୍ବାଙ୍କୁ ନେଇ ଅନୁଷ୍ଠାନମାନ ଗଠନ କରିଥିଲେ । ଓଡ଼ିଶାରେ ଏ ସମସ୍ତ ଅନୁଷ୍ଠାନ ଗଠନ ଓ ପରିଚାଳନାରେ ଜୟୀଭାଇଙ୍କର ବିଶେଷ ପ୍ରେରଣା ଓ ସମ୍ପୃକ୍ତି ରହିଥିଲା ।

ଜୟୀଭାଇ ବନବାସୀ ସେବା ସମିତି ସହ ଅତି ଅନ୍ତରଙ୍ଗ ଭାବେ ଜଡ଼ିତ ଥିଲେ । ନିଜର ବୟସାଧିକ୍ୟ ଓ ଅସୁସ୍ଥତା ସତ୍ତ୍ୱେ ସେ ଏହି ଅନୁଷ୍ଠାନକୁ ଅନେକ ଥର ଆସୁଥିଲେ ଏବଂ ତାଙ୍କର ମାର୍ଗଦର୍ଶନ ଓ ପରାମର୍ଶ ଦେଉଥିଲେ । ଜୟୀଭାଇଙ୍କ ସ୍ୱାସ୍ଥ୍ୟ ଖବର ପ୍ରଥମେ ସର୍ବୋଦୟ ସମିତିର ସମ୍ପାଦକ ଅକ୍ଷୟ ମହାନ୍ତିଙ୍କ ଠାରୁ ପାଇଲି । ମୁଁ ବରାବର ତାଙ୍କର ପୁଅ ତପନ ଓ ଝିଅ ଡ଼ଲି ସହ ଫୋନ୍‌ରେ ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥା ବୁଝୁଥିଲି । ତପନ, ଡ଼ଲି ଓ ଡ଼ଲିର ସ୍ୱାମୀ ଅଖିଳ ତିନିହେଁ ଯାକ ଡାକ୍ତର । ଡ଼ଲି ଓ ଅଖିଳଙ୍କର ନିଜର ନର୍ସିଂହୋମ୍ ଅଛି । ସେଠାରେ ଜୟୀଭାଇ ଚିକିତ୍ସିତ ହେଉଥିଲେ । ଜୟୀଭାଇଙ୍କୁ ଦେଖିବାକୁ ମନ ଛଟ ପଟ ହେଲା । ସମ୍ପାଦକଙ୍କୁ ଗାଡ଼ି ବ୍ୟବସ୍ଥା ପାଇଁ କହି ସେଦିନ ରାତି ୧୧ଟାରେ ଏଠାରୁ ବାହାରିଲୁ । ତା ପରଦିନ ନର୍ସିଂହୋମ୍‌ରେ ଜୟୀଭାଇଙ୍କୁ ଦେଖିବାକୁ ଗଲି । ସେତେବେଳେ ସିଏ ଅସ୍ପଷ୍ଟ କଥାବାର୍ତ୍ତା କରୁଥିଲେ । ଜୟୀଭାଇଙ୍କ ସହ ପ୍ରାୟ ଦୁଇଘଣ୍ଟା କଟାଇଲି । ତାଙ୍କ ସହ ଏକୁଟିଆ କଥା ହେଲା । ସେ ମତେ ରହିଯିବାକୁ କହୁଥିଲେ । ମୁଁ ତାଙ୍କ ପାଖରେ ଥିବା ଅନ୍ୟ ଏକ ଖାଲି ଖଟରେ ଶୋଇ ବିଶ୍ରାମ ନେଲି । ସନ୍ଧ୍ୟାରେ ପୁଣି ତାଙ୍କ ସହ କଥା ହୋଇ ଫେରିଲି । ଏହା ମୋର ତାଙ୍କ ସହ ଶେଷ ଦେଖା ।

ଜୟୀଭାଇଙ୍କ ମୃତ୍ୟୁ ଖବର ପାଇ ମୁଁ ଦୁଃଖରେ ଭାଙ୍ଗି ପଡ଼ିଲି । ମତେ ଲାଗିଲା ମୁଁ ଯେପରି ସଂସାରରେ ଏକୁଟିଆ ହୋଇଗଲି । ଲକ୍ଷଣାନନ୍ଦଙ୍କ ହତ୍ୟା ଘଟଣାରୁ ଫୁଲବାଣୀରେ କର୍ଫ୍ୟୁ ଜାରିହୋଇ ପରିସ୍ଥିତି ଖୁବ୍ ଖରାପ ଥିଲା । ମୁଁ କୁଜେନ୍ଦ୍ରୀରେ ଥିଲି । ଜୟୀଭାଇଙ୍କ ଶେଷ ଦର୍ଶନ ପାଇଁ ଯାଇ ନପାରି ଏଠାରେ ରହି ପ୍ରାର୍ଥନା କଲି ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ । ତାଙ୍କ ମୃତ୍ୟୁରେ ଗଭୀର ମର୍ମାହତ ହୋଇ ମୁଁ ଦାଢ଼ୀ ଛାଡ଼ି ଦେଇଛି । ନବଜୀବନ ମଣ୍ଡଳ ସଭାପତିଙ୍କୁ ମୋର ଅନୁରୋଧ ସେ ଜୟୀଭାଇଙ୍କ ସମ୍ପର୍କରେ ଏକ ସ୍ମରଣିକା ପ୍ରକାଶ କରନ୍ତୁ । ତାଙ୍କ ସହ ସମ୍ପର୍କ ଥିବା ସମସ୍ତଙ୍କର ଲେଖା ଏଥିରେ ସ୍ଥାନ ପାଉ । ସେଥିପାଇଁ ସମସ୍ତଙ୍କୁ ଅନୁରୋଧ କରାଯାଉ ଏବଂ ସ୍ମରଣିକା ପ୍ରକାଶର ବ୍ୟବସ୍ଥା କରାଯାଉ । ଜୟୀଭାଇଙ୍କ ସ୍ଥାନରେ ନବଜୀବନ ମଣ୍ଡଳର ସଭ୍ୟ ଭାବେ ତପନବାବୁଙ୍କୁ ରଖା ଗଲେ ଭଲ ହୁଅନ୍ତା । ସଭାପତି ଏ ସମ୍ବନ୍ଧରେ ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ କରିବେ ଆଶା ।

ବନବାସୀ ସେବା ସମିତି
ବାଲିଗୁଡ଼ା, କନ୍ଧମାଳ

●●

# ପରମପୂଜ୍ୟ ଜୟୀଭାଇ

ଗଙ୍ଗାଧର ମିଶ୍ର

ସର୍ବୋଦୟ ଆନ୍ଦୋଳନର ଅନ୍ୟତମ ନେତା, ପୂର୍ବତନ ଦେଶହିତୈଷି ବିଧାୟକ, ଆମର ଅତିପ୍ରିୟ ଜୟୀଭାଇ ଆଜି ନାହାନ୍ତି। ବିଗତ ଅଗଷ୍ଟ ୨୬ ତାରିଖ (୨୦୦୮) ଦିନ ସେ ଆମ୍ଭମାନଙ୍କୁ ଛାଡ଼ି ଚାଲିଯାଇଛନ୍ତି। ପୂଜ୍ୟ ଜୟୀଭାଇ ସ୍ୱଜୀବନରେ ଦେଶର ମହାନ୍ ସାଧକ ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ ପ୍ରଭୃତିଙ୍କ ଆଦର୍ଶ ପରିତ୍ୟାଗ କରି ସଂକୀର୍ଣ୍ଣ ସ୍ୱାର୍ଥ ସାଧନରେ କଦାପି ଲିପ୍ତ ହୋଇ ନାହାନ୍ତି। ଆଚାର୍ଯ୍ୟ ମହାଶୟଙ୍କ ଆଦର୍ଶ ଥିଲା ଶିକ୍ଷା ପ୍ରସାର, ସମାଜ ସଂସ୍କାର, ଧର୍ମ ଜାତି କଳହ ବିଲୋପ, ମାତୃଶକ୍ତିର ଉତ୍ଥାନ, ସମାଜରୁ ଶୋଷଣ ତଥା ଅନ୍ଧବିଶ୍ୱାସର ବିଲୋପ, ତଥାକଥିତ ନିମ୍ନବର୍ଗର ବ୍ୟକ୍ତିଙ୍କର ଉତ୍ଥାନ, ଗରିବ ରୋଗୀ ଦୁର୍ଗତ ମାନବର ସେବା ତଥା ସମସ୍ତଙ୍କର ଉଦୟ। ସମସ୍ତ ବ୍ୟକ୍ତି ଗ୍ରାସ, ବାସ, ଶିକ୍ଷା, ସ୍ୱାସ୍ଥ୍ୟ, ସ୍ୱାଧୀନ ଉପାସନା ତଥା ସ୍ୱାଧୀନ-ଚିନ୍ତା ଅଭିବ୍ୟକ୍ତିର ସୁଯୋଗ ଲାଭ କରନ୍ତୁ ବୋଲି ସର୍ବୋଦୟର ମହାନ୍ ଆଦର୍ଶ ଆଚାର୍ଯ୍ୟ ହରିହରଙ୍କୁ ଆକୃଷ୍ଟ କରିଥିଲା ଏବଂ ପୂଜ୍ୟ ଜୟୀଭାଇ ସେହି ମହାନ୍ ପନ୍ଥାର ପଥିକ ଥିଲେ। ସେଥିପାଇଁ ସେ କିଛିବର୍ଷ ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି ହୋଇ ସର୍ବୋଦୟ ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ।

ପୂଜ୍ୟ ଜୟୀଭାଇ ପିଲାଦିନେ ଜଣେ ପ୍ରତିଭାଦୀପ୍ତ ଗୁଣବାନ ଛାତ୍ର ଥିଲେ। ସେ ମାଇନର ପରୀକ୍ଷା ଦେବାବେଳେ ବିହାର ଓଡ଼ିଶା ମିଶି ଏକ ପ୍ରଦେଶ ଥିଲା ଏବଂ ସମଗ୍ର ପ୍ରଦେଶରେ ସେ ମାଇନର ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ। ପରେ ପୁରୀରେ ପଢ଼ିବାବେଳେ ଜଣେ ସଚ୍ଚା ଦେଶପ୍ରେମୀ ଭାବେ ଦେଶର ସ୍ୱାଧୀନତା ସଂଗ୍ରାମରେ ସକ୍ରୀୟ ଅଂଶ ଗ୍ରହଣ କରିଥିଲେ। ସେ ସମୟରେ ପୁରୀର ମଙ୍ଗୁମଠରେ ସର୍ବଶ୍ରୀ ଜୟକୃଷ୍ଣ ମହାନ୍ତି, ଫକୀର ମିଶ୍ର ଓ ଯଦୁମଣି ଜେନା ପ୍ରଭୃତି ରହି ପଢ଼ାପଢ଼ି କରିବା ସଙ୍ଗେ ସଙ୍ଗେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇ ଜେଲ ଯାଇଥିଲେ। ଏମାନଙ୍କ ସହ ପୁରୀର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଚନ୍ଦ୍ରଶେଖର ନାୟକ ମିଶି ମଧ୍ୟ ଜେଲ ଯାଇଥିଲେ। ଏତିକିବେଳେ କିଛିଦିନ ପୁରୀ ଜେଲରେ ଆମର ପ୍ରିୟ ନେତା ନବକୃଷ୍ଣ ଚୌଧୁରୀ ଓ ବିପ୍ଳବୀ ସର୍ବୋଦୟ ନେତା ଅଲେଖ ପାତ୍ର ମଧ୍ୟ ଥିଲେ ଏବଂ ସମସ୍ତେ ମିଶି ନବକୃଷ୍ଣ ଚୌଧୁରୀଙ୍କ ବୁଦ୍ଧିରେ ଅଲେଖ ପାତ୍ରଙ୍କୁ ପୁରୀ ଜେଲ ପାଚେରୀ ଡିଆଇଁ ଦେଇଥିଲେ। ସବୁଆଡ଼େ ହୁଲୁସ୍ଥୁଲ ପଡ଼ିଲା ଯେ ବ୍ରିଟିଶ ଜେଲରୁ ରାଜବନ୍ଦୀ ଜଣେ ଖସି ଚାଲିଗଲା। ଏଣେ ଅଲେଖ ପାତ୍ର ପ୍ରାୟ ବର୍ଷେକାଳ ପୋଲିସ ଆଖିରୁ ଲୁଚି ଲୁଚି ବୁଲିଲେ। ଏ ସବୁ ଘଟଣା ମଧ୍ୟରେ ଜୟୀଭାଇ ପ୍ରାୟ ତିନିବର୍ଷ ଜେଲରେ ଥିଲେ। ଭାରତଛାଡ଼ ଆନ୍ଦୋଳନ ବେଳେ ବ୍ରହ୍ମପୁର ଜେଲରେ ବିଖ୍ୟାତ "ଗୋଆଟା" ମେସ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଓ ଚାଟୁବାବୁଙ୍କୁ ଧରି ଗଠିତ ହୋଇଥିଲା ଏବଂ ଏମାନେ ନିରାମିଷ ଭୋଜନ ସହ ନିୟମିତ ଗୀତାକ୍ଲାସ କରୁଥିଲେ। ସେତିକିବେଳେ ସୁବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଭାଗୀରଥି ମହାପାତ୍ରଙ୍କୁ ଧରି ଓଡ଼ିଆ ସମଶ୍ଳୋକୀ ଶ୍ରୀ ଭାଗବତ ଗୀତା ରଚିତ

ହୋଇଥିଲା। ଏ ସମସ୍ତ ଐତିହାସିକ କର୍ମରେ ପୂଜ୍ୟ ଜୟୀଭାଇଙ୍କ ସହଯୋଗ ଓ ସମର୍ଥନ ଥିଲା।

ଆମ ଜନ୍ମଭୂମି ଭାରତ ସ୍ୱାଧୀନତା ଲାଭ କରିବାର ମାତ୍ର ପାଞ୍ଚମାସ ପରେ ଧର୍ମବିଦ୍ୱେଷୀଗଣ ଷଡ଼ଯନ୍ତ୍ର କରି ଗାନ୍ଧିଜୀଙ୍କୁ ମାରିଦେଲେ। ଦିଖଣ୍ଡିତ ଦେଶରେ ଧର୍ମକଳହ ଚରମ ସ୍ଥାନକୁ ଯାଇ ଆମର ଦାରିଦ୍ର୍ୟ ଓ ସମସ୍ୟାଗୁଡ଼ିକ ବହୁଗୁଣିତ କଲା। ଦେଶରେ କଳାବଜାରୀ, ଶୋଷଣ, ସ୍ୱାର୍ଥପରତା, ଦାରିଦ୍ର୍ୟ, ରୋଗ ଏବଂ ଅପମୃତ୍ୟୁକୁ ବନ୍ଦ କରି କିପରି ଜାତି ଧର୍ମ, ବର୍ଣ୍ଣ, ଭାଷା ନିର୍ବିଶେଷରେ ଲୋକେ ଗ୍ରାସ, ବାସ, ଶିକ୍ଷା, ସ୍ୱାସ୍ଥ୍ୟ, ସ୍ୱାଧୀନ ଉପାସନାର ସୁଯୋଗ ପାଇବେ, ସେଥିପାଇଁ ସର୍ବୋଦୟ ସମାଜ ଓ ସର୍ବସେବା ସଂଘ ଗଠିତ ହେଲା। ଗାନ୍ଧିଜୀଙ୍କର ପ୍ରିୟ ଶିଷ୍ୟ କିଛି ବିଧାନସଭାକୁ ନିର୍ବାଚିତ ହୋଇ ବିଧାନସଭା ଭିତରୁ ସର୍ବୋଦୟ କାର୍ଯ୍ୟକୁ ସମର୍ଥନ କରିବେ ଏବଂ ଅନ୍ୟ କେତେକ ପ୍ରିୟ ଶିଷ୍ୟ ବିଧାନସଭା ବାହାରେ ରହି କେବଳ ଗଠନମୂଳକ କାମରେ (ଅସ୍ପୃଶ୍ୟତା ବର୍ଜନ, ସୂତା କଟା, ଲୁଗା ବୁଣା, କୁଟୀର ଶିଳ୍ପର ଉନ୍ନତି, ଗ୍ରାମବିକାଶ, ନାରୀଜାତିର ଉନ୍ନତି, ସମାଜ ସଂସ୍କାର ଆଦି) ନିଜକୁ ନିୟୋଜିତ କଲେ। ପୂଜ୍ୟ ଜୟୀଭାଇ କିଛିବର୍ଷ ବିଧାନସଭାର ସଦସ୍ୟ ରହି ସରକାରର ସମସ୍ତ ବିକାଶମୂଳକ, ଜନହିତୈଷୀ କାର୍ଯ୍ୟକୁ ସମର୍ଥନ କଲେ। ତାଙ୍କ ପରେ ପୂଜ୍ୟ କିରଣବାଳା ଭାଉଜ ମଧ୍ୟ ବିଧାନସଭାକୁ ନିର୍ବାଚିତ ହୋଇ ଜୟୀଭାଇଙ୍କ ପଦାଙ୍କ ଅନୁସରଣ କରି ନିର୍ବାଚନ ମଣ୍ଡଳୀର ଅବହେଳିତ ଦରିଦ୍ର୍ୟ ଜନସାଧାରଣଙ୍କ ଉନ୍ନତି ସଙ୍ଗେ ସଙ୍ଗେ ସମଗ୍ର ରାଜ୍ୟର ବିକାଶ ଧାରାରେ ନିଜକୁ ନିଃସ୍ୱାର୍ଥପର ଭାବେ ନିୟୋଜିତ କରିଥିଲେ।

ପରମପୂଜ୍ୟ ଆଚାର୍ଯ୍ୟ ହରିହର ୧୯୭୧ ମସିହା ଫେବୃୟାରୀ ୨୧ ତାରିଖରେ ଦେହତ୍ୟାଗ କରିବା ପରେ ତାଙ୍କର ଶିଷ୍ୟ, ଗୁଣଗ୍ରାହୀ ଏବଂ ସର୍ବୋଦୟୀ ସାଥୀଗଣ ଚିନ୍ତା କଲେ କିପରି ତାଙ୍କର ସ୍ମୃତି ଉଦ୍‌ଜୀବିତ ରଖିବେ। ସେତେବେଳେ ପୂଜ୍ୟା ମା' ରମାଦେବୀ ବଞ୍ଚିଥିଲେ। ୧୯୫୮ ମସିହାରୁ ମହାନ୍ ତ୍ୟାଗୀ ସର୍ବୋଦୟ ନେତା ଗୋପବନ୍ଧୁ ଚୌଧୁରୀ ଶରୀର ତ୍ୟାଗ କରିସାରିଥିଲେ। ମା' ରମାଦେବୀଙ୍କର ପରାମର୍ଶରେ ଆଚାର୍ଯ୍ୟ ହରିହର ସ୍ମୃତି ସମିତି ଗଠିତ ହେଲା ଏବଂ ତାର ସମ୍ପାଦକ ଯଥାର୍ଥ ଭାବରେ ପୂଜ୍ୟ ଜୟୀଭାଇ ରହିଲେ ଓ ପୂଜ୍ୟା ଚୂନୀଅପା ସଭାପତି ରହିଲେ। ଶ୍ରୀଯୁକ୍ତ ଶଶିଭୂଷଣ ମିଶ୍ର, ଶ୍ରୀ ପ୍ରହ୍ଲାଦ୍ ସିଂ, ଶ୍ରୀ ଜନାର୍ଦ୍ଦନ ପଟ୍ଟନାୟକ, ସଂଗ୍ରାମୀ ଶ୍ରୀ ଚନ୍ଦ୍ରଶେଖର ନାୟକ, ଶ୍ରୀ ସାରଦା ମହାନ୍ତି ଏବଂ କେତେକ ସର୍ବୋଦୟୀ ନେତା ଓ ସେବକ ତାର ସଦସ୍ୟ ରହିଲେ। ସ୍ଥିର ହେଲା ପ୍ରତିବର୍ଷ ପୁରୀ ଗାନ୍ଧିଘାଟ ଠାରେ ଆଚାର୍ଯ୍ୟଙ୍କର ଜନ୍ମଜୟନ୍ତୀ ପାଳିତ ହେବ। ୨୧ ଫେବୃୟାରୀ ଠାରୁ ୨୭ ଫେବୃୟାରୀ ପର୍ଯ୍ୟନ୍ତ ସାତଦିନ ମଧ୍ୟରେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରବନ୍ଧ ପ୍ରତିଯୋଗିତା, ସଫାଇକାର୍ଯ୍ୟ, ବକ୍ତୃତା ଆଦି ଅନୁଷ୍ଠିତ ହେବ। ଆଚାର୍ଯ୍ୟଙ୍କର ଜନ୍ମଗ୍ରାମ ଶ୍ରୀରାମଚନ୍ଦ୍ରପୁରର ବିଦ୍ୟାଳୟରେ, କର୍ମଭୂମି ସତ୍ୟବାଦୀ ଉଚ୍ଚବିଦ୍ୟାଳୟରେ ଏବଂ ସେ ପିଲାଦିନେ ଅଧ୍ୟୟନ କରୁଥିବା ପୁରୀ ଜିଲା ସ୍କୁଲରେ ଚାରିପାଞ୍ଚଟି ମେଧାବୀ ଗରିବ ପିଲାଙ୍କୁ ତାଙ୍କ ନାମରେ ଅଧ୍ୟୟନ ବୃତ୍ତି ପ୍ରଦାନ କରାଯିବ। ସେଇ ସାତଦିନ ମଧ୍ୟରେ ଗୋଟିଏ ଦିନ ପୁରୀ ଅଞ୍ଚଳର ପ୍ରାଥମିକ ବିଦ୍ୟାଳୟର ସମସ୍ତ ଛାତ୍ରଛାତ୍ରୀଙ୍କୁ ଗାନ୍ଧିଘାଟ ଠାରେ ଏକାଠି କରି ପୂଜ୍ୟ ଆଚାର୍ଯ୍ୟଙ୍କର ମହାନ୍ ଆଦର୍ଶ ଓ ତ୍ୟାଗପୂତ ଜୀବନୀ ବିଷୟରେ କୁହାଯିବ। ଏଥିପାଇଁ ବିଶିଷ୍ଟ ବକ୍ତାମାନେ ଡକାହେବେ। ଏଥିପାଇଁ ପୁରୀର ଆଚାର୍ଯ୍ୟ ହରିହର ସ୍ମୃତି ସମିତି ବିଶେଷ ଦାୟିତ୍ୱ ନେଇ କାମ କରି ଆସୁଅଛି। ବର୍ତ୍ତମାନ ପୁରୀ ସ୍ମୃତି ସମିତିର

ସମ୍ପାଦକ ପୁରୀ ଜିଲା ସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ସୁଧାକର ମହାପାତ୍ର ଅଛନ୍ତି ଏବଂ ପୁରୀର ସଂଗ୍ରାମୀ ଚନ୍ଦ୍ରଭାଇଙ୍କ ଦିଗ୍‌ଦର୍ଶନରେ ସବୁ କାର୍ଯ୍ୟ ସୁଚାରୁ ରୂପେ ହୋଇପାରୁଛି ।

ଆଜି ଆମ ଗହଣରେ ପୂଜ୍ୟ ଜୟୀଭାଇ ନାହାନ୍ତି । ଗତ ୨୦୦୯ ମସିହା ଆଚାର୍ଯ୍ୟ ଜୟନ୍ତୀର ପ୍ରାୟ ଛ'ମାସ ପୂର୍ବରୁ ସେ ଚାଲିଯାଇଥିଲେ । ଜୟନ୍ତୀ ପୂର୍ବରୁ ତାଙ୍କ ଘରେ ସ୍ମୃତି ସମିତିର ଯେଉଁ ବୈଠକ ହୁଏ, ଯେଉଁଥିରେ ଆମ୍ଭେମାନେ ଯୋଗ ଦେଇଥିଲୁ ଏବଂ ଜୟନ୍ତୀ ସପ୍ତାହର ବିଭିନ୍ନ କାର୍ଯ୍ୟକ୍ରମ ଆଲୋଚନା କରି ସ୍ଥିର କରୁଥିଲୁ, ଚଳିତ ବର୍ଷ ତାହା ହୋଇ ନ ପାରିଲେ ମଧ୍ୟ ପୁରୀକୁ ଶ୍ରୀଯୁକ୍ତ ଶଶିଭୂଷଣ ମିଶ୍ର, ଶ୍ରୀ ପ୍ରହଲାଦ ସିଂହ, ଡାକ୍ତର ତପନ କୁମାର ଓ ଡାକ୍ତର ସବିତା ମହାନ୍ତି ପ୍ରମୁଖ ଆସି ସ୍ମୃତି ସମିତିର ବୈଠକ ଏଠାରେ ଅନୁଷ୍ଠିତ କରିଥିଲେ ଏବଂ ପୁରୀ ସର୍ବୋଦୟ ମେଳା କମିଟିର ସହଯୋଗରେ ଆଚାର୍ଯ୍ୟ ଜୟନ୍ତୀର ସକଳ କାର୍ଯ୍ୟ ଗାନ୍ଧି ସ୍ମୃତିପୀଠରେ କରାଇଥିଲେ । ପୁରୀର ହଜାର ହଜାର ସ୍କୁଲ ଛାତ୍ର, ଶିକ୍ଷକ ଓ ଶିକ୍ଷୟିତ୍ରୀ ଏବଂ ବହୁ ବିଶିଷ୍ଟ ବ୍ୟକ୍ତି ଆଚାର୍ଯ୍ୟ ମହାଶୟଙ୍କ ମହାନ୍ ତ୍ୟାଗପୂତ ଜୀବନୀ, ଶିକ୍ଷା ଓ ସ୍ୱାଧୀନତା ନିମନ୍ତେ ତାଙ୍କର ସାଧନା ବିଷୟ ସମ୍ମାନିତ ବକ୍ତାମାନଙ୍କଠାରୁ ଶୁଣି ମିଷ୍ଟାନ୍ନ ବିତରଣରେ ଯୋଗଦେଇ ଗାନ୍ଧିଘାଟରୁ ଫେରିଥିଲେ । ଆଶା କରୁ ସ୍ୱର୍ଗୀୟ ଜୟୀଭାଇଙ୍କ ଦ୍ୱାରା ବ୍ୟବସ୍ଥିତ ଆଚାର୍ଯ୍ୟ ହରିହର ସ୍ମୃତି ସମିତି ଏହିପରି ଚିରନ୍ତନ ଭାବରେ ଏ କାର୍ଯ୍ୟ ସୁଚାରୁରୂପେ ପ୍ରତିବର୍ଷ ଫେବୃୟାରୀ ମାସରେ କରିଚାଲିବ ଏବଂ ଭବିଷ୍ୟତ ଯୁବପିଢ଼ିଙ୍କ ନିକଟରେ ଏ ମହାନ୍ ଆଦର୍ଶ ଉପସ୍ଥାପିତ କରୁଥିବ ।

"Lives of great men all remind us,
We can make our lives sublime."

ପୂର୍ବତନ ସଭାପତି
ଉତ୍କଳ ସର୍ବୋଦୟ ମଣ୍ଡଳ ।

••

ମୋର ଘରର ଚାରିକଡ଼ରେ କାନ୍ଥ ସୃଷ୍ଟିକର, ଝରକା ଗୁଡ଼ିକ ବନ୍ଦ ରଖି ମୁଁ ବାସ କରିବାକୁ ଚାହେଁ ନାହିଁ । ବରଂ ମୁଁ ଚାହେଁ ଯେ ବିଭିନ୍ନ ସଂସ୍କୃତିର ପ୍ରବେଶ ପାଇଁ ମୋର ଘର ଉନ୍ମୁକ୍ତ ରହୁ । କିନ୍ତୁ ଏହା ମତେ ପଦଚ୍ୟୁତ ନ କରୁ । ମୁଁ ମଧ୍ୟ ଅନ୍ୟମାନଙ୍କ ଘରେ ଜଣେ ଅପ୍ରତ୍ୟାଶିତ ଅନୁପ୍ରବେଶକାରୀ ଭାବରେ ରହିବାକୁ ଚାହେଁ ନାହିଁ । କିମ୍ବା ସେଠାରେ ଜଣେ ଭିକ୍ଷୁକ ବା କ୍ରୀତଦାସ ଭାବରେ ମଧ୍ୟ ରହିବାକୁ ଚାହେଁ ନାହିଁ ।

- ମହାତ୍ମା ଗାନ୍ଧୀ

# ଅଭୁଲା ସ୍ମୃତି

ଶ୍ରୀମତୀ ଶକୁନ୍ତଳା ଦାସ

ଅଗଷ୍ଟ ମାସ ୨୫ ତାରିଖ ୨୦୦୮ରେ ଜୟକୃଷ୍ଣ ମହାନ୍ତି (ଜୟୀଭାଇ) ଆମକୁ ଛାଡ଼ି ଆରପାରିକୁ ଚାଲିଗଲେ। ତାଙ୍କୁ ଆମେ ସମସ୍ତେ ଜୟୀଭାଇ ବୋଲି ଡାକୁ। ଦେହ ଖରାପ ହୋଇ ହସପିଟାଲରେ ପଡ଼ିଥିବା ସମୟରେ ମୋର ତାଙ୍କ ସହିତ ଶେଷ ଦେଖା ହୋଇଥିଲା। ସେ ତାଙ୍କ ପିଲାଙ୍କୁ କହିଲେ ମାଳ ମାଉସୀଙ୍କୁ ଟିକେ ମୋ ଦେହ ଖରାପ କଥା ଖବର ଦିଅ। ସେ ଆସୁ। ମୁଁ ଯାଇଥିଲି। କଥାବାର୍ତ୍ତା ଅଳ୍ପ କଲେ, ମୋ ହାତକୁ ମୁଠାଇକି ଧରିଥାନ୍ତି, ହସୁଥାନ୍ତି। ସେ ହସ ହସ ମୁହଁ ମନେ ପଡ଼ିଲେ ମୋତେ ଭାରି କଷ୍ଟ ଲାଗୁଛି। ବିଛଣାରେ ଶୋଇଥିବା ଅବସ୍ଥାରେ ମଧ ମୋତେ କହିଲେ ତୋ ଜୀବନୀ ଲେଖୁନୁ। ପଚାରିଲେ, ତୋ ଜନ୍ମ କେବେ? ମୁଁ କହିଲି, ତାରିଖ, ମାସ ତ ମନେ ନାହିଁ, ଏତିକି ମନେ ଅଛି ଆଶ୍ୱିନ ମାସ ଇନ୍ଦୁପୂର୍ଣ୍ଣମୀ ବୋଲି। ସେ କହିଲେ, ମୋର କେବେ ଜାଣିଛୁ? ମୁଁ କହିଲି, ମୁଁ କିପରି ଜାଣିବି? ସେ ଜନ୍ମାଷ୍ଟମୀରେ ବୋଲି କହି ହସିଲେ। ଏହିପରି କଥାବାର୍ତ୍ତା ଚାଲିଥାଏ, ଅନୁଗୁଳରୁ ଲୋକମାନେ ଆସିଲେ। ମୁଁ ଚାଲିଆସିଲି। ତାପରେ ହଠାତ୍ ମୋ ପୁଅ ସୁବ୍ରତ ପାଖରୁ ଫୋନ୍ ପାଇ ମୁଁ ସୁରାଟ ଚାଲିଗଲି। ସେଠାରେ ଥିବା ସମୟରେ ଚାରି ପାଞ୍ଚ ଦିନ ପରେ ଜୟୀଭାଇ ଚାଲିଯିବାର ଦୁଃସମ୍ବାଦ ପାଇଲି। ଯେଉଁଟାକି ଏତେ ଶୀଘ୍ର ଆଶା କରିନଥିଲି।

ଜୟୀଭାଇଙ୍କ ପରିବାର ସାଙ୍ଗରେ ମୋ ଘରର ବହୁତ ଦିନର ସମ୍ପର୍କ। ଆମେ ସବୁ ସପ୍ତକନ୍ୟା ହୋଇ ବରୀ 'ସେବା ଘରେ' ରହୁଥିଲୁ। କିରଣ ଅପା (ଜୟୀଭାଇଙ୍କ ସ୍ତ୍ରୀ) ସେ ମଧ୍ୟରୁ ଜଣେ। ସେ ମୋ ଠାରୁ ବଡ଼ ହେଲେ ମଧ ଆମେ ଦୁଇଜଣ ଭାରି ସାଙ୍ଗ ଓ ବଡ଼ ଭଉଣୀ ଓ ସାନ ଭଉଣୀର ସମ୍ପର୍କ।

୧୯୪୨ ମସିହାରେ ଏକାଠି ଜେଲ ଗଲୁ। କଟକ ଜେଲରେ ଏକାଠି ଥିଲୁ। ଜେଲରୁ ଖଲାସ ହେଲା ପରେ ମୁଁ ମା' ରମାଦେବୀଙ୍କ କହିବା ଅନୁସାରେ ବାଲେଶ୍ୱରର ଗୁରୁବାଇ ଆଶ୍ରମର ଦାୟିତ୍ୱରେ ରହିଲି। ସେ ନୁମାଙ୍କ ପାଖରେ ଅନୁଗୁଳରେ ରହିଲା। ଜୟୀଭାଇଙ୍କ ସହିତ ଶେଷରେ ତାର ବିଭାଘର ହେଲା। ସେବେଠାରୁ ଜୟୀଭାଇ ଭିଣୋଇ ପାଲଟି ଗଲେ। ଜୟୀଭାଇ ମୋତେ ଭାରି ଭଲ ପାଆନ୍ତି। ତାଙ୍କର ଗୋଟେ ଗୁଣ ସେ କିଛି ନ ଖୁଆଇ କିମ୍ବା ନ ପିଆଇ ଛାଡ଼ିବେନି।

ଜୟୀଭାଇ ଓ ଶକ୍ତିବାବୁ (ମୋର ସ୍ୱାମୀ) ଏକାଠି ବ୍ରହ୍ମପୁର ଜେଲରେ ରହୁଥିଲେ ୧୯୪୨ ମସିହା ଆନ୍ଦୋଳନରେ।

ପୁରୀ ଗାନ୍ଧିତତ୍ତ୍ୱ ପ୍ରଚାର କେନ୍ଦ୍ରରେ ଶକ୍ତିବାବୁ ଥିଲାବେଳେ ସମୟେ ସମୟେ ଜୟୀଭାଇ ଆସନ୍ତି, ପିଲାଙ୍କ ସାଙ୍ଗରେ ମଜା କରି ଚାଲିଯାଆନ୍ତି।

ଭୁବନେଶ୍ୱରରେ ଘର କରି ରହିଲା ପରେ ଆମ ଦୁଇ ପରିବାରର ସମ୍ପର୍କ ଆହୁରି ନିବିଡ଼ ହୋଇଗଲା। ଭଲ ମନ୍ଦ ଦିଆ ନିଆ ଚାଲେ।

ଜୟୀଭାଇ ଉତ୍କଳ ନବଜୀବନ ମଣ୍ଡଳ, ଖଦୀ ମଣ୍ଡଳ, ବାଜୀରାଉତ ଛାତ୍ରାବାସ ଆଦି ବିଭିନ୍ନ ଅନୁଷ୍ଠାନର କାର୍ଯ୍ୟ ଶେଷ ପର୍ଯ୍ୟନ୍ତ ଚଳାଇ ଆସୁଥିଲେ।

ଶକ୍ତିବାବୁଙ୍କ ଦେହ ଖରାପ ହେଲା ପର ଠାରୁ ସେ ସବୁବେଳେ ଆସିପାରୁ ନଥିଲେ ମଧ୍ୟ ଫୋନ୍ ଦ୍ୱାରା ଖବର ବୁଝୁଥିଲେ ଓ ପରାମର୍ଶ ଦେଉଥିଲେ। ଶକ୍ତିବାବୁଙ୍କ ମୃତ୍ୟୁ ବାର୍ଷିକୀରେ ଯୋଗ ଦେବା ପାଇଁ ସେ ଶେଷଥର ପାଇଁ ମୋର ଶ୍ରୀରାମନଗରସ୍ଥ 'ପ୍ରକୃତି ନିବାସ' ବାସଭବନକୁ ଆସିଥିଲେ। ତାପରେ ଆଉ ଆସି ନାହାନ୍ତି।

ଜୟୀଭାଇ ଆଉ ନାହାନ୍ତି ବୋଲି ବିଶ୍ୱାସ କରିପାରୁନି। ମୋ ବଡ଼ ଝିଅ ସେବା ସାଙ୍ଗରେ ତାଙ୍କ ଘରକୁ ଏବେ ଯାଇଥିଲି। ତପନ ସହିତ ସେ ଘରେ ବୁଲିଲା ବେଳେ ଜୟୀଭାଇଙ୍କ ଅନୁପସ୍ଥିତିଟା ମର୍ମେ ମର୍ମେ ଅନୁଭବ କରି ପାରୁଥିଲି। ତାଙ୍କର ସେ ସୁନ୍ଦର ହସଟା ଭାରି ମନେ ପଡୁଛି। ତପନ କହିଲା, ମାଳ ମାଉସୀ ଏ ଘରେ ଏକ ଲାଇବ୍ରେରୀ କରିବି ଭାବୁଛୁ, ଶୁଣି ଖୁସି ଲାଗିଲା।

ଆମେ ଜୟୀଭାଇ ଡାକିବାଟା ପୂର୍ଣ୍ଣଚ୍ଛେଦ ପଡ଼ିଗଲା।

'ପ୍ରକୃତି ନିବାସ', ଶ୍ରୀରାମ ନଗର, ଭୁବନେଶ୍ୱର-୨

●●

'ସର୍ବୋଦୟ' ଶବ୍ଦଟି ଗାନ୍ଧୀ ଆମକୁ ଦେଇଛନ୍ତି। ଏହାର ଅର୍ଥ ହେଲା କେହି ଦୁଃଖୀ ରହିବେ ନାହିଁ। ପ୍ରତ୍ୟେକ ଲୋକ ମୁଠିଏ ପେଟ ପୁରେଇ ଖାଇବାକୁ ପାଇବ, ଦେହ ଘୋଡ଼ାଇବାକୁ ଲୁଗା ପାଇବ। କୋରାପୁଟ ଓ ଫୁଲବାଣୀ ଜିଲ୍ଲାରେ ଲୋକେ ଶୀତଦିନେ ଫୁଙ୍ଗା ଦେହରେ ରାତି ସାରା ବସି ନିଆଁ ପୋଉଁଛନ୍ତି, ବୁଢ଼ଢ, ବୁଢ଼ଢ ନିଆଁରେ ପୋଡ଼ି ଯାଉଛନ୍ତି। ସେ ଜିଲ୍ଲାରେ ଗାଁ ଗାଁ ବୁଲି କେତେ ଏପରି ପୋଡ଼ି ଯାଇଥିବା ପିଲା ମୁଁ ଦେଖିଛି। ଏପରି ଅବସ୍ଥା ରହିବ ନାହିଁ।

ସମସ୍ତେ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ ଘର ପାଇବେ, ପ୍ରତି ପିଲା ପାଠ ପଢ଼ିବାର ସୁବିଧା ପାଇବ ଏବଂ କୌଣସି ଲୋକ ବିନା ଚିକିତ୍ସାରେ ମରିବ ନାହିଁ। ଯଦି ବିନା ହାଣକାଟରେ କାହାରି ପ୍ରତି ହିଂସା ନ କରି ଏହା ହୋଇଯିବ, ତେବେ ତାହାହିଁ ହେବ ସର୍ବୋଦୟ ଏବଂ ଏହାଦ୍ୱାରା ବିଶ୍ୱଶାନ୍ତିର ବାଟ ମଧ୍ୟ ଫିଟିବ।

- ରମାଦେବୀ



ଜୟକୃଷ୍ଣ ମହାନ୍ତିଙ୍କ ଅଧ୍ୟକ୍ଷ୍ୟତାରେ ଅନୁଷ୍ଠିତ ବୈଠକରେ ମାଳତୀ ଚୌଧୁରୀଙ୍କୁ ଏକଲକ୍ଷ ଏଗାର ହଜାର ଟଙ୍କାର ଥଳୀଭେଟି। ଅବସରପ୍ରାପ୍ତ ବିଚାରପତି ଶ୍ରୀ ହରିହର ମହାପାତ୍ର, ଶ୍ରୀମତୀ ମାଳତୀ ଦେବୀ, ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀ ଓ ଶ୍ରୀ ପ୍ରହଲ୍ଲାଦ ମଲ୍ଲିକ ମଞ୍ଚାସୀନ।



ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ବୈଠକର ଏକ ଅନ୍ତରଙ୍ଗ ମୁହୂର୍ତ୍ତ।



ପତ୍ନୀ କିରଣ ଲେଖାଙ୍କ ବିୟୋଗ ପରେ
ବନ୍ଧୁ ପ୍ରଦୀପ୍ତ କିଶୋର ଦାସ (ରାଜ୍ୟର ପୂର୍ବତନ ଶିକ୍ଷାମନ୍ତ୍ରୀ) ଶଂଖୋଳିବା ଅବସରରେ



ପତ୍ନୀଙ୍କ ଦାରୁଣ ବିୟୋଗରେ ଭାଙ୍ଗି ଯାଇନାହାନ୍ତି ସେଇ ସ୍ଥିତପ୍ରଜ୍ଞ ।

# ଜୟୀଭାଇ

ଗୋଲକ ଚରଣ ପାତ୍ର

ଜୟୀଭାଇ ମୋ ବଡ଼ଭାଇ ସ୍ୱର୍ଗୀୟ ଅଲେଖ ପାତ୍ରଙ୍କର ସମକାଳୀନ ସ୍ୱାଧୀନତା ସଂଗ୍ରାମୀ। ଉଭୟେ ୧୯୪୨ "ଭାରତ ଛାଡ଼" ଆନ୍ଦୋଳନରେ ଅଂଶଗ୍ରହଣ କରି କାରାବରଣ କରିଥିଲେ। ଜୟୀଭାଇ ମୋ ଭାଇଙ୍କଠାରୁ ବୟସରେ ବଡ଼ଥିଲେ ଓ ଦୁହିଁଙ୍କ ମଧ୍ୟରେ ଅନ୍ତରଙ୍ଗ ଘନିଷ୍ଠତା ଥିଲା। ମୋ ଭାଇ ତାଙ୍କୁ ବଡ଼ଭାଇ ତୁଲ୍ୟ ସମ୍ମାନ ଦେଉଥିଲେ। ସେହି ହିସାବରେ ମୁଁ ମଧ୍ୟ ତାଙ୍କୁ (ଜୟୀ ଭାଇଙ୍କୁ) ସବୁବେଳେ ମୋ ବଡ଼ଭାଇଙ୍କର ସ୍ଥାନ ଦେଇ ଶ୍ରଦ୍ଧା ଓ ସମ୍ମାନ ଦେଇଆସିଛି। ମୁଁ ପୁରୀ ଜିଲା ସ୍କୁଲରେ ପଢୁଥିଲା ବେଳେ ୧୯୪୭ରେ ଜୟୀଭାଇ ଓ ତାଙ୍କ ଧର୍ମପତ୍ନୀ ସ୍ମରଣୀୟା କିରଣଲେଖା ମହାନ୍ତିଙ୍କ ସହିତ ପୁରୀଠାରେ ପ୍ରଥମେ ସାକ୍ଷାତ୍ ହୋଇଥିଲା। ତାପରେ ୧୯୫୯ରେ ଅନୁଗୁଳସ୍ଥିତ ବାଜି ରାଉତ ଛାତ୍ରାବାସ୍‌ରେ ମୋ ବିବାହ ଅବସରରେ ଏବଂ ୧୯୬୨ ମଇ ମାସରେ ଉତ୍କଳ ନବଜୀବନ ମଣ୍ଡଳରେ ଜଣେ କର୍ମୀ ରୂପେ ମୁଁ ଯୋଗ ଦେବା ସମୟରେ ତାଙ୍କ ସହିତ ସାକ୍ଷାତ୍। ୧୯୬୨ ଅପ୍ରେଲରେ ସେ ଉତ୍କଳ ନବଜୀବନ ମଣ୍ଡଳ ସମ୍ପାଦକ ପଦରୁ ବିଦାୟ ନେବା ପରେ ମୁଁ ସେହିବର୍ଷ ମଇ ମାସଠାରୁ ମଣ୍ଡଳର ସମ୍ପାଦକ ଦାୟିତ୍ୱ ଗ୍ରହଣ କଲି। ସେହିଦିନଠାରୁ ଜୟୀଭାଇଙ୍କ ସହିତ ଧୀରେ ଧୀରେ ଘନିଷ୍ଠତା ବଢ଼ିଲା। ସେ ୧୯୫୮ରେ ନବଜୀବନ ମଣ୍ଡଳରେ ଯୋଗ ଦେବାଠାରୁ ତାଙ୍କର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ମଣ୍ଡଳର କାର୍ଯ୍ୟକାରୀ ସମିତି ସଦସ୍ୟ ରହି ଆସିଥିଲେ ଓ ମଣ୍ଡଳର ପ୍ରତ୍ୟେକ କାମରେ ତାଙ୍କର ସକ୍ରିୟ ସହଯୋଗ, ମୂଲ୍ୟବାନ ପରାମର୍ଶ ଓ ପ୍ରତ୍ୟକ୍ଷ ମାର୍ଗଦର୍ଶନ ମିଳୁଥିଲା। ତାଙ୍କର ପରିଚାଳନାଗତ ଦକ୍ଷତା ଓ ଅଭିଜ୍ଞତା ଆମମାନଙ୍କୁ ସଂସ୍ଥା ପରିଚାଳନାରେ ଖୁବ୍ ସାହାଯ୍ୟ କରିଥିଲା।

ସେ ପ୍ରତ୍ୟକ୍ଷ ଭାବେ ୧୯୫୮ ମାର୍ଚ୍ଚରୁ ୧୯୬୨ ଅପ୍ରେଲ ପର୍ଯ୍ୟନ୍ତ ଉତ୍କଳ ନବଜୀବନ ମଣ୍ଡଳର ଯଥାକ୍ରମେ ସହ ସମ୍ପାଦକ ଓ ସମ୍ପାଦକ ଭାବେ ମଣ୍ଡଳର ପରିଚାଳନା ଓ ଅବିଭକ୍ତ କୋରାପୁଟ, ଗଞ୍ଜାମ, ସୁନ୍ଦରଗଡ଼, କେଉଁଝର, ଢେଙ୍କାନାଳ, ମୟୁରଭଞ୍ଜ ଓ ଫୁଲବାଣୀ ଆଦି ଜିଲ୍ଲାରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଚାଲିଥିବା ସମାଜସେବା କାର୍ଯ୍ୟକୁ ଶୃଙ୍ଖଳିତ ଓ ବ୍ୟବସ୍ଥିତ କରିପାରିଥିଲେ। ସେ ସମୟରେ ଆଦିବାସୀ ଓ ଅନ୍ୟ ଦଳିତ ବର୍ଗର ଲୋକେ ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ଖୁବ୍ ଦୁର୍ବଳ ଥିଲେ। ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ଗମନାଗମନ ବ୍ୟବସ୍ଥା ଆଦି ଅତି ନିମ୍ନ ସ୍ତରର ଥିଲା। ସେମାନଙ୍କ ସର୍ବବିଧ ଉନ୍ନତି କଳ୍ପେ ସମ୍ପୃକ୍ତ ଅଞ୍ଚଳରେ ମୁତୟନ ମଣ୍ଡଳର କର୍ମୀମାନଙ୍କୁ ଦିଗ୍‌ଦର୍ଶନ ଦେବା ସହ ସେ ପ୍ରେରଣା ଯୋଗାଉ ଥିଲେ। ତାଙ୍କର କ୍ଷେତ୍ରାଞ୍ଚଳ ପରିଦର୍ଶନ ଯୋଗୁଁ ସଂପୃକ୍ତ ଅଞ୍ଚଳରେ ଗ୍ରାମବାସୀମାନଙ୍କୁ ଉତ୍ସାହ ମଧ୍ୟ ମିଳୁଥିଲା। ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ଯେ ଉତ୍କଳ ନବଜୀବନ ମଣ୍ଡଳ ୧୯୪୮ ଅକ୍ଟୋବର ମାସରେ ପ୍ରତିଷ୍ଠାତା ସଦସ୍ୟ ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀ, ବିପ୍ଳବୀ ସାରଙ୍ଗଧର ଦାସ, ସ୍ୱର୍ଗୀୟ ଆଚାର୍ଯ୍ୟ ହରିହର, ସ୍ୱର୍ଗୀୟ ମା' ରମାଦେବୀ, ସ୍ୱର୍ଗୀୟ ମାଳତୀ ଚୌଧୁରୀ, ସ୍ୱର୍ଗୀୟ ରାଜକୃଷ୍ଣ ବୋଷ,

ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ, ସ୍ୱର୍ଗୀୟ ଈଶ୍ୱରଲାଲ ବ୍ୟାସ, ସ୍ୱର୍ଗୀୟ କୃପାସିନ୍ଧୁ ହୋତା, ସ୍ୱର୍ଗୀୟ ଭରତ ଚନ୍ଦ୍ର ମହାନ୍ତି ଓ ଶ୍ରୀଯୁକ୍ତ ବିଶ୍ୱନାଥ ପଟ୍ଟନାୟକ ଆଦିଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠା ଲାଭ କରିଥିଲା।

ପ୍ରାରମ୍ଭରେ ବିପ୍ଳବୀ ସାରଙ୍ଗଧର ଦାସ ସଭାପତି ଓ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ସମ୍ପାଦକ ରୂପେ ନିର୍ବାଚିତ ହୋଇ ନବଜୀବନ ମଣ୍ଡଳର ପରିଚାଳନା ଦାୟିତ୍ୱ ନେଲେ। ଅଳ୍ପଦିନ ପରେ ମଣ୍ଡଳର ମୁଖ୍ୟ ପରିଚାଳନା ଦାୟିତ୍ୱ ସ୍ୱର୍ଗୀୟ ମାଳତୀ ଦେବୀଙ୍କ ଉପରେ ନ୍ୟସ୍ତ କରାଗଲା। ସେ ଥିଲେ ମଣ୍ଡଳର ପ୍ରାଣକେନ୍ଦ୍ର। ଏତେ ବଡ଼ ଅନୁଷ୍ଠାନକୁ ବ୍ୟବସ୍ଥିତ କରି ପରିଚାଳନାରେ ତାଙ୍କୁ ସାହାଯ୍ୟ କରିବାପାଇଁ ବାପି ଓ ନୁମା (ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ଚୌଧୁରୀ) ଜୟୀଭାଇଙ୍କୁ ରାଜନୀତି କ୍ଷେତ୍ରରୁ ସେବାକ୍ଷେତ୍ରକୁ ଟାଣି ଆଣିଥିଲେ। ନୁମାଙ୍କର ଗରିବ, ଅବହେଳିତ ଆଦିବାସୀ ଓ ଦଳିତମାନଙ୍କ ପାଇଁ ଯେପରି ଦରଦ ଥିଲା ତାର ପ୍ରତିଫଳନ ଜୟୀଭାଇଙ୍କ ଉପରେ ପଡ଼ିଥିଲା।

ଯେହେତୁ ସେ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି ଦାରିଦ୍ର୍ୟର କଷାଘାତକୁ ଅଙ୍ଗେ ନିଭାଇଥିଲେ ତେଣୁ ଗରିବ ଓ ଅବହେଳିତଙ୍କ ପ୍ରତି ସାରାଜୀବନ ତାଙ୍କର ଦରଦ ଓ ସହାନୁଭୂତିରେ ପରିପୂର୍ଣ୍ଣ ଥିଲା ଓ ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ଭାବେ ହେଉ ସମାଜର ତଳେ ପଡ଼ିଥିବା ସବୁ ବର୍ଗର ଲୋକଙ୍କ ସେବାରେ ସେ ଯଥାଶକ୍ତି ନିଜକୁ ନିୟୋଜିତ କରିଥିଲେ। ଅନେକ ବର୍ଷ ଧରି ସେ ନୁମା ଓ ବାପିଙ୍କ ସହିତ ଏକତ୍ର ବିତାଇଥିବାରୁ ଜୟୀଭାଇଙ୍କ ଉପରେ ସେମାନଙ୍କର ଯଥେଷ୍ଟ ପ୍ରଭାବ ପଡ଼ିଥିଲା।

ଉତ୍କଳ ନବଜୀବନ ମଣ୍ଡଳରେ ଜୟୀଭାଇ ନିମ୍ନକ୍ରମରେ ପଦପଦବୀରେ ଥାଇ ମଣ୍ଡଳ ଓ ମଣ୍ଡଳ ପରିଚାଳିତ ସେବାକ୍ଷେତ୍ର ଅଧିବାସୀଙ୍କର ଅନେକ ସେବା କରିଯାଇଛନ୍ତି :

- ୧୯୫୮ ମାର୍ଚ୍ଚ ୧୯ ତାରିଖ ଠାରୁ ୧୯୬୧ ଅପ୍ରେଲ ପର୍ଯ୍ୟନ୍ତ ସହ ସମ୍ପାଦକ ରୂପେ ଦାୟିତ୍ୱ ଗ୍ରହଣ।
- ୧୯୬୧ ମଇ ଠାରୁ ୧୯୬୨ ଅପ୍ରେଲ ପର୍ଯ୍ୟନ୍ତ ସମ୍ପାଦକ ପଦବୀରେ ଅଧିଷ୍ଠିତ।
- ୨୩.୦୭.୧୯୬୮ ରୁ ୨୭.୦୧.୭୪ ପର୍ଯ୍ୟନ୍ତ ଏବଂ ପୁନଃ ୨.୫.୭୬ରୁ ୩୧.୦୧.୮୫ ପର୍ଯ୍ୟନ୍ତ କୋଷାଧକ୍ଷ ରୂପେ ଦାୟିତ୍ୱ ସମ୍ପାଦନ।
- ତା ୨୨.୦୨.୧୯୮୭ରୁ ମଣ୍ଡଳ ତରଫରୁ "ନୁମାଙ୍କୁ ଥଳି ଭେଟି" ପାଣ୍ଠି ସଂଗ୍ରହର ସଂଯୋଜକ ଭାବେ ପାଣ୍ଠି ଗ୍ରହଣରେ ପ୍ରମୁଖ ଭୂମିକା ଗ୍ରହଣ।
- ୧୯୮୧ ରୁ ୧୦.୦୨.୮୮ ପର୍ଯ୍ୟନ୍ତ ମଣ୍ଡଳର ସଭାପତି ଆସନ ଅଳଙ୍କୃତ।
- ତା ୨୩.୦୯.୧୯୮୮ରୁ "ମାଳତୀ ଦେବୀ ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ" ଗଠନ ଏବଂ ଟ୍ରଷ୍ଟ ଗଠନ ପରେ ତାର ସଂଯୋଜକ ଦାୟିତ୍ୱ ଗ୍ରହଣ।
- ତା ୧୩.୦୨.୯୦ରୁ ୧୫.୦୪.୯୦ ପର୍ଯ୍ୟନ୍ତ ସେ ମଣ୍ଡଳର ଏକ ଅସ୍ୱାଭାବିକ ପରିସ୍ଥିତି ବେଳେ ସାଧାରଣ ସମ୍ପାଦକ ଦାୟିତ୍ୱ ଗ୍ରହଣ କରି ମଣ୍ଡଳକୁ ବିଶେଷ ସାହାଯ୍ୟ କରି ପାରିଥିଲେ।

ଉତ୍କଳ ନବଜୀବନ ମଣ୍ଡଳ ଇତିହାସରେ ଏକ ବିଶେଷ ଘଟଣା ହେଉଛି ଯେ ସେ ହିଁ ଏକମାତ୍ର ବ୍ୟକ୍ତି ଯେ କି ୧୯୫୮ରେ ମଣ୍ଡଳରେ ଯୋଗ ଦେବା ଦିନରୁ ତାଙ୍କର ଅନ୍ତିମ ଦିନ ପର୍ଯ୍ୟନ୍ତ ନିରବିଚ୍ଛିନ୍ନ ଭାବରେ ମଣ୍ଡଳର "କାର୍ଯ୍ୟକାରୀ-ସମିତି-ସଦସ୍ୟ" ରୂପେ (ପ୍ରତ୍ୟେକ ଥର ସାଧାରଣ ଅଧିବେଶନ ବେଳେ

ସର୍ବସମ୍ମତ ପ୍ରସ୍ତାବ କ୍ରମେ ସେ କାର୍ଯ୍ୟକାରୀ ସମିତି ସଦସ୍ୟ ଭାବେ ନିର୍ବାଚିତ ହେଉଥିଲେ) ଦାୟିତ୍ୱ ତୁଲାଇ ଆସୁଥିଲେ। ମାଳତୀ ଦେବୀଙ୍କ ପରେ ସେ ହେଉଛନ୍ତି ଦ୍ୱିତୀୟ ବ୍ୟକ୍ତି ଯେ କି ମଣ୍ଡଳର ଜଣେ ସଫଳ କର୍ଣ୍ଣଧାର ଥିଲେ। କର୍ମୀମାନଙ୍କର କୌଣସି ଗୁରୁତର ତ୍ରୁଟୀ ବିଚ୍ୟୁତିକୁ ସେ ସହ୍ୟ କରି ପାରୁନଥିଲେ। ଏଭଳି କ୍ଷେତ୍ରରେ କୌଣସି ବ୍ୟକ୍ତି ତାଙ୍କର ଅତିପ୍ରିୟ ହୋଇଥିଲେ ମଧ ସେ ଦୃଢ଼ କାର୍ଯ୍ୟାନୁଷ୍ଠାନ ନେବାପାଇଁ କୁଣ୍ଠିତ ହେଉନଥିଲେ। ସେହିପରି ସାଧାରଣ ଭୁଲ୍‌ଭଟକାକୁ ସଂଶୋଧନ କରିବା ପାଇଁ ସୁଯୋଗ ବି ଦେଉଥିଲେ। ଏସବୁ ଭିତରେ କର୍ମୀମାନଙ୍କ ପ୍ରତି ତାଙ୍କର ସ୍ନେହ ଓ ଭଲପାଇବା ଊଣା ନଥିଲା।

ଜୟୀଭାଇଙ୍କ ଜୀବନରେ ସ୍ୱାଧୀନତା ସଂଗ୍ରାମ, ରାଜନୀତି କ୍ଷେତ୍ରରେ ସଫଳ ବିଧାୟକ, ସେବାକ୍ଷେତ୍ରରେ ଉତ୍କଳ ନବଜୀବନ ମଣ୍ଡଳ, ଉତ୍କଳ ସର୍ବୋଦୟ ମଣ୍ଡଳ, ଗାନ୍ଧି ସ୍ମାରକନିଧି ଓ ଉତ୍କଳ ଖଦୀମଣ୍ଡଳ ଆଦିର ପରିଚାଳନାରେ ଅଂଶଗ୍ରହଣ ଓ ସମୁଚିତ୍ ମାର୍ଗଦର୍ଶନ, ଓଡ଼ିଶା ଖଦୀ ଗ୍ରାମୋଦ୍ୟୋଗ ବୋର୍ଡର ସଭାପତି ଦାୟିତ୍ୱ ଗ୍ରହଣ କରି ଖଦୀ ଗ୍ରାମୋଦ୍ୟଗର ପ୍ରସାର ଦିଗରେ ପ୍ରଚେଷ୍ଟା, ଏବଂ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସମ୍ପାଦକ ଓ ପ୍ରଶାସକ ରୂପେ ତାଙ୍କର ଅବଦାନ ସ୍ମରଣୀୟ ହୋଇ ରହିବ। "ମାଳତୀ ଦେବୀ - ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ" ପାଇଁ ତାଙ୍କର ଅବଦାନ ମଧ କିଛି କମ୍ ନୁହେଁ। "ମାଳତୀ ଦେବୀଙ୍କୁ ଥଳି ଭେଟି" ଦେବାପାଇଁ ପାଣ୍ଠି ସଂଗ୍ରହ ଠାରୁ ଆରମ୍ଭ କରି ମାଳତୀ ଦେବୀଙ୍କୁ ମିଳିଥିବା ଥଳି ଭେଟି ପାଣ୍ଠି ଓ ଜମୁନାଲାଲ୍ ବଜାଜ୍ ପୁରସ୍କାରକୁ ମିଶାଇ "ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ"ର ସଭାପତି ରହିବାର କେତେମାସ ପରେ ସୁନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସଙ୍କୁ ଟ୍ରଷ୍ଟର ସଭାପତି କରାଇ ସେହିଦିନ ଟ୍ରଷ୍ଟ ବୈଠକରେ ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚିତ ହୋଇ ସେ ଟ୍ରଷ୍ଟର ସମ୍ପାଦକ ଭାବେ ଅତି ନିଷ୍ଠା ଓ ନିପୁଣତା ସହ ୧୯୯୦ରୁ ୨୦୦୫ ମସିହା ସୁଦ୍ଧା ଦୀର୍ଘ ଷୋହଳ ବର୍ଷ ପର୍ଯ୍ୟନ୍ତ ଟ୍ରଷ୍ଟର ପରିଚାଳନା କରିଥିଲେ। ଟ୍ରଷ୍ଟ ଆରମ୍ଭରେ ପ୍ରାୟ ଦୁଇ ଲକ୍ଷ ଏଗାର ହଜାର ଟଙ୍କାର ପାଣ୍ଠିକୁ ତାଙ୍କର କାର୍ଯ୍ୟକାଳ ମଧରେ ପ୍ରାୟ ଦଶ ଲକ୍ଷ ଟଙ୍କାକୁ ପହଞ୍ଚାଇବାରେ ତାଙ୍କର ସଫଳ ପରିଚାଳନା ଓ ଅକ୍ଳାନ୍ତ ପରିଶ୍ରମର ପରିଣତି ବୋଲି ସୂଚାଇଥାଏ।

ଆଡ଼ମ୍ବର ଓ ଅହଂକାର ଶୂନ୍ୟ ଜୟୀଭାଇଙ୍କ ପାରିବାରିକ ଜୀବନ ମଧ ଆଦର୍ଶ ସ୍ଥାନୀୟ। ମିତବ୍ୟୟୀ ଓ ସ୍ୱାବଲମ୍ବୀ ହେବାରେ ସେ ନିଜେ ଓ ସାରା ପରିବାରକୁ ଏକ ଆଦର୍ଶ ଢ଼ାଞ୍ଚାରେ ଗଢ଼ିପାରିଥିଲେ। ତାଙ୍କ ସହଧର୍ମିଣୀ ସ୍ୱର୍ଗୀୟା କିରଣଲେଖା ମହାନ୍ତିଙ୍କୁ ଜଣେ ଉତ୍ତମ ଜୀବନସାଥୀ ରୂପେ ସେ ପାଇଥିଲେ। କିରଣ ଦେବୀ ମଧ ଜଣେ ସ୍ୱାଧୀନତା ସଂଗ୍ରାମୀ, କୁଶଳ ସଂସ୍ଥା ପରିଚାଳିକା, ସାହସୀ ରାଜନୀତିଜ୍ଞ ଓ ସୁଗୃହିଣୀ ଥିଲେ। ପରିବାରର ଦୁର୍ଦ୍ଦିନରେ, ଅଭାବ ଅନଟନ ବେଳେ ଓ ୧୯୭୫ରେ ଦେଶରେ ଜରୁରୀକାଳୀନ ପରିସ୍ଥିତିରେ, ଜୟୀଭାଇ ଜେଲ୍‌ବରଣ କରିଥିବା ସମୟରେ ତାଙ୍କ ପରିବାର ଯେପରି ମିତବ୍ୟୟୀ ଓ ସ୍ୱାବଲମ୍ବନଶୀଳ ହୋଇ ପରିବାର ଚଳାଇଥିଲେ ତାର ପଟାନ୍ତର ନାହିଁ। କୌଣସି ଅସ୍ୱଭାବିକ ପରିସ୍ଥିତିରେ ନିରାଶ ନହୋଇ ବାଟ ଖୋଜି ସ୍ୱାଭିମାନର ସହ ସେମାନଙ୍କର ପରିବାର ଚଳାଇବାର କଳା ଅନ୍ୟମାନଙ୍କ ପାଇଁ ଏକ ଉଦାହରଣ। ତାଙ୍କର ପୁତ୍ର ଓ କନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ୍ ଦେଇ ନିଜ ଆଦର୍ଶରେ ସୁଯୋଗ୍ୟ ସନ୍ତାନ ରୂପେ ଗଢ଼ିପାରିଥିଲେ।

ଜୟୀଭାଇ ଏକ ବିରଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ। ସେ ମୋର ଚିର ନମସ୍ୟ।

# ଜନନେତା ଜୟୀଭାଇ

**ଅନାଦୀ ନାୟକ**

ଗତବର୍ଷ ଅଗଷ୍ଟ ୧୫ ତାରିଖରେ ଓଡ଼ିଶାର ଜଣେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ତଥା ଜନନେତା ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କ ମୃତ୍ୟୁ ଖବର ମୁଁ ଏଠି ପାଇ ଅତ୍ୟନ୍ତ ମର୍ମାହତ ହେଲି। ମୃତ୍ୟୁ ବେଳକୁ ତାଙ୍କର ପୁତ୍ର ଡାକ୍ତର ତପନ ଚାକିରିରୁ ଅବସର ନେଇ ନିଜ ପରିବାର ସହ ପାଖରେ ରହୁଥିଲେ। ଜୟୀଭାଇଙ୍କ ମୃତ୍ୟୁରେ ଓଡ଼ିଶାର ରାଜନୈତିକ ଇତିହାସର ଏକ ସ୍ୱତନ୍ତ୍ର ଅଧ୍ୟାୟର ଅବସାନ ଘଟିଲା।

ପୁରୀରେ ହାଇସ୍କୁଲ ଛାତ୍ର ଥିବାବେଳେ ଜୟକୃଷ୍ଣ କେତେକ ସରକାର ବିରୋଧୀ ଛାତ୍ର ସଙ୍ଗଠନରେ ଯୋଗ ଦେଇଥିଲେ। ବ୍ରିଟିଶ ସରକାରଙ୍କ ବିରୋଧରେ ଲୁଚା ଚୋରାରେ ଲିଫ୍‌ଲେଟ୍ ବାଣ୍ଟିବା କାର୍ଯ୍ୟରେ ସେ ସମ୍ପୃକ୍ତ ଥିଲେ। ସେତେବେଳେ ଓଡ଼ିଶା କଂଗ୍ରେସର ସଭାପତି ଥିଲେ ପଣ୍ଡିତ ନୀଳକଣ୍ଠ ଦାଶ ଓ ନବକୃଷ୍ଣ ଚୌଧୁରୀ ଥିଲେ ସାଧାରଣ ସମ୍ପାଦକ। ମାଟ୍ରିକ ପରୀକ୍ଷାରେ କୃତୀତ୍ୱ ହାସଲ କରି ତରୁଣ ଜୟକୃଷ୍ଣ ଓଡ଼ିଶାର ଏକମାତ୍ର କଲେଜ ରେଭେନ୍ସା ମହାବିଦ୍ୟାଳୟରେ ଉଚ୍ଚଶିକ୍ଷା ପାଇଁ ନାମ ଲେଖାଇଲେ। ସେ ଏକ ଦରିଦ୍ର ପରିବାରରୁ ଆସିଥିଲେ। ତେଣୁ ବିଭିନ୍ନ ଘାତ ପ୍ରତିଘାତ ଭିତରେ ଦୁଇବର୍ଷ ସେଠାରେ ଅଧ୍ୟୟନ ପରେ ସେ ବାଧ୍ୟ ହୋଇ ପାଠ ପଢ଼ାରେ ଡ଼ୋର ବାନ୍ଧିଲେ। ହେଲେ ପ୍ରବଳ ଜ୍ଞାନଲିପସା ତାଙ୍କ ଦାରିଦ୍ର ନିକଟରେ ହାର ମାନିଲା। ସେ ପୁଣି ବର୍ଷେ ପରେ ସେହି କଲେଜରେ ଅଧ୍ୟୟନ ପାଇଁ କଟକ ଆସିଲେ।

ଯୋଗକୁ ନବକୃଷ୍ଣ ଚୌଧୁରୀ ତାଙ୍କର ପୁତ୍ର ବିନାୟକ ପାଇଁ ଜଣେ ଗୃହଶିକ୍ଷକର ସନ୍ଧାନରେ ଥିଲେ। ନବବାବୁ ମେଧାବୀ ଜୟକୃଷ୍ଣଙ୍କ ବିଷୟ ଶୁଣିଥିଲେ। ସେ ତାଙ୍କର ବାଖରାବାଦସ୍ଥ ବାସଭବନରେ ରହି ଘରୋଇ ଶିକ୍ଷକ ଭାବେ ପୁତ୍ର ବିନାୟକର ପାଠପଢ଼ା ଦାୟିତ୍ୱ ନେବାକୁ ଜୟକୃଷ୍ଣଙ୍କୁ ନିମନ୍ତ୍ରଣ କଲେ। ନବବାବୁଙ୍କ ବୁଢ଼ୀମା ସେତେବେଳେ ତାଙ୍କ ପାଖରେ ଥାଆନ୍ତି। ସେ ବଡ଼ ଚିଡ଼ିଚିଡ଼ା ସ୍ୱଭାବର ଏବଂ ତାଙ୍କ ପାଖରେ ଚଳିବା କଷ୍ଟକର ଥିଲା। ବୋଉର ରୁକ୍ଷ ବ୍ୟବହାରକୁ ମନକୁ ନ ନେବା ପାଇଁ ସେ ଆରମ୍ଭରୁ ଜୟକୃଷ୍ଣଙ୍କୁ ସୂଚାଇ ଦେଇଥିଲେ। ବୁଢ଼ୀମାଙ୍କର ନିଜ ଭାଇ ନା ଜୟୀ। ଅତି ଅଳ୍ପଦିନ ମଧ୍ୟରେ ଜୟକୃଷ୍ଣ (ଡାକ ନାଁ ଜୟୀ) ବୁଢ଼ୀମାଙ୍କର ଅତିପ୍ରିୟ ହୋଇ ପାରିଲେ। ନବକୃଷ୍ଣ ଚୌଧୁରୀଙ୍କୁ ପିଲା ବଡ଼ ସମସ୍ତେ 'ବାପୀ' ଓ ମାଳତୀ ଦେବୀଙ୍କୁ 'ନୁମା' ବୋଲି ସମ୍ବୋଧନ କରୁଥିଲେ। ତରୁଣ ଜୟକୃଷ୍ଣଙ୍କ ପାଇଁ ମଧ୍ୟ ସେ ଦୁହେଁ ବାପୀ ଓ ନୁମା ଭାବେ ପରିଗଣିତ ହେଲେ। ସେହି ଦିନଠାରୁ ଜୀବନର ଶେଷ ପର୍ଯ୍ୟନ୍ତ ଚୌଧୁରୀ ପରିବାର ସହ ସେ ଘରୋଇ ତଥା ସର୍ବ ସାଧାରଣ କ୍ଷେତ୍ରରେ ଖୁବ୍ ନିବିଡ଼ ହୋଇ ଯାଇଥିଲେ।

୧୯୪୨ ମସିହାରେ ଜୟକୃଷ୍ଣ ମହାନ୍ତି "ଭାରତ ଛାଡ଼" ଆନ୍ଦୋଳନରେ ଯୋଗ ଦେଲେ ଏବଂ ପରିବର୍ତ୍ତୀ ସମୟରେ କାରାବରଣ କରିଥିଲେ। ଭାରତର ମୁକ୍ତି ସଂଗ୍ରାମରେ ଅଂଶ ଗ୍ରହଣ କରି କାରାବରଣ କରିଥିବା

ଅନେକ ନେତୃସ୍ଥାନୀୟ ଲୋକଙ୍କ ସହ ଜୟକୃଷ୍ଣ ବହୁଦିନ ଧରି ସଂସ୍ପର୍ଶରେ ଆସିଲେ। ପ୍ରାରମ୍ଭିକ ଅବସ୍ଥାରେ ପୁରୀ ଜେଲ୍‌ରେ ଏବଂ ପରବର୍ତ୍ତୀ ଅବସ୍ଥାରେ ବ୍ରହ୍ମପୁର ସେଣ୍ଟ୍ରାଲ ଜେଲ୍‌ରେ ସର୍ବଶ୍ରୀ ପଦ୍ମଚରଣ ସାମନ୍ତସିଂହାର, ଫକିର ମିଶ୍ର, ଉପେନ୍ଦ୍ର ମହାନ୍ତି, ଭବାନୀ ଚରଣ ପଟ୍ଟନାୟକ ଏବଂ ନୃସିଂହ ସାମନ୍ତସିଂହାର ପ୍ରମୁଖ ଅନେକଙ୍କ ସହ ତାଙ୍କର ପ୍ରଗାଢ଼ ବନ୍ଧୁତ୍ୱ ସୃଷ୍ଟି ହେଲା। ସ୍ୱାଧୀନତା ପରେ ଜୟକୃଷ୍ଣ ମହାନ୍ତି ନିମାପଡ଼ା, କାକଟପୁର ଓ ତେଲାଙ୍ଗ ନିର୍ବାଚନ ମଣ୍ଡଳୀରୁ ୧୦ ବର୍ଷ ପାଇଁ ବିଧାୟକ ନିର୍ବାଚିତ ହେଲେ। ସେ କଂଗ୍ରେସ ଦଳର ଚିଫ୍ ହ୍ୱିପ୍ ନିର୍ବାଚିତ ହୋଇଥିଲେ। ପ୍ରଥମେ ରାଜସ୍ୱ ମନ୍ତ୍ରୀ ଏବଂ ପରେ ମୁଖ୍ୟମନ୍ତ୍ରୀ ହୋଇଥିବା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶା ଭାଗଚାଷୀ ଆଇନ୍ ପାସ୍ ହେଲା। କଂଗ୍ରେସ ଦଳ ମଧ୍ୟରେ ଏ ବିଲ୍‌ର ପ୍ରବଳ ବିରୋଧ ହେଲା। ତଦାନ୍ତିତ ବିରୋଧୀ ଦଳ ନେତା ପଣ୍ଡିତ ଗୋଦାବରିଶ ମିଶ୍ର ଓ ଜୟକୃଷ୍ଣ ମହାନ୍ତିଙ୍କ ମିଳିତ ଉଦ୍ୟମରେ କଂଗ୍ରେସ ଦଳର ଅନେକ ପ୍ରଗତିଶୀଳ ଯୁବ ନେତା, ପ୍ରଜା ସୋସାଲିଷ୍ଟ ପାର୍ଟି ଓ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସଭ୍ୟଙ୍କ ସହ ମିଶି ବିଧାନସଭାରେ ଏ ବିଲ୍ ପାସ୍ ହୋଇ ପାରିଥିଲା। ବହୁଦିନରୁ ଜମି ଚାଷ କରୁଥିବା ଭାଗଚାଷୀମାନେ ଫସଲ ଉପରେ ନ୍ୟାଯ୍ୟ ଅଧିକାର ଲାଭ କଲେ।

ଜୟକୃଷ୍ଣ ମହାନ୍ତି ଚୌଧୁରୀ ପରିବାରର ଅତ୍ୟନ୍ତ ଘନିଷ୍ଠ ଥିଲେ। ତେଣୁ ନବକୃଷ୍ଣ ଚୌଧୁରୀଙ୍କ ଉତ୍ତରାଧିକାରୀ ଭାବେ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିବା ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ ବିଶ୍ୱାସକୁ ନେଉନଥିଲେ। ହେଲେ ଏହାର ଦୁଇ ବର୍ଷ ପୂର୍ବରୁ ଜୟକୃଷ୍ଣ ମହାନ୍ତି ଓ ତାଙ୍କ ବନ୍ଧୁ ବନମାଳୀ ପଟ୍ଟନାୟକ ମହତାବ ବାବୁଙ୍କୁ ବୁଝାଇ କହିଥିଲେ ଯେ ନବବାବୁ ନିଜର ପରମ ବନ୍ଧୁ ତଥା ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହୁରୁଙ୍କୁ ରାଜି କରାଇ ମହତାବଙ୍କ ପାଇଁ ଠିକ୍ କରିଥିବା ଏକ ବିଶେଷ ଦାୟିତ୍ୱ ମହତାବ ବାବୁ ନିଅନ୍ତୁ। କାରଣ ସେତେବେଳେ ମହତାବ ବାବୁ ପଦପଦବୀ ପାଇଁ ଅତ୍ୟନ୍ତ ବ୍ୟାକୁଳ ଥିଲେ ଓ ସେ ରାଜନୈତିକ ଅନିଶ୍ଚିତତା ମଧ୍ୟରେ ସମୟ କାଟୁଥିଲେ।

ଜୟକୃଷ୍ଣ ମହାନ୍ତି କିରଣବାଲା ରାୟଙ୍କ ସହ ବିବାହ ବନ୍ଧନରେ ବାନ୍ଧି ହେଲେ। କିରଣଦେବୀଙ୍କ ପିତା ବୈଦ୍ୟନାଥ ରାୟ ପ୍ୟାରୀମୋହନ ଏକାଡେମୀରେ ନବକୃଷ୍ଣ ଚୌଧୁରୀଙ୍କ ସ୍କୁଲ ସାଥୀ ଥିଲେ। କିରଣ ଅପା ମଧ୍ୟ ରମାଦେବୀ ଓ ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ ବରୀ ଆଶ୍ରମର ଅନ୍ତେବାସିନୀ ଥିଲେ। ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରି ୧୯୪୨ ମସିହାରେ କାରାରୁଦ୍ଧ ହୋଇଥିଲେ। ଜେଲ୍‌ରୁ ଖଲାସ ହେବା ପରେ କିରଣ ଅପା ଅନୁଗୁଳ ଠାରେ ବାଜିରାଉତ ଛାତ୍ରାବାସ ପ୍ରତିଷ୍ଠା ପାଇଁ ମାଳତୀ ଦେବୀ କରୁଥିବା ଉଦ୍ୟମରେ ସକ୍ରୀୟ ଅଂଶୀଦାର ହେଲେ ଏବଂ ପରବର୍ତ୍ତୀ ଅବସ୍ଥାରେ ନବବାବୁ ଓ ମାଳତୀ ଦେବୀଙ୍କ ତୃତୀୟ କନ୍ୟା ଭାବେ ପରିଗଣିତ ହେଲେ। କିରଣ ଅପାଙ୍କ ସହ ଜୟୀଭାଇଙ୍କ ବୈବାହିକ ବନ୍ଧନ, ଏ ପରିବାର ସହ ସେ ଦୁହିଁଙ୍କ ସମ୍ପର୍କକୁ ଆହୁରି ଦୃଢ଼ ଓ ଟାଣୁଆ କରି ପାରିଲା।

୧୯୭୦ ଦଶକର ମଧ୍ୟଭାଗରେ ଇନ୍ଦିରା ଗାନ୍ଧୀଙ୍କ ସ୍ୱେଚ୍ଛାଚାର ଶାସନ ସମୟରେ ଘୋଷିତ ଜରୁରୀକାଳୀନ ପରିସ୍ଥିତିର ବିରୁଦ୍ଧାଚରଣ କରି ଜୟୀଭାଇ ସ୍ୱାଧୀନ ଭାରତରେ ମଧ୍ୟ ପୁନର୍ବାର କାରାବରଣ କଲେ। ଜରୁରୀକାଳୀନ ପରିସ୍ଥିତିର ପରବର୍ତ୍ତୀ ନିର୍ବାଚନରେ କିରଣ ଅପା ପିପିଲି ତେଲାଙ୍ଗ ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତା ହେଲେ।

ଉଭୟ ଜୟୀଭାଇ ଓ କିରଣଅପା ବାଜିରାଉତ ଛାତ୍ରାବାସ, ନବଜୀବନ ମଣ୍ଡଳ, କସ୍ତୁରବା ଟ୍ରଷ୍ଟ ଏବଂ

ଗାନ୍ଧି ସ୍ମାରକନିଧି ପ୍ରଭୃତି ଅନେକ ଅନୁଷ୍ଠାନ ସହ ଜୀବନର ଶେଷଭାଗ ଯାଏ ସଂଶ୍ଳିଷ୍ଟ ଥିଲେ। ବାତ୍ୟା, ବନ୍ୟା ଓ ମରୁଡ଼ି ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟରେ ଉଭୟ ଦମ୍ପତ୍ତି କ୍ଷତିଗ୍ରସ୍ତ ଅଞ୍ଚଳରେ ପହଞ୍ଚି ସହାୟତା ଓ ଥଇଥାନ କାର୍ଯ୍ୟରେ ଲିପ୍ତ ରହୁଥିଲେ।

କିରଣ ଅପାଙ୍କ ମୃତ୍ୟୁପରେ ଜୟୀଭାଇ ପ୍ରାୟତଃ ଭୁବନେଶ୍ୱରରେ ରହୁଥିଲେ। ସେ ବିଗତ ବର୍ଷମାନଙ୍କରେ ଓଡ଼ିଶାର ଖଦୀ ଗ୍ରାମୋଦ୍ୟୋଗ ବୋର୍ଡର ଅଧ୍ୟକ୍ଷ, ନବଜୀବନ ମଣ୍ଡଳର ସଭାପତି ତଥା ରାଜ୍ୟର ଅନେକ ଅନୁଷ୍ଠାନର କର୍ମକର୍ତ୍ତା ରହି ସେ ସମସ୍ତ ଅନୁଷ୍ଠାନମାନଙ୍କୁ ଦିଗ୍‌ଦର୍ଶନ ଦେଇ ଆସୁଥିଲେ। ଆଜୀବନ ଜଣେ ନିରଳସ କର୍ମୀ ଭାବେ ସେ ଖୁବ୍ ସାଧାସିଧା ଓ ନିରାଡ଼ମ୍ବର ଜୀବନ ବିତାଇ ଥିଲେ। ତାଙ୍କର ବିୟୋଗ ଅପୂରଣୀୟ। ଯୁକ୍ତରାଷ୍ଟ୍ର ଆମେରିକାରୁ ମୁଁ ଓ ମୋର ପତ୍ନୀ କାରୋଲ ସହ ମିଶି ଆମେ ଦୁହେଁ ତପନ, ଡଲି, ଗୌରି, ସୋମା ଏବଂ ସେମାନଙ୍କ ପରିବାରର ସମସ୍ତ ସଦସ୍ୟମାନଙ୍କୁ ସମବେଦନା ଜଣାଉଛୁ।

ଯୁକ୍ତରାଷ୍ଟ୍ର, ଆମେରିକା

●●

**ବିଶେଷ କରି ଛୁଆଁ ଅଛୁଆଁ ଆମକୁ ବହୁତ ପରିମାଣରେ ପଛକୁ ଟାଣୁଛି, ଏକଥା ଉପରେ ବିଶେଷ ଜୋର ଦେଇ ତାହାର ମୂଳରେ ଖୁବ୍ ଜୋରରେ ଆଘାତ କରି ସମାଜ ଭିତରେ ଏ ଅମୂଳକ, ଅପବିତ୍ର କଥାର ଚେର ଯେତେଦୂର ଯାଏଁ ମାଡ଼ି ବସିଛି ତାକୁ ଖଣ୍ଡ ଖଣ୍ଡ କରି କାଟି ଦେବାକୁ ପଡ଼ିବ। ଏଥିପାଇଁ ସ୍ତ୍ରୀ ଶିକ୍ଷା ଅତ୍ୟନ୍ତ ଆବଶ୍ୟକ। ମା କୋଳରେ ଯେଉଁ ମଣିଷ ବଢ଼ୁଛି, ମା ଅଶିକ୍ଷିତ ହେଲେ ସେ ମଣିଷ ମଧ୍ୟ ଅଶିକ୍ଷିତ ହେବ।**

**- ମାଳତୀ ଦେବୀ**

# ମୁଁ ମୋର ବଡ଼ଭାଇଙ୍କୁ ହରାଇଲି

ଡ଼କ୍ଟର ରତନ ଦାସ

ଜୟୀଭାଇ ଓ କିରଣ ଅପାଙ୍କ ସହ ଆମ ପରିବାରର ସମ୍ପର୍କ ବହୁ ପୁରୁଣା। ଗତ କେତେ ବର୍ଷ ଧରି ତାଙ୍କ ସହ ଯୋଗାଯୋଗ କମି ଯାଇଥିଲେ ମଧ ଆମର ଆତ୍ମୀୟ ସମ୍ପର୍କ ଅତୁଟ ରହିଥିଲା। କିରଣ ଅପା ୧୯୯୭ ମସିହା ମେ ମାସରେ ମୃତ୍ୟୁବରଣ କଲାପରେ ଜୟୀଭାଇ ଭୁବନେଶ୍ୱରରେ ଅବସ୍ଥାନ କରି ବିଭିନ୍ନ ସମାଜ କଲ୍ୟାଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ।

ଜୟୀଭାଇ ଓ କିରଣ ଅପାଙ୍କ ଠାରୁ ବିଗତ ଦିନମାନଙ୍କରେ ଯେଉଁ ସ୍ନେହ, ସାହାଯ୍ୟ ଓ ସହଯୋଗ ପାଇଛି ତାହା ମୋର ସ୍ମୃତିରେ ଆଜି ମଧ ଜୀବନ୍ତ ହୋଇ ରହିଛି। ପୁରୀରେ ରହୁଥିବା ବେଳେ ତାଙ୍କର ଘର ହିଁ ଆମର ଆଶ୍ରୟସ୍ଥଳ ଥିଲା। ତାଙ୍କର ଅପାର ଗୁଣମାନଙ୍କ ମଧ୍ୟରୁ ପରୋପକାରୀତା, ଧୈର୍ଯ୍ୟ, ବିନୟଭାବ ଏବଂ ଅନ୍ୟ ଦୁଃଖରେ ଦୁଃଖୀ ହେବା ଆଦି ଗୁଣ ଗୁଡ଼ିକ ତାଙ୍କୁ ଜଣେ ନିଷ୍ଠାପର ସମାଜସେବୀ ଭାବେ ପ୍ରତିଷ୍ଠିତ କରି ପାରିଥିଲା। ନିଜର ଜୀବଦ୍ଦଶା ମଧ୍ୟରେ ବିଭିନ୍ନ ଗଠନମୂଳକ କାର୍ଯ୍ୟରେ ସମ୍ପୃକ୍ତ ରହି ଅତ୍ୟନ୍ତ ସଫଳତାର ସହ ସେ ସମସ୍ତ ସମାପନ କରିପାରିଥିଲେ। ଜଣେ ବିଧାୟକ ଭାବେ ରାଜ୍ୟ ବିଧାନ ସଭାରେ ବିଭିନ୍ନ ଯୁଗାନ୍ତକାରୀ ଆଇନ ପ୍ରଣୟନରେ ତାଙ୍କର ଭୂମିକାର ପଟାନ୍ତର ନାହିଁ। ରାଜ୍ୟ ଖଦୀ ଓ ଗ୍ରାମଦ୍ୟୋଗ ବୋର୍ଡର ସଭାପତି ଏବଂ ରାଜ୍ୟ ଭୂଦାନ ଯଜ୍ଞ ସମିତିର ପ୍ରଶାସକ ଭାବେ ତାଙ୍କ କାର୍ଯ୍ୟକାଳ ସମୟରେ ସେ ଅନେକ ପ୍ରଗତିଶୀଳ ପଦକ୍ଷେପ ନେଇ ଲୋକମାନଙ୍କର ପ୍ରଶଂସାଭାଜନ ହୋଇଥିଲେ। ରାଜ୍ୟରେ ସର୍ବୋଦୟ ଓ ଭୂଦାନ ଆନ୍ଦୋଳନରେ ସେ ସକ୍ରୀୟ ଅଂଶଗ୍ରହଣ କରି, ସମସ୍ତଙ୍କୁ ମାର୍ଗଦର୍ଶନ ଦେଉଥିଲେ। ନବଜୀବନ ମଣ୍ଡଳ, ଉତ୍କଳ ଖଦୀମଣ୍ଡଳ, ଗାନ୍ଧୀସ୍ମାରକ ନିଧି, ଅନ୍ୟାନ୍ୟ ସମଭାବାପନ୍ନ ଅନେକ ଅନୁଷ୍ଠାନ ସହ ସେ ଜୀବନର ଶେଷଯାଏଁ ସମ୍ପୃକ୍ତ ରହିଥିଲେ।

ତାଙ୍କର ବିଚ୍ଛେଦ ଅନେକ ଅନୁଷ୍ଠାନ ପାଇଁ ନିଶ୍ଚୟ ଦାରୁଣ କ୍ଷତି ପହଞ୍ଚାଇବ। ତାଙ୍କର ପରିବାରବର୍ଗଙ୍କୁ ମୁଁ ବା କ'ଣ ସାନ୍ତ୍ୱନା ଦେବି! ମୁଁ ତ ମୋର ଜଣେ ପ୍ରିୟ ବଡ଼ଭାଇଙ୍କୁ ହରାଇଲି। ମୁଁ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ଯେ ସେ ଆମ ସମସ୍ତଙ୍କୁ ଏହି ଦାରୁଣ ଶୋକ ସହିବାର ଶକ୍ତି ଦିଅନ୍ତୁ ଓ ତାଙ୍କର ଆଦର୍ଶରେ ଚାଲିବାକୁ ଆମକୁ ପ୍ରେରଣା ଦିଅନ୍ତୁ। ତାଙ୍କର ଅମର ଆତ୍ମା ପରମାତ୍ମାଙ୍କ ସହ ମିଶି ଅସଂଖ୍ୟ ଗୁଣଗ୍ରାହୀ ଓଡ଼ିଶାବାସୀଙ୍କୁ ସତ୍ ପଥରେ ଚାଲିବାକୁ ଆଶୀର୍ବାଦ କରୁଥାନ୍ତୁ।

ସେବାସମାଜ
ଗୁଣୁପୁର, ରାୟଗଡ଼ା

••

# ଜେଲରେ ଜୟୀଭାଇଙ୍କ ଦହିବାଇଗଣ ଖଟା

ଚିତ୍ତରଞ୍ଜନ ମହାନ୍ତି

୧୯୭୫ ମସିହା ଜୁନ୍ ୨୫ ତାରିଖ ମଧ୍ୟରାତ୍ରିରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ଦେଶରେ ଜରୁରୀସ୍ଥିତି ଜାରୀ ହେଲା । ରାଜନାରାୟଣଙ୍କ ଠାରୁ ନିର୍ବାଚନରେ ହାରି ଓ ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନକୁ ଡରି ଦେଶରେ ଏକଛତ୍ର ଶାସନ ଲାଗୁ କରିଥିଲେ ଶ୍ରୀମତୀ ଗାନ୍ଧୀ । ଓଡ଼ିଶାରେ ଜୟପ୍ରକାଶଙ୍କ ଘନିଷ୍ଠ ବନ୍ଧୁ ପୂର୍ବ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଜନ ଆନ୍ଦୋଳନର ନେତା ଥିଲେ । ତାଙ୍କର ଘନିଷ୍ଠ ସହଯୋଗୀ ପୂର୍ବତନ ବିଧାୟକ ଜୟକୃଷ୍ଣ ମହାନ୍ତି ଏହି ଆନ୍ଦୋଳନକୁ ଏକ ଆଦର୍ଶଗତ ସାଙ୍ଗଠନିକ ରୂପ ଦେଇଥିଲେ । ତେଣୁ ପ୍ରଥମେ ସେ ଗିରଫ ହୋଇ ପୁରୀ ଜେଲରେ କାରାବରଣ କରୁଥିବା ବେଳେ ମୁଁ ସେଠାରେ ପହଞ୍ଚିଲି ।

ଅଢ଼େଇ ମାସ ଭୂମିଗତ ଆନ୍ଦୋଳନ ଚଳାଇଲା ପରେ ବିଶେଷ କରି ବନ୍ଧୁ ୰ ସ୍ୱରାଜ ବିଶ୍ୱାଳ, ନିଖୋଜ ବିଜୟ ବେଉରା ପ୍ରମୁଖଙ୍କ ସହ ଯୋଗାଯୋଗ କରି ଭୁବନେଶ୍ୱର ଓ ପୁରୀ ଆନ୍ଦୋଳନକୁ ସକ୍ରୀୟ କରିବା ସମୟରେ ପୋଲିସ ହାତରେ ଧରାପଡ଼ି ପ୍ରଥମେ କଟକ ଜେଲ ଗଲି ଓ ଅଳ୍ପ ଦିନ ପରେ ପୁରୀ ଜେଲକୁ ସ୍ଥାନାନ୍ତରିତ ହେଲି । ସେଠି ଜୟୀଭାଇଙ୍କ ସହ ସାକ୍ଷାତ ହେଲା ।

ଜୟକୃଷ୍ଣ ମହାନ୍ତିଙ୍କୁ ସମସ୍ତେ ଜୟୀଭାଇ ଡାକୁଥିଲେ ତେଣୁ ମୁଁ ମଧ୍ୟ ସେଇ ସମ୍ବୋଧନ କଲି ଯଦିଓ ତାଙ୍କର ପୁଅ ଡାକ୍ତର ତପନ ମୋର କଲେଜ ବେଳରୁ ଘନିଷ୍ଠ ବନ୍ଧୁ । ଜୟୀଭାଇଙ୍କ ଉପସ୍ଥିତି ହିଁ ଜେଲ ଜୀବନକୁ ସରସ ସୁନ୍ଦର କରିଦେଲା । ସ୍ୱାଧୀନତା ପରେ ଓଡ଼ିଶାର ରାଜନୈତିକ ଇତିହାସରେ ସେ ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ ଥିଲେ । କିନ୍ତୁ ସେ ପ୍ରଚାରଧର୍ମୀ ହୋଇ ନଥିବାରୁ ନବବାବୁଙ୍କର ଅମଳର ପ୍ରଗତିଶୀଳ ଆଇନ୍ ପ୍ରଣୟନ କରାଇବାରେ ତାଙ୍କର ଭୂମିକା ଜନମାନସରେ ପ୍ରଘଟିତ ହୋଇନଥିଲା ।

ଜେଲରେ ଆମେ ଯେପରି ଶାରୀରିକ କି ମାନସିକ ଯନ୍ତ୍ରଣା ନ ଭୋଗୁ ମୁରବୀ ଭାବେ ଜୟୀଭାଇଙ୍କର ସେଦିଗରେ ବେଶ୍ ନିଘା ଥିଲା । ସେ ଚାହୁଁଥିଲେ ଆମର ଦେହ-ମନ ସୁସ୍ଥ ରହୁ । ସେଥିପାଇଁ ସେ ଆମକୁ କଉତୁକିଆ ଅନୁଭୂତି ସବୁ ଶୁଣାଇ ଆନନ୍ଦ ଦେଉଥିଲେ । ସାରା ଭାରତ କଥା କହିପାରିବି ନାହିଁ କିନ୍ତୁ ସମଗ୍ର ଓଡ଼ିଶାରେ ପୁରୀ ଜେଲରେ ମିଶାବନ୍ଦୀଙ୍କର ଖାଦ୍ୟପେୟ ଅତି ଉଚ୍ଚମାନର ଥିଲା । ତା'ର ଶ୍ରେୟ ଯିବ ଜୟୀଭାଇ ଓ ସେ ସମୟରେ ପୁରୀର ମେଡିସିନ୍ ସ୍ପେସିଆଲିଷ୍ଟ ଡ. ପ୍ରମୋଦ ଆଚାର୍ଯ୍ୟଙ୍କୁ । ଜଣେ ଆଇନ୍ ବତାଉଥିଲେ ଓ ଅନ୍ୟ ଜଣକ ଆଇନାନୁମୋଦିତ ଖାଦ୍ୟ ସୁପାରିଶ କରୁଥିଲେ । ଜୟୀଭାଇ ଆମମାନଙ୍କର ରୋଷାଇ କଥା ବୁଝୁଥିଲେ ଏପରିକି ନିଜେ ରାନ୍ଧୁଥିଲେ ମଧ୍ୟ । ତାଙ୍କ ପ୍ରସ୍ତୁତ ସ୍ୱାଦିଷ୍ଟ ବ୍ୟଞ୍ଜନମାନଙ୍କ ମଧ୍ୟରୁ ଦହିବାଇଗଣ ଖଟାର ସ୍ୱାଦ ଅଭୁଲା । ମୁଁ ଅଦ୍ୟାବଧି ଅସଂଖ୍ୟ ଭୋଜିରେ ଯୋଗଦେଇ ମଧ୍ୟ ସେ ସ୍ୱାଦ କେଉଁଠି ପାଇନାହିଁ । ସେ ବ୍ୟଞ୍ଜନ ସେ ସବୁଦିନ ପ୍ରସ୍ତୁତ କରୁନଥିଲେ । କହୁଥିଲେ - ଖାଦ୍ୟରେ ଏକରସଣ ସମାଜ ଏପରିକି ପରିବାରରେ ଏକରସଣ ପରି ବିରକ୍ତି

କର। ଆମେ (ମୁଁ, ମୀନକେତନ, ବୁଲୁ, ଅଜୟ ମିଶ୍ର, ଅତସୀ ସ୍ୱାଇଁ, ଅମର ଶତପଥୀ ପ୍ରମୁଖ) ଯେତେବେଳେ ପ୍ରଶ୍ନ କରୁ 'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ' କଥାଟା କ'ଣ ଭୁଲ। ସେ ଉତ୍ତର ଦିଅନ୍ତି ତାହା ଅତିଶୟୋକ୍ତି ହେଲେ ଭୁଲ। ଯେମିତିକି ଚିଲିକା ସୁନ୍ଦର ବୋଲି ତା କୂଳର କେଉଟ ସବୁ ସମୟରେ ଚିଲିକାର ସୌନ୍ଦର୍ଯ୍ୟକୁ ଚାହିଁ ନିକମା ହେଲେ ତା ସଂସାର ଭାସିଯିବ।

ନୀଳକଣ୍ଠ ଭଳି ନିଜ ଜୀବନରେ ବିଷ ପିଇ ସେ ଅନ୍ୟକୁ ସାହାଯ୍ୟ ଓ ସାନ୍ତ୍ୱନା ଦେବାରେ ଅନୁପମ। ସୁରନାୟକଙ୍କ ଜମି ଦଖଲ କରି ନେବାକୁ ସରକାରୀ ନୋଟିସ ହେଉ, ଶରତ ପାଇକରାୟଙ୍କୁ ଏକାନ୍ତରେ ରଖିବା ସମସ୍ୟା ହେଉ କିମ୍ବା ଅତସୀ ସ୍ୱାଇଁଙ୍କ ଦୁଷ୍ଟାମୀ ହେଉ ସବୁ କଥାରେ ସେ ସହବନ୍ଦୀଙ୍କୁ ବୁଝାଇ ଶୁଝାଇ ଶାନ୍ତ ଓ ସନ୍ତୁଷ୍ଟ କରାଇ ପାରୁଥିଲେ। ତାଙ୍କର ସ୍ନେହ ଏତେ ସଂକ୍ରମଣକାରୀ ଥିଲା ଯେ କେହି ତାଙ୍କର ସ୍ନେହ ଡୋରୀରେ ବାନ୍ଧି ହୋଇଯାଉଥିଲେ। ଦହିବାଇଗଣ ଖଟା ପରି ତାଙ୍କର ଆକଟ ଓ ସ୍ନେହ ଚମତ୍କାର ଏକ ସ୍ୱାଦ ଓ ଆନନ୍ଦ ଦେଉଥିଲା। ସେ ଚାଲିଗଲେ କିନ୍ତୁ ତାଙ୍କର ସ୍ୱଳ୍ପ ଦିନର ସାନିଧ୍ୟ ମୋ ପାଇଁ ଅପାଶୋରା ସ୍ମୃତି ହୋଇ ରହିଗଲା।

ଆଶାବରୀ, ସେକ୍ଟର-୧୧
କଟକ-୭୫୩୦୧୪

●●

ବର୍ତ୍ତମାନ ସ୍କୁଲ-କଲେଜମାନଙ୍କରେ ହଜାର ହଜାର ଝିଅ ପାଠ ପଢ଼ିଲେଣି। ପୁରୁଷ ପରି ନାରୀ ମଧ ଶିକ୍ଷିତ ନ ହେଲେ ରାଷ୍ଟ୍ର ପ୍ରତି ନିଜର କର୍ତ୍ତବ୍ୟବୋଧ ନାରୀ ମଧରେ ନ ଜନ୍ମିଲେ ଭାରତବାସୀ ଯେ ସାହସୀ ଓ କର୍ତ୍ତବ୍ୟପରାୟଣ ହୋଇପାରିବେ ନାହିଁ ତାହା ଲୋକେ କ୍ରମେ ଉପଲବ୍ଧି କଲେଣି। ମାତ୍ର ତଥାପି ଆହୁରି ଅନେକ ଆଗକୁ ଯିବା ବାକି ଅଛି। ସୁସ୍ଥ ଓ ସୁଖୀ ସମାଜ ଗଢ଼ିବା ପାଇଁ ମହିଳାମାନଙ୍କୁ ଆହୁରି ଅନେକ କାର୍ଯ୍ୟ କରିବାକୁ ହେବ। ଯୌତୁକ ପ୍ରଥା, ଜାତିଆଣଭାବ, ଧନୀ-ଦରିଦ୍ରଭେଦ, ଶରୀରଶ୍ରମ-ବିମୁଖତା ଆଦି ଅନେକ ଅବଗୁଣ ସମାଜରେ ପୁରି ରହିଛି। ଏସବୁ ଦୂର କରିବା ପାଇଁ ମହିଳାମାନଙ୍କୁ ପୁଣି ଥରେ ଅଣ୍ଟା ଭିଡ଼ି ବାହାରିବାକୁ ହେବ ବୋଲି ମୁଁ ସବୁବେଳେ ଅନୁଭବ କରୁଛି।

- ରମାଦେବୀ

# ସମ୍ବେଦନଶୀଳ, ଦରଦୀ ମଣିଷଟିଏ

**ଅରୁନ୍ଧତୀ ପାତ୍ର**

ସମାଜରେ ବହୁବ୍ୟକ୍ତି ସଫଳ ଜୀବନ ଜିଇଁଥାନ୍ତି। ଅର୍ଥରେ, ଯଶରେ, ପ୍ରତିପତ୍ତିରେ - ସେମାନେ ସମାଜରେ ଉଚ୍ଚସ୍ଥାନ ପାଇଥାନ୍ତି। କିନ୍ତୁ ଖୁବ୍ କମ୍ ଲୋକ ସାର୍ଥକ ଜୀବନ ବଞ୍ଚିବାରେ ସମର୍ଥ ହୁଅନ୍ତି। ସେମିତି ଗୋଟିଏ ସାର୍ଥକ ଜୀବନର ଅଧିକାରୀ ଥିଲେ ଆମର ଜୟୀ ବଡ଼ ବାପା, ସମସାମୟିକ ଅଧିକାଂଶଙ୍କର ଜୟୀଭାଇ - ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି।

ଭାରତ ସ୍ୱାଧୀନ ହେବା ପରେ ବହୁ ସଂଗ୍ରାମୀ କ୍ଷମତାର ରାଜନୀତିକୁ ହିଁ ଦେଶସେବା ବୋଲି ବିଚାର କରି ସେହି ରାସ୍ତାରେ ଗଲେ। ପରବର୍ତ୍ତୀ ଅବସ୍ଥାରେ ମଧ୍ୟ ସେହି ଲୋଭନୀୟ ପ୍ରାସାଦ ଏବଂ ରାଜରାସ୍ତାର ମୋହକୁ ଆଉ ଛାଡ଼ି ପାରିଲେ ନାହିଁ। ବଡ଼ବାପା କିନ୍ତୁ ରାଜନୀତିରେ ପ୍ରକୃତ ଜନସେବା କରିହେବ ନାହିଁ ବୋଲି ବୁଝି ପାରି ମାଳତୀ ଚୌଧୁରୀଙ୍କ ସାଥିରେ ଚରମ ଅବହେଳିତ ଆଦିବାସୀଙ୍କ ସେବାକ୍ଷେତ୍ରକୁ ହିଁ ଆପଣେଇ ନେଇଥିଲେ, ଯଦିଓ ସେ ଚାହିଁଥିଲେ କ୍ଷମତା ରାଜନୀତିର ଶୀର୍ଷରେ ରହିପାରିଥାନ୍ତେ। କାରଣ ସେତେବେଳର ପ୍ରଭୂତ କ୍ଷମତାଶାଳୀ ବିଜୁ ପଟ୍ଟନାୟକ ଥିଲେ ତାଙ୍କର ଅତ୍ୟନ୍ତ ପ୍ରିୟ ବନ୍ଧୁ। ଆଦିବାସୀମାନଙ୍କ ସେବା ନିମନ୍ତେ ନିଷ୍ଠାର ସହ କାମ କରୁଥିବା ମାଳତୀ ଚୌଧୁରୀଙ୍କ ନବଜୀବନ ମଣ୍ଡଳର ସଙ୍ଗଠନ, କାର୍ଯ୍ୟପ୍ରଣାଳୀ, ସୁଦକ୍ଷ ପରିଚାଳନା ଇତ୍ୟାଦିର ପଛରେ ଯେଉଁ ବିଚକ୍ଷଣ ବୁଦ୍ଧି କାମ କରୁଥିଲା - ତା ଥିଲା ଜୟୀ ବଡ଼ବାପାଙ୍କର। ଏମିତିରେ ଓଡ଼ିଶାର ସବୁ ସର୍ବୋଦୟ ସଂସ୍ଥା ଗୁଡ଼ିକର ଗଠନ ଏବଂ ପରିଚାଳନା କ୍ଷେତ୍ରରେ ତାଙ୍କର କିଛି ନା କିଛି ଅବଦାନ ରହିଥିଲା। ମାତ୍ର ନବଜୀବନ ମଣ୍ଡଳ ସଂସ୍ଥାରେ ସେ ନୁମାଙ୍କର ଡ଼ାହାଣ ହାତ ଥିଲେ।

ଆମେ ତାଙ୍କୁ ଜାଣିଥିଲୁ ସର୍ବୋଦୟ କୁଟୁମ୍ବରେ - ବାପାଙ୍କ ବଡ଼ଭାଇ ଭାବରେ। ବାପାଙ୍କ ସମ୍ମାନ ଏବଂ ଶ୍ରଦ୍ଧାସ୍ପଦ ଭାବରେ। ଭୁବନେଶ୍ୱର ଓ ଅନୁଗୋଳ ତାଙ୍କର କର୍ମକ୍ଷେତ୍ର ଥିଲା। ଆମେ ବାପାଙ୍କ ସାଥିରେ ସୁଦୂର କୋରାପୁଟ ଏବଂ ପରେ ସମ୍ବଲପୁରରେ ରହୁଥିଲୁ। ତେଣୁ ତାଙ୍କ ସାଥିରେ ଆମମାନଙ୍କର ବ୍ୟକ୍ତିଗତ ସମ୍ପର୍କ ପିଲାଦିନେ ପ୍ରାୟ ନ ଥିଲା କହିଲେ ଚଳେ। ବଡ଼ ହେବା ପରେ, କଦବା କେମିତି ଭୁବନେଶ୍ୱର ଯିବା ଅବସରରେ ତାଙ୍କର ନିକଟ ସମ୍ପର୍କରେ ଆସିବା ପରେ ଅନୁଭବ କଲୁ - ସେ କେତେ ବେଶୀ ସ୍ନେହୀ। ତାଙ୍କର ସେ ସ୍ନେହର ପରିସର କେବଳ ତାଙ୍କ ଆତ୍ମୀୟ ବା ନିକଟ ସମ୍ପର୍କୀୟଙ୍କ ମଧ୍ୟରେ ସୀମିତ ହୋଇ ରହି ନଥିଲା। ତାଙ୍କର ପରିଚିତ ପ୍ରତ୍ୟେକ ବ୍ୟକ୍ତି ନବଜୀବନ ମଣ୍ଡଳର କର୍ମୀ, ସର୍ବୋଦୟ ପରିବାରର ଯେକେହି ସଦସ୍ୟ ବା ସାମାଜିକ କ୍ଷେତ୍ରରେ କାମ କରୁଥିବା ବ୍ୟକ୍ତି, ସମସ୍ତେ ସେ ସ୍ନେହକୁ ଅନୁଭବ କରୁଥିଲେ, ସ୍ନେହର ଅଧିକାରୀ ଥିଲେ। ତାଙ୍କର ବିଚକ୍ଷଣ ବୁଦ୍ଧି ସହ, ଉଦାରତା ଓ ସ୍ନେହର ବନ୍ଧନ ଅନେକ ଲୋକଙ୍କୁ ତାଙ୍କ ନିଜର କରିପାରିଥିଲା। ନିଃସ୍ୱାର୍ଥପର, ବହୁଜନ ହିତାୟ ସମନ୍ୱିତ ସେ ସ୍ନେହ ଖୁବ୍ କମ୍ ଲୋକଙ୍କ ନିକଟରୁ ମିଳିଥାଏ।

ବାପା ଯେତେବେଳେ ଆଦର୍ଶଗତ କାରଣରୁ ଖଦୀ କମିଶନରୁ ଇସ୍ତଫା ଦେଲେ ଏବଂ ନୃସିଂହନାଥଠାରେ

ସର୍ବୋଦୟ ସଂସ୍ଥା ପାଇଁ ଥିବା ଜମିରେ ନିଜର ଯତ୍‌କିଞ୍ଚିତ୍ ବ୍ୟକ୍ତିଗତ ଅର୍ଥକୁ ବ୍ୟୟ କରି ସଂସ୍ଥା ଆରମ୍ଭ କରିଦେଲେ ସେତେବେଳେ ବଡ଼ବାପା ତାଙ୍କୁ ଯେଉଁ ଚିଠି ଲେଖିଥିଲେ, ତା ଆଜି ମଧ ଆମର ଅମୂଲ୍ୟ ସମ୍ପଦ ହୋଇ ରହିଛି। ସ୍କୁଲରେ ପଢୁଥିବା ତିନୋଟି ଝିଅଙ୍କ ପଢ଼ାପଢ଼ି ଏବଂ ଭବିଷ୍ୟତକୁ ନେଇ ସେ ଚିଠିରେ ଥିବା ଉପଦେଶରୁ ବାପାଙ୍କ ପାଇଁ ତାଙ୍କର ସ୍ନେହ କେତେ ବେଶି ରହିଥିଲା, ତାହା ସ୍ପଷ୍ଟ ଜଣାଯାଏ। ବାପାଙ୍କର ପ୍ରତ୍ୟେକଟି ଅସୁବିଧା - ସାମାଜିକ ହେଉ ବା ବ୍ୟକ୍ତିଗତ, ତଥା ଦୁଃଖ ସମୟରେ ବାପା ବଡ଼ବାପାଙ୍କ ପରାମର୍ଶ ଲୋଡୁଥିଲେ, ବଡ଼ବାପା ମଧ ପ୍ରତିଥର ନିଜ ସାଧ ମତେ ବାପାଙ୍କୁ ସାହାଯ୍ୟ କରୁଥିଲେ। ଏମିତିକି ବାପାଙ୍କ ଡ଼ାକରାରେ ନିଜର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ ସୁଦୂର ଭୁବନେଶ୍ୱରରୁ ସମ୍ବଲପୁରର ସୀମନ୍ତ ଅଞ୍ଚଳ ନୃସିଂହନାଥକୁ ଧାଇଁ ଆସିଥିଲେ।

ବାପାଙ୍କର ଅଚାନକ ଦେହାନ୍ତ ହେଲା। ବଡ଼ବାପା ସେତେବେଳେ ଅସୁସ୍ଥ ଥିଲେ। ମାତ୍ର ଆମମାନଙ୍କର ବାରଣ ସତ୍ତ୍ୱେ ସେ ଯେପରି ଭାବରେ ଭୁବନେଶ୍ୱରରୁ ଆସି ଆମମାନଙ୍କ ପାଖରେ ପହଞ୍ଚିଥିଲେ, ତା ଆମେ ଭୁଲି ପାରିବୁ ନାହିଁ।

ଧନସମ୍ପତ୍ତିର ପ୍ରାଚୁର୍ଯ୍ୟ ବଡ଼ବାପାଙ୍କର ନଥିଲା। ପିଲାମାନେ ପଢୁଥିବାବେଳେ ତାଙ୍କୁ ଆର୍ଥିକ ଅସୁବିଧାରେ ଚଳିବାକୁ ହୋଇଛି। ପରେ ସ୍ୱାଧୀନତା ସଂଗ୍ରାମୀ ପେନସନ୍ ତାଙ୍କର ଆର୍ଥିକ ଆୟର ମୁଖ୍ୟ ସ୍ରୋତ ଥିଲା। ମାତ୍ର ସେଥିରୁ ମଧ ସେ ଅନେକଙ୍କୁ ସାହାଯ୍ୟ କରୁଥିଲେ। ସେ ସାହାଯ୍ୟ ପୁଣି ଏମିତି ଥିଲା ଯେ ବାଁ ହାତର ସାହାଯ୍ୟ ଡ଼ାହାଣ ହାତ ଜାଣୁ ନଥିଲା।

ମାଳତୀ ଚୌଧୁରୀଙ୍କ ଆଦର୍ଶକୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବଜାୟ ରଖିଥିବା ବଡ଼ବାପା ରୋଗଶଯ୍ୟାରେ ଥାଇ ମଧ ତାଙ୍କୁ ଦେଖା କରିବାକୁ ଆସୁଥିବା ବ୍ୟକ୍ତିମାନଙ୍କ ସୁଖଦୁଃଖ ପଚାରି ବୁଝୁଥିଲେ। ନିଜର ଏତେ ଅସୁସ୍ଥତା ଓ କଷ୍ଟ ସତ୍ତ୍ୱେ ସେ କାହାରିକି ଦେଖିଲେ ଖୁସି ହୋଇ ଯାଉଥିଲେ। ଶେଷ ସମୟରେ ସେ ଅନେକ ଜିନିଷ ଭୁଲି ଯାଇଥିଲେ, ମାତ୍ର ତାଙ୍କ ହୃଦୟରେ ରହିଥିବା ଆଦର୍ଶ ଏବଂ ସେ ଆଦର୍ଶରେ ପରିଚାଳିତ ସାଥୀମାନଙ୍କୁ ସେ ଦେଖିବା ମାତ୍ରେ ଆନନ୍ଦରେ ତାଙ୍କ ମୁହଁ ଝଲସି ଉଠୁଥିଲା। ଆଜିର ଏ ସ୍ୱାର୍ଥସର୍ବସ୍ୱ ଦୁନିଆରେ ଏଭଳି ମଣିଷ ମିଳିବା ଦୁର୍ଲଭ। ଆମର ସୌଭାଗ୍ୟ, ଆମେ ସେଇଭଳି ବ୍ୟକ୍ତିତ୍ୱ ମାନଙ୍କର ନିକଟ ସମ୍ପର୍କରେ ଆସିଛୁ, ସେମାନଙ୍କର ସ୍ନେହ ଓ ଆଶୀର୍ବାଦ ପାଇ ପାରିଛୁ।

ଆଜିର ଦୁନିଆ ଜଗତୀକରଣର, ମାତ୍ର ଏଥିରେ ବିନୋବାଜୀଙ୍କ 'ଜୟଜଗତ'ର ଅନ୍ତଃସ୍ୱର ନାହିଁ, ପୁଞ୍ଜିବାଦୀଙ୍କର ସାରା ପୃଥିବୀକୁ ଲୁଟିବାର ସ୍ୱର ହିଁ ଏଥିରେ ନିହିତ। ବଡ଼ବାପାଙ୍କ ଭଳି ସମ୍ବେଦନଶୀଳ, ଦୁଃଖୀ ବେସହାରାର ଦୁଃଖ ବୁଝି ପାରୁଥିବା ଦରଦୀ ବ୍ୟକ୍ତି ମାନଙ୍କର ଆଜି ବହୁ ଅଧିକ ଆବଶ୍ୟକତା ରହିଛି।

••

# ସ୍ୱର୍ଗୀୟ ସ୍ୱାଧୀନତା ସଂଗ୍ରାମୀ ଜୟକୃଷ୍ଣ ମହାନ୍ତିଙ୍କ ସହ ପୁରୀ-ଜେଲ ଅନୁଭୂତି

ବ୍ରଜସୁନ୍ଦର ଦାସ

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସର "ଭାରତ ଛାଡ଼ ଆନ୍ଦୋଳନ"ରେ ସଂପୃକ୍ତ ହୋଇ ଅଗଷ୍ଟ ୧୯୪୨ରେ ଜୟୀଭାଇ ପ୍ରଭୃତି ଶତାଧିକ କର୍ମୀ ପୁରୀ ଜିଲାର ନିମାପଡ଼ା, ଗୋପ, କାକଟପୁର ଆଦି ବିଭିନ୍ନ ଅଞ୍ଚଳରୁ ଗିରଫ ହୋଇ ପୁରୀ-ଜେଲରେ ବନ୍ଦୀ ଥିଲେ। ପୁରୀ ସହର ଜିଲା ସ୍କୁଲର ଆମେ ଛାତ୍ରମାନେ ଆନ୍ଦୋଳନରେ ଭାଗ ନେଲୁ ଓ ସେପ୍ଟେମ୍ବର ପ୍ରାରମ୍ଭରେ ସ୍କୁଲ ଛାତ ଉପରେ ଜାତୀୟ ପତାକା ଉଡ଼ାଇ ଧର୍ମଘଟ ଶୋଭାଯାତ୍ରାରେ ପୁରୀ ସହର ପରିକ୍ରମାରେ ବାହାରିଲୁ। ଜିଲା ସ୍କୁଲ (ବର୍ତ୍ତମାନ ପୁରୀ କଲେଜ) ପରିସର ବାହାରେ ସଡ଼କରେ ସିଂହଦ୍ୱାର ଆଡ଼େ ମୁହାଁଇବା ବେଳେ ନେତୃତ୍ୱ ନେଇଥିବା ଆମ ଆଠ ଦଶଜଣ ଛାତ୍ରଙ୍କୁ ପୋଲିସ ଗିରଫ କଲା ଏବଂ ଆମକୁ ଜେଲକୁ ନେଇ ଗଲା। ସ୍କୁଲର ଅଫିସ ଭିତରେ ପଶି ଭଙ୍ଗାରୁଜା କରୁଥିବା ବେଳେ ମୋ ହାତରେ ଖଣ୍ଡେ ଭଙ୍ଗା କାଚ ପଶି କ୍ଷତ ହୋଇ ଯାଇଥିବାରୁ ବ୍ୟାଣ୍ଡେଜ୍ କରି ମୋତେ ଜେଲର ଡ଼ାକ୍ତରଖାନାରେ କେତେଦିନ ରଖାଗଲା। ମୋତେ ଦିଆ ଯାଉଥିବା ଭାତ, ଡାଲି, ତରକାରି ଆଦି ଖାଦ୍ୟ ନ ରୁଚିବାରୁ ଜୟୀଭାଇଙ୍କ ଅନୁରୋଧ କ୍ରମେ କପେ ଲେଖାଏଁ କ୍ଷୀର ମିଳିଲା ଓ କ୍ଷୀର ସହ ଗିନାଏ ସରିକି ଭାତ ଚକଟି ଖାଇଲି। ଘାଆ ଶୁଖି ଯିବାରୁ ଡ଼ାକ୍ତରଖାନାରୁ ବିଦା କରି ମୋତେ ଅନ୍ୟ ଛାତ୍ର ସାଥୀଙ୍କ ସହ ରଖାଗଲା। ଆମ ତତ୍ତ୍ୱ ବୁଝିବାରେ ଜୟୀଭାଇ ବହୁତ ଧ୍ୟାନ ଦେଉଥିଲେ, ଯେପରି ଆମ ମନୋବଳ ଭାଙ୍ଗି ନ ଯିବ ଓ ବଣ୍ଡ ଲେଖି କ୍ଷମା ମାଗି ଆମେ ଖଲାସ ହୋଇ ଯିବାକୁ ମନ ନ କରୁ।

ତେବେ ମୋତେ ମିଳୁଥିବା କ୍ଷୀର ବନ୍ଦ ହୋଇଗଲା। କାରଣ ଆମ ତୃତୀୟ ଶ୍ରେଣୀ ବନ୍ଦୀମାନଙ୍କୁ କ୍ଷୀର ଦେବା ଜେଲ ନିୟମରେ ନ ଥିଲା। ଅନ୍ୟପକ୍ଷରେ ସମସ୍ତଙ୍କୁ ଦିଆ ଯାଉଥିବା କଏଦୀ ରୋଷେୟାଙ୍କ ରନ୍ଧା ଖାଦ୍ୟ ମୋତେ କିମିତି ଗନ୍ଧଉ ଥିଲା। ଏଣୁ ଜୟୀଭାଇଙ୍କ ଉଦ୍ୟମକ୍ରମେ ଡ଼ାଲି-ତରକାରୀ ବଦଳରେ ମୋତେ ପୁଣି କପେ ଲେଖାଏଁ କ୍ଷୀର ମିଳିଲା। କଏଦୀ ରାନ୍ଧୁଣିଆ ଆମ ବନ୍ଦୀଙ୍କ ପାଇଁ ମାଟି କୁଣ୍ଡରେ ତେନ୍ତୁଳି ଚକଟି ଖଟା ପରିବେଷଣ କରୁଥିଲେ। କିନ୍ତୁ ସେହି ସାଇଜର ମାଟି କୁଣ୍ଡ ପାଇଖାନାରେ ବ୍ୟବହାର କରା ଯାଉଥିବାରୁ ମୁଁ ଖଟାକୁ ଘୃଣା କରୁଥିଲି। ସେହି କୁଣ୍ଡକୁ "ଟୁକୁରୀ" ବୋଲି କୁହା ଯାଉଥାଏ। ମୋର ଅଦ୍‌ଭୁତ ଘୃଣାଭାବ ଦେଖି ଜୟୀଭାଇ ଥଟାମଜାରେ କହୁଥିଲେ ଯେ "ଟୁକୁରୀ"ରେ ଖଟା ଦିଆ ଯାଉଛି। ମୋ ପତ୍ରରେ ବାରଣ ସତ୍ତ୍ୱେ ଟିକିଏ ପଡ଼ି ଯାଉଥିଲେ ମୁଁ ଚିହିଁକି ଉଠୁଥିଲି ଓ ଭାତ ଛାଡ଼ି ଦେଉଥିଲି। ସମସ୍ତେ ହସି ଉଠୁଥିଲେ।

ଗିରଫ ହୋଇ ଜେଲରେ ଥିବା ଆମ ସଂଗ୍ରାମୀମାନଙ୍କ ବିଚାର ପାଇଁ ପୋଲିସ ଏକା ଥରକେ ବାର-ଚଉଦ ଜଣଙ୍କୁ ଅଦାଲତକୁ ନେଉଥିଲେ। ଦୁଇ ଦୁଇ ଜଣ କରି ହାତକଡ଼ି ପକାଇ ଦଉଡ଼ିରେ ବାଗେଇ

ବାନ୍ଧି ଜେଲ ଭିତରୁ ଚଲାଇ ଚଲାଇ ପୁରୀ ସମୁଦ୍ରକୂଳ ଅଦାଲତକୁ ନେବା ବେଳେ ବାଟରେ ବଡ଼ଦାଣ୍ଡରେ ଜୟୀଭାଇଙ୍କ ପ୍ରେରଣା କ୍ରମେ ଆମେ ବସି ଯାଉଥିଲୁ ଓ ପୋଲିସକୁ କହୁଥିଲୁ ଯେ "ଗୋରା ସରକାରର ଅଦାଲତକୁ ଆମେ ମାନୁ ନାହିଁ। ତମେ କିମିତି ଆମକୁ କୁଆଡ଼େ ନେବ ନିଅ।" ସେଠି ଆମ ପାଖରେ ସ୍ଥାନୀୟ ଲୋକେ ଜମା ହୋଇ ଯାଉଥିଲେ ଓ ଜୟୀଭାଇ ସରକାର ବିରୁଦ୍ଧରେ ଉତ୍ତେଜକ ଭାଷଣମାନ ଦେଉଥିଲେ। ପୋଲିସ ବାଧ୍ୟ ହୋଇ ତାଙ୍କ ଗାଡ଼ି ମଗାଇ ଆମକୁ ଟେକି ନେଇ ଗାଡ଼ିରେ ବସାଇ କଚେରିକୁ ନେଉଥିଲେ ଓ ବିଚାର ପରେ ସେହି ଗାଡ଼ିରେ ବସାଇ ଜେଲରେ ଛାଡୁଥିଲେ।

ସନ୍ଧ୍ୟା ଛଅଟାରେ ଆମ ତୃତୀୟ ଶ୍ରେଣୀ ୱାର୍ଡ ଗୁଡ଼ିକରେ ତାଲା ପଡୁଥିଲା ଓ ପରଦିନ ସକାଳ ଛଅଟାରେ ଖୋଲା ଯାଉଥିଲା। ଆମେ ସଂଗ୍ରାମୀଗଣ ତାକୁ ଅମାନ୍ୟ କଲୁ ଓ ରାତିଯାକ ବାହାରେ ବୁଲିଲୁ, ବାହାରେ ଶୋଇଲୁ, ୱାର୍ଡ ଭିତରକୁ ଗଲୁ ନାହିଁ। ଜେଲ କର୍ତ୍ତୃପକ୍ଷଙ୍କୁ ଆହ୍ୱାନ ଦେଲୁ ଯେ "ଆମେ ରାଜବନ୍ଦୀ। ଆମେ ଚୋର-ତସ୍କର କି ଗାଈଗୋରୁ ନୋହୁଁ ଯେ ଗୁହାଳରେ ତମେ ରାତିରେ ବନ୍ଦ କରି ରଖିବ।" କେତେ ଦିନର ଆମ ଆନ୍ଦୋଳନର ଫଳରେ ଆଉ ୱାର୍ଡରେ ତାଲା ପଡ଼ିଲା ନାହିଁ।

ଜେଲରେ ପ୍ରଥମେ ପ୍ରଥମେ ଆମକୁ ଖବରକାଗଜ ଦିଆ ଯାଉ ନଥିଲା। ଫଳରେ ଆମେ ଅନଶନ କଲୁ। ଆମକୁ ଓଡ଼ିଆ ଓ ଇଂରେଜୀ ଖବରକାଗଜ ଦିଆଗଲା। ଇଂରେଜୀ କାଗଜ ପଢ଼ି ମୋର ଇଂରେଜୀ ଜ୍ଞାନକୁ ବଢ଼ାଇବାରେ ଜୟୀଭାଇ ନିୟମିତ ଦୃଷ୍ଟି ଦେଉଥିଲେ।

ଜେଲ୍‌ରେ ନିମ୍ନଶ୍ରେଣୀ ଓ ଉଚ୍ଚଶ୍ରେଣୀ ରାଜବନ୍ଦୀଙ୍କ ରହିବା ବ୍ଲକ ଅଲଗା ଅଲଗା ଥିଲା ଓ କଏଦୀ ରାନ୍ଧୁଣିଆ ଅଲଗା ଅଲଗା ରାନ୍ଧି ଅଲଗା ଅଲଗା ପରିବେଷଣ କରୁଥିଲେ। ଉଚ୍ଚଶ୍ରେଣୀ ଓ ନିମ୍ନଶ୍ରେଣୀ ବନ୍ଦୀଙ୍କ ମଧ୍ୟରେ ମିଳାମିଶା କରିବାକୁ ଦିଆ ଯାଉନଥିଲା। ଏହାର ପ୍ରତିବାଦ କରି ଜୟୀଭାଇ, ଭଗବାନ ପ୍ରତିହାରୀ, ଜଗନ୍ନାଥ ମିଶ୍ର, ନବକୃଷ୍ଣ ଚୌଧୁରୀ ଓ ସତ୍ୟବାଦୀ ନନ୍ଦ ପ୍ରଭୃତି ନେତୃବୃନ୍ଦଙ୍କ ଗହଣରେ ଆମେ କଟକଣା ଭାଙ୍ଗିଲୁ ଓ ସମସ୍ତେ ମିଶି ଏକାଠି ଭଲିବଲ ଖେଳିଲୁ। ଉଭୟ-ଉଭୟ ଶ୍ରେଣୀର ରେସନ (ଚାଉଳ, ଡାଲି, ପରିବା, କ୍ଷୀର, ମାଛ, ମାଂସ ଆଦି) ନେଇ ଗୋଟିଏ ମେସ୍‌ରେ ରନ୍ଧାଗଲା ଓ ରନ୍ଧାରନ୍ଧିରେ ବିଶେଷ ଭାବରେ ଭାଗ ନେଲେ ଜୟୀଭାଇ, ପଦ୍ମଚରଣ ସାମନ୍ତସିଂହାର, ଭଗବାନ ପ୍ରତିହାରୀ ଏବଂ ଭବାନୀ ପଟ୍ଟନାୟକ। ଏବେ ଆମ ଇଚ୍ଛା ଅନୁସାରେ ରୁଚିକର ଖାଦ୍ୟ ମିଳିଲା।

ଉକ୍ତ ୧୯୪୨ର ନଭେମ୍ବର ମାସରେ ଭୟଙ୍କର ଝଡ଼ ତୋଫାନ ଓ ବର୍ଷା ହେଲା। ଜେଲ ଭିତରର ଦୁଇ ମହଲା କୋଠା ମଧ୍ୟ ଟିକେ ଦୋହଲିଲା। ସେଥିରେ ଥିବା ବନ୍ଦୀମାନେ (ମହିଳା ମଧ୍ୟ କେତେଜଣ) ଚଳକୁ ଖୋଲା ଜାଗାକୁ ଓହ୍ଲାଇ ଆସିଲେ। ଉଚ୍ଚ ଶ୍ରେଣୀର ଆମେ ବନ୍ଦୀମାନେ ରହୁଥିବା ଘରର ଟିଣ ଛାତ ମଧ୍ୟ ଉଡ଼ିଯିବା ପରି ଭୟ ହେଲା। ଏଣୁ ଜୟୀଭାଇ, ପଦଭାଇ (ପଦ୍ମଚରଣ ସାମନ୍ତସିଂହାର) ଓ ଭଗବାନ (ପଡ଼ିଆରି) ଭାଇଙ୍କ ନେତୃତ୍ୱରେ ଆମେ ଜେଲ ପରିସର ଭିତରେ ଷ୍ଟୋରର ତାଲା ଭାଙ୍ଗି ଭିତରେ ଥିବା ଶାବଳ, ଲୁହାଛଡ଼ ଆଦି ଯନ୍ତ୍ରପାତି ବାହାର କଲୁ ଏବଂ ଜେଲ ପାଚେରି ଭାଙ୍ଗି ଦେଇ ବାହାରକୁ ଯିବା ଉଦ୍ୟମ କଲୁ। ସେତେବେଳେ ପୁରୀ ଜେଲରେ ଅଟକ ବନ୍ଦୀ ଥିବା ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ପାଚେରିର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଜମା କରିବାକୁ କହିଲେ ଯେପରି ଚାରିପାଞ୍ଚଜଣ ଏକା ସାଙ୍ଗରେ ଜେଲର ଗୋଦାମ ଘରେ ପଶି ପାରିବେ ତଥା ଜେଲ ଅଫିସ ଭିତରେ ଆଶ୍ରା ନେଇ

ପାରିବେ। ଏହି ସମୟରେ ଜେଲର ବାବୁ ତାଙ୍କର ଡେଙ୍ଗା କାଳିଆ ଜମାଦାର (ହେଡ୍‌ୱାର୍ଡର)ଙ୍କ ସହିତ କେତେଜଣ ୱାର୍ଡରଙ୍କୁ ଧରି ଜେଲ ଅଫିସ ଛାତ ଉପରୁ ତଳକୁ ଆମ ଉପରକୁ ଗୁଳି ଫୁଟାଇବାକୁ ବନ୍ଧୁକ ଦେଖାଇଲେ। ନବବାବୁ ତଳେ ଆମ ମେଳରେ ଥାଇ ଜେଲର ବାବୁଙ୍କୁ ଧମକ ଦେଲେ ଯେ "ତୋତେ ମୁଁ ସସ୍‌ପେଣ୍ଡ କରେଇବି। ଏ ଝଡ଼ତୋଫାନ ଭିତରେ ତମେ କେହି କର୍ମଚାରୀ ଆମ ଅବସ୍ଥା ନ ବୁଝି କିଏ କୁଆଡ଼େ ଲୁଚି ରହିଛ।"

ଇତିମଧ୍ୟରେ ଜେଲ ସୁପରିଟେଣ୍ଡେଣ୍ଟ ତଥା ପୁରୀ ଜିଲାର ସିଭିଲ ସର୍ଜନ ଶ୍ରୀ କାଶୀନାଥ ମିଶ୍ର ପହଞ୍ଚିଗଲେ ଓ ନବବାବୁଙ୍କ ପରାମର୍ଶ ମାନି ଆମ ସମସ୍ତ ରାଜବନ୍ଦୀଙ୍କୁ ପୁରୀ ଜିଲା ଡ଼ାକ୍ତରଖାନାର କୋଠରୀ (ward) ମାନଙ୍କୁ ନେଇଗଲେ। ଦୁଇ ତିନି ଦିନ ପରେ ଝଡ଼ଝଞ୍ଜା ବନ୍ଦ ହୋଇଯିବାରୁ ଜେଲ ଭିତର, ଘର-ଅଗଣା ସଫା କରାଇ ଆମକୁ ପୁଣି ଜେଲକୁ ଫେରାଇ ନିଆଗଲା।

ହାକିମପଡ଼ା-୭୫୯୧୪୩, ଜି. ଅନୁଗୋଳ

●●

## ସାତୋଟି ସାମାଜିକ ପାପ

୧. ନୀତିହୀନ ରାଜନୀତି
୨. ଚରିତ୍ର ବିହୀନ ଶିକ୍ଷା
୩. ପରିଶ୍ରମ ବିହୀନ ଧନ ଉପାର୍ଜନ
୪. ନୈତିକତାହୀନ ବାଣିଜ୍ୟ ବ୍ୟବସାୟ
୫. ସମ୍ବେଦନ ବିହୀନ ବିଜ୍ଞାନ
୬. ତ୍ୟାଗ ବିହୀନ ଉପାସନା
୭. ବିବେକ ବିହୀନ ବ୍ୟବସାୟ

- ମହାତ୍ମା ଗାନ୍ଧୀ

# ସ୍ମୃତିରୁ ଖିଏ...

ସୁଧାକର ମହାପାତ୍ର

ଋଷି ପ୍ରତିମ ଆଚାର୍ଯ୍ୟ ହରିହରଙ୍କର ଘନିଷ୍ଠ ସହକର୍ମୀ ତଥା ତାଙ୍କ ଭାଷାରେ ଯଥାର୍ଥରେ ଜଣେ 'ଭଲ ମଣିଷ' ଆମର ଅତିପ୍ରିୟ ଜୟକୃଷ୍ଣ ବାବୁ ଆଜି ଇହଲୋକରେ ନାହାନ୍ତି; ଏହା ନିଛକ ସତ୍ୟ ହେଲେହେଁ ବେଳେବେଳେ ବିଶ୍ୱାସ କରି ହୁଏନା। 'ବୁଦ୍ଧନଗର'ସ୍ଥ ତାଙ୍କ ବାସଭବନ କିମ୍ବା ପୁରୀର ଗାନ୍ଧୀ ସ୍ମୃତିପୀଠ ପାଠାଗାରରେ ଉପସ୍ଥିତ ହେଲେ ଅନେକ ସମୟରେ ତାଙ୍କ ହସ ହସ ମୁହଁଟି ଆଖି ଆଗରେ ଭାଷି ଉଠେ। ମନେହୁଏ ସତେ ଯେପରି ସେ ତାଙ୍କର ସେହି କୋମଳ ମଧୁର କଣ୍ଠରେ ଆଗାମୀ ଆଚାର୍ଯ୍ୟ ହରିହର ଜୟନ୍ତୀ ସମ୍ପର୍କରେ କିଛି ଉପଦେଶ ଦେଉଛନ୍ତି।

ଜୟକୃଷ୍ଣ ବାବୁଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ଖୁବ ବେଶି ଦିନର ନୁହେଁ; ମାତ୍ର ସ୍ୱାଧୀନତା ଆନ୍ଦୋଳନ ସହିତ ତାଙ୍କର ସମ୍ପୃକ୍ତି ଓ ତାଙ୍କର ସମାଜସେବା କାର୍ଯ୍ୟକ୍ରମ ସମ୍ପର୍କରେ ମୁଁ ବହୁ ପୂର୍ବରୁ ଅବଗତ ଥିଲି। ପୁରୀ ଜିଲ୍ଲା ସ୍କୁଲରେ ମୁଁ ସହକାରୀ ଶିକ୍ଷକ ଥିବା ସମୟରେ ବିଦ୍ୟାଳୟର ଶତବାର୍ଷିକୀ ଅବସରରେ ଆମେ କେତେଜଣ ଶିକ୍ଷକ ବିଦ୍ୟାଳୟର ଇତିହାସ ତଥା ପୁରାତନ ଛାତ୍ରମାନଙ୍କର ନାମ ତାଲିକା ପ୍ରସ୍ତୁତ କରୁଥିବା ସମୟରେ ତାଙ୍କ ନାମ ସହିତ ମୁଁ ପରିଚିତ ହେଲି। ସେତେବେଳେ ମୁଁ ଜାଣିଲି ଯେ ବିଦ୍ୟାଳୟର ଏହି ପ୍ରାକ୍ତନ ଛାତ୍ର ଜଣକ ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ, ବରିଷ୍ଠ ସମାଜସେବୀ ତଥା ଏହି ବିଦ୍ୟାଳୟର ପ୍ରାକ୍ତନ ଛାତ୍ର ଋଷିପ୍ରତିମ ଆଚାର୍ଯ୍ୟ ହରିହରଙ୍କର ଜଣେ ସୁଯୋଗ୍ୟ ଦାୟାଦ।

ଜୟକୃଷ୍ଣ ବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା ୧୯୯୮ ମସିହା ଅଗଷ୍ଟ ୯ ତାରିଖ ଦିନ। ସେ ପୁଣି ତାଙ୍କର ଅତିପ୍ରିୟ ଶିକ୍ଷା ଓ ଦୀକ୍ଷା କ୍ଷେତ୍ର, ପରମ୍ପରା ପୁଷ୍ଟ ପୁରୀ ଜିଲ୍ଲା ସ୍କୁଲରେ। ଏ ଥିଲା ସେହି ବିଦ୍ୟାଳୟ, ଯାହା ଭକ୍ତକବି ମଧୁସୂଦନ ଓ ସତ୍ୟବାଦୀର ପଞ୍ଚସଖାଙ୍କ ସହିତ ଅଗଣିତ ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀଙ୍କୁ ଏକଦା ପ୍ରେରଣା ଯୋଗାଇ ଥିଲା।

ମୁଁ ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ଥିଲି। ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ବିଦ୍ୟାଳୟରେ ଅଧ୍ୟୟନ କରିଥିବା ପ୍ରାକ୍ତନ ଛାତ୍ର, ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ଉତ୍ସର୍ଗ କରିଥିଲେ, ସେମାନଙ୍କୁ ବିଦ୍ୟାଳୟ ତରଫରୁ ଭବ୍ୟ ସମ୍ବର୍ଦ୍ଧନା ଦେବା ଲାଗି ସ୍ଥିର କରାଗଲା। ଅଗଷ୍ଟ ୯ ତାରିଖ ଭାରତ ଇତିହାସରେ ଏକ ସ୍ମରଣୀୟ ଦିନ ହୋଇଥିବାରୁ, ଏହି ଦିନ ସମ୍ବର୍ଦ୍ଧନା ଦିଆଯିବ ବୋଲି ସ୍ଥିର ହେଲା। ଏହି ମହାନ କାର୍ଯ୍ୟ ନିମନ୍ତେ ମତେ ପ୍ରେରଣା ଯୋଗାଇ ଥିଲେ ପୁରୀର ତତ୍କାଳୀନ ଜିଲ୍ଲାପାଳ ଶ୍ରୀଯୁକ୍ତ ପ୍ରଦୀପ୍ତ କୁମାର ମହାପାତ୍ର ଓ ଏହି କାର୍ଯ୍ୟକ୍ରମରେ ଅକୁଣ୍ଠ ସହଯୋଗ କରିଥିଲେ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ନାୟକ ଓ ବରିଷ୍ଠ ଶିକ୍ଷକ ଶିକ୍ଷୟିତ୍ରୀଗଣ। ସେଦିନ ଜୟକୃଷ୍ଣ ବାବୁଙ୍କ ସହିତ ସମୁଦାୟ ୨୭ ଜଣ ପ୍ରାକ୍ତନଛାତ୍ର ତଥା ସ୍ୱାଧୀନତା ସଂଗ୍ରାମୀଙ୍କୁ ନିମନ୍ତ୍ରଣ କରାଯାଇଥିଲା। ଜିଲ୍ଲାପାଳ ମହୋଦୟ, ଶିକ୍ଷକ ଶିକ୍ଷୟିତ୍ରୀ ତଥା ଛାତ୍ର

ଛାତ୍ରୀଙ୍କ ସମ୍ମୁଖରେ ଏହି ପ୍ରାକ୍ତନ ବନ୍ଧୁମାନଙ୍କର ମିଳନ ଏକ ଅପୂର୍ବ ଭାବଗମ୍ଭୀର ପରିବେଶ ସୃଷ୍ଟି କଲା।

ଜିଲ୍ଲାପାଳ ମହୋଦୟ ପ୍ରତ୍ୟେକ ଅତିଥିଙ୍କ ଆସନ ନିକଟକୁ ଯାଇ ଆନୁଷ୍ଠାନିକ ଭାବରେ ଉପଢୌକନ ସହିତ ସମ୍ବର୍ଦ୍ଧନା ପ୍ରଦାନ କରିଥିଲେ। ସମ୍ମୁଖରେ ଥିଲା ମହାତ୍ମାଗାନ୍ଧୀ, ଉତ୍କଳମଣି ଗୋପବନ୍ଧୁ ଓ ଆଚାର୍ଯ୍ୟ ହରିହରଙ୍କର ପ୍ରତିମୂର୍ତ୍ତି। ଏହିଠାରେ ହିଁ ମୋର ପ୍ରଥମ ସାକ୍ଷାତ ହୋଇଥିଲା ଜୟକୃଷ୍ଣ ବାବୁଙ୍କ ସହିତ। କଥା ପ୍ରସଙ୍ଗରେ ମୁଁ ଅବସର ନେବା ପର୍ଯ୍ୟନ୍ତ ପ୍ରତିବର୍ଷ ଆଚାର୍ଯ୍ୟ ହରିହରଙ୍କ ଜୟନ୍ତୀ ଦିନ ଗାନ୍ଧୀ ସ୍ମୃତିପୀଠରେ ଆନନ୍ଦ ମେଳା ଅନୁଷ୍ଠିତ ହେବା ସହିତ ପୁରୀ ଜିଲ୍ଲା ସ୍କୁଲରେ ଏକ ଛାତ୍ରସଭାରେ ଆଚାର୍ଯ୍ୟ ହରିହରଙ୍କର ଜୀବନାଦର୍ଶ ସମ୍ପର୍କରେ ଛାତ୍ରଛାତ୍ରୀମାନଙ୍କୁ ତାଙ୍କ ପରି ବିଶିଷ୍ଟ ସମାଜସେବୀମାନେ ଉଦ୍‌ବୋଧନ ଦେବା ଲାଗି ମୁଁ ଅନୁରୋଧ କରିଥିଲି। ହସି ହସି ସେ ମୋର ଏହି ଅନୁରୋଧକୁ ଗ୍ରହଣ କରିଥିଲେ ଓ ମୁଁ ୨୦୦୧ ମସିହାରେ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷ ପୁରୀ ଜିଲ୍ଲା ସ୍କୁଲର ଆଚାର୍ଯ୍ୟ ହରିହରଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ ଛାତ୍ରସଭା ଅନୁଷ୍ଠିତ ହୋଇଥିଲା।

ଏହାପରେ ଜୟକୃଷ୍ଣ ବାବୁଙ୍କ ସହିତ ମୋର ସାକ୍ଷାତ ହୋଇଛି ଅନେକଥର। ସବୁଥର ସେଇ ଏକ ଅନାବିଳ ହସ ଓ ମୋର ନମସ୍କାର ସାଦରେ ଗ୍ରହଣ କରି କୁହନ୍ତି ସେଇ ଗୋଟିଏ କଥା, "ଆମର ସବୁ ବୟସ ହୋଇଗଲା; ଏଥର ଏସବୁ ଦାୟିତ୍ୱ ଆପଣମାନେ ବୁଝିବେ।" ଥରେ ମୁଁ କଥା ପ୍ରସଙ୍ଗରେ କହିଲି; 'ଆପଣମାନଙ୍କର ବୟସ ହୋଇଛି ଓ ଆପଣମାନେ ଶାରୀରିକ ଦୃଷ୍ଟିକୋଣରୁ ଦୁର୍ବଳ ସତ୍ୟ, ମାତ୍ର ଆପଣଙ୍କର ମାନସିକତା ଏବେବି ତରୁଣ।' ସେ ଶ୍ରୀ ଚନ୍ଦ୍ରଶେଖର ନାୟକଙ୍କୁ ସାମାନ୍ୟ ଆଡ଼ ଆଖିରେ ଅନାଇ ହସିଦେଲେ ଓ ମୋ କଥାକୁ ସମର୍ଥନ କଲେ।

ପ୍ରତ୍ୟେକ ମାସରେ ଅନ୍ୟୁନ ଥରେ ଲେଖାଁଏ ସେ ମୋ ପାଖକୁ ଟେଲିଫୋନ କରନ୍ତି; ମୁଁ ରିସିଭର ଉଠାଇବା ସଙ୍ଗେ ସଙ୍ଗେ ସେ ହସିଦିଅନ୍ତି ଓ ପଚାରନ୍ତି 'ମୁଁ କିଏ କହିଲେ?' ମୁଁ ଉତ୍ତର ଦିଏ ଆପଣ ନ ହସିଥିଲେ ମୁଁ ସନ୍ଦେହରେ ପଡ଼ିଥା'ନ୍ତି। ଟେଲିଫୋନରେ ମଧ୍ୟ ସେଇ ଗୋଟିଏ କଥା, "ଆପଣ ମୋ ଦାୟିତ୍ୱ ନେଇ ନିଅନ୍ତୁ" ଓ ମୁଁ ତାର ଉତ୍ତରରେ କୁହେ, "ଆପଣ ଦାୟିତ୍ୱରେ ରହନ୍ତୁ ଆମେ ସବୁ କାମ ଏଠାରେ କରିଯିବୁ। କେବଳ ଆପଣ ଆନନ୍ଦମେଳାରେ ଉପସ୍ଥିତ ରହିବେ। ଏତିକି ହିଁ ଯଥେଷ୍ଟ।"

ଯୋଗଜନ୍ମା ମହାପୁରୁଷମାନେ ଆଗତ ଭବିଷ୍ୟତ କଥା ଜାଣିପାରନ୍ତି ବୋଲି ମୁଁ ଶୁଣିଥିଲି; ମାତ୍ର ଜୟକୃଷ୍ଣ ବାବୁଙ୍କ କ୍ଷେତ୍ରରେ ମୁଁ ତାହା ପ୍ରତ୍ୟକ୍ଷରେ ଦେଖିଲି। ମୃତ୍ୟୁର ମାତ୍ର ଚାରିମାସ ପୂର୍ବରୁ ଗାନ୍ଧୀସ୍ମୃତିପୀଠରେ ଆଚାର୍ଯ୍ୟ ହରିହର ସ୍ମୃତିସଂସଦର ଏକ ସ୍ୱତନ୍ତ୍ର ସାଧାରଣ ଅଧିବେଶନ ଡକାଇ ସେ କର୍ମକର୍ତ୍ତା ନିର୍ବାଚନ କରାଇଲେ ଓ ତାଙ୍କର ସମସ୍ତ ଦାୟିତ୍ୱ ଆମ୍ଭମାନଙ୍କୁ ଅର୍ପଣ କଲେ।

ଏହାର ଅଳ୍ପଦିନ ପରେ ସେ ଅସୁସ୍ଥ ହୋଇପଡ଼ିଲେ ଓ ତାଙ୍କର କନ୍ୟା ଡ: ସବିତା ମହାନ୍ତିଙ୍କର ନର୍ସିଂ ହୋମରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ। ଡ: ମହାନ୍ତି କୁହନ୍ତି ତାଙ୍କ ମୃତ୍ୟୁର ମାତ୍ର ଦିନେ, ଦୁଇଦିନ ଆଗରୁ ସେ ଅବଚେତନ ଅବସ୍ଥାରେ ଆଚାର୍ଯ୍ୟ ହରିହରଙ୍କୁ ସ୍ମରଣ କରୁଥିଲେ। ଯେପରି କି ସେ ଆଚାର୍ଯ୍ୟ ମହାଶୟଙ୍କ ସହିତ ଆଳାପ ଆଲୋଚନା କରୁଛନ୍ତି।

ଜୟକୃଷ୍ଣ ବାବୁଙ୍କର ମହାପ୍ରୟାଣ ଆଦର୍ଶବାଦ ଉପରେ ଗଢ଼ି ଉଠିଥିବା ଏକ ଯୁଗର ଶେଷ ହୋଇ ଆସିବାର ସଙ୍କେତ ଦିଏ। ଏପରି ମହାନ୍ ଉତ୍ସର୍ଗିକୃତ ବ୍ୟକ୍ତି ବିଶେଷଙ୍କର ସ୍ଥାନ ଯେ ଅପୂରଣୀୟ ହୋଇ ରହିବ ଏଥିରେ ସନ୍ଦେହର ଅବକାଶ ନାହିଁ। ମଙ୍ଗୁମଠ ଓ ପୁରୀ ଜିଲ୍ଲା ସ୍କୁଲର ମୁକ୍ତ ବାୟୁମଣ୍ଡଳରେ ଯେଉଁ କଳିକାଟି ଦିନେ ପ୍ରସ୍ଫୁଟିତ ହୋଇ ଦରିଦ୍ର ଅବହେଳିତ ଓଡ଼ିଶାର ପୁନର୍ଗଠନ ନିମନ୍ତେ ଉତ୍ସର୍ଗ କରିଥିଲା, ତାହା ସମୟକ୍ରମେ ମଉଳି ଯାଇଛି। ମାତ୍ର ୧୩ ବର୍ଷ ବୟସରେ ୧୯୩୧ ମସିହାରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ପିକେଟିଂ କରି ସେ ପୋଲିସ ନିର୍ଯ୍ୟାତନାର ଶିକାର ହୋଇଥିଲେ; ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ଅଂଶଗ୍ରହଣ କରି ସେ ଅନ୍ୟ ସାଥୀମାନଙ୍କ ସହିତ ହସି ହସି କାରାବରଣ କରିଥିଲେ, ପରବର୍ତ୍ତୀ ସମୟରେ ଜଣେ ବିଧାୟକ ରୂପେ ଜମିଦାରୀ ଉଚ୍ଛେଦ, ରାଜସ୍ୱ ସଂସ୍କାର ଓ ଓଡ଼ିଆକୁ ସରକାରୀ ଭାଷାର ମାନ୍ୟତା ଦେବା ଲାଗି ବିଧେୟକ ମାନ ଆଣିବାରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା ଓ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସର୍ବୋଦୟ ମଣ୍ଡଳ, ଗାନ୍ଧୀସ୍ମାରକ ନିଧି, ଉତ୍କଳ ନବଜୀବନ ମଣ୍ଡଳ, ବାଜିରାଉତ ଛାତ୍ରାବାସ, ମାଳତୀ ଦେବୀ ଟ୍ରଷ୍ଟ, ଆଚାର୍ଯ୍ୟ ହରିହର ସ୍ମୃତିସଂସଦ, ଆଦି ବହୁ ଅନୁଷ୍ଠାନ ନିମନ୍ତେ ସେ ଯେପରି ନିଜକୁ ଉତ୍ସର୍ଗ କରିଥିଲେ ତାହା ବାସ୍ତବିକ ଉଲ୍ଲେଖଯୋଗ୍ୟ।

ଜୟକୃଷ୍ଣ ବାବୁଙ୍କର ଜୀବନାଦର୍ଶକୁ ଲକ୍ଷ୍ୟ କଲେ ସ୍ୱତଃ ଆଚାର୍ଯ୍ୟ ହରିହର ଆଖି ଆଗରେ ଭାସି ଉଠନ୍ତି। ମୁହୂର୍ତ୍ତକ ମଧ୍ୟରେ ଶତ୍ରୁକୁ ମିତ୍ର ଓ ପରକୁ ଆପଣେଇ ନେବାର ଶକ୍ତି ତାଙ୍କ ଠାରେ ଥିଲା। ସେ ଥିଲେ ଋଷିପ୍ରତିମ ଆଚାର୍ଯ୍ୟ ହରିହରଙ୍କ ଯଥାର୍ଥ ଦାୟାଦ 'ମଣିଷ ପରି ମଣିଷ'। ସବୁବେଳେ ହସ ହସ; 'କ୍ରୋଧ' ଓ 'ଅସୂୟା' ପରି ଦୁଇଟି ଶବ୍ଦକୁ ଯେପରିକି ସେ ପାଶୋରି ପକାଇଥିଲେ, ଆଜି ସେ ନାହାନ୍ତି ସତ୍ୟ ମାତ୍ର ତାଙ୍କର ସ୍ମୃତି ଯେ ଆମକୁ ସମସ୍ତ ବାଧା ବିଘ୍ନ ଅତିକ୍ରମ କରି ଅଗ୍ରସର ହେବାରେ ପ୍ରେରଣା ଯୋଗାଇବ, ଏଥିରେ ସନ୍ଦେହ ନାହିଁ।

**ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ପୁରୀ ଜିଲ୍ଲା ସ୍କୁଲ,**
**ଭି.ଆଇ.ପି. ରୋଡ୍, ପୁରୀ।**

••

**କହ କହ କେଉଁ ଜାତି ପାଇଛି ମୁକତି**
**କରି ହୁରିହାରି ଗୁହାରି**
**କହ ପାଇଛି କେ ସୁଖ, ଲିଭାଇଛି ଦୁଃଖ**
**ମାଗି ମାଗି ପଥ ଭିକାରି**

**- ବାଞ୍ଛାନିଧି ମହାନ୍ତି**

# ଆମର ଜୟୀମଉସା

**ସେବାଶ୍ରୀ ଚ୍ୟାଉପଟନାୟକ**

ଚାହୁଁ ଚାହୁଁ ବର୍ଷେ ହୋଇଗଲା। ଜୟୀମଉସା ଆଉ ଆମ ଭିତରେ ନାହାନ୍ତି। ସେ ହସ ହସ ମୁହଁରେ ଆଉ ସେବା ଡାକ ଶୁଣିବାକୁ ପାଇବିନି। ଗେଟ୍ ଖୋଲି ଭିତରକୁ ପଶିଲେ ଦାଣ୍ଡ ବାରଣ୍ଡାରେ ଟେବୁଲ ପାଖରେ ସେ ଯାଗାଟି ସବୁବେଳ ପାଇଁ ଶୂନ୍ୟ ହୋଇଗଲା।

ମୁଁ ମୋ ବାପା ଅସୁସ୍ଥ ହେବାଠାରୁ ବହୁତ ସମୟ ଭୁବନେଶ୍ୱରରେ ରହୁଥିଲି। ସେ ପ୍ରାୟ ଫୋନ୍ କରି ବାପାଙ୍କ କଥା ପଚାରିବେ ଓ କହିବେ ସେବା ତୁ ତ ଭୁଲି ଗଲୁଣି। ଯାହାହେଉ ବୋଉ ପାଖରେ ରହି ବୋଉ ବାପାଙ୍କ ସେବା କରୁଛୁ ଭଲ। ଝିଅମାନେ ବୋଉ, ବାପାଙ୍କ ସେବା କରିବା କଥା, ତୁ ଥା ବାପା ବୋଉଙ୍କର ସେବା କର। ତୋ ପିଲାଏ ତ ବଡ଼ ହୋଇ ଗଲେଣି।

ମୁଁ ଚେନ୍ନାଇରୁ ଆସି ଭୁବନେଶ୍ୱରରେ ଘର ତିଆରି କରୁଥାଏ। ସବୁବେଳେ ପଚାରିବେ ଘର କାମ କେତେ ଦୂର ଗଲା ? ଅଶୋକ ବାବୁ କିପରି ଅଛନ୍ତି ? କେବେ ଆସୁଛନ୍ତି ? ଯେତେବେଳେ ପହଞ୍ଚିଲେ ଗୋଟି ଗୋଟି କରି ସମସ୍ତଙ୍କ କଥା ପଚାରିବେ। ଆଉଗୋଟେ କଥା, ଗଲେ ଯାହାକିଛି ନ ଖୁଆଇ ଛାଡ଼ିବେନି।

ମୁଁ ଚେନ୍ନାଇରେ ଥିବାବେଳେ ଜୟୀମଉସାଙ୍କ ଆଖିର ଚିକିତ୍ସା ପାଇଁ ସେ ଚେନ୍ନାଇ ଯାଇଥିଲେ। ପୋର୍ଟ ଟ୍ରଷ୍ଟ ଗେଷ୍ଟ ହାଉସରେ ରହୁଥାନ୍ତି କାରଣ ତାଙ୍କ ପୁଅ ତପନ ସେତେବେଳେ ପୋର୍ଟ ଟ୍ରଷ୍ଟ ପାରାଦୀପରେ ଡାକ୍ତର ଥିଲେ। ଆମେ ଓଡ଼ିଆ ଲୋକ ସାଧାରଣତଃ ସେପଟର ଖାଇବାଟା ପସନ୍ଦ କରୁନା। ଯେହେତୁ ମୁଁ ପାଖରେ (୩୦ କି.ମି.) ଥିଲି, ତେଣୁ ଯେବେ ସୁବିଧା ହୁଏ ମୁଁ ଓ ମୋ ସ୍ୱାମୀ ଘର ଖାଇବା, ବଗିଚାରୁ ଅମୃତଭଣ୍ଡା ନେଇକି ଯାଉ। ବହୁତ ଖୁସି ହୁଅନ୍ତି।

ମୋ ବାପାଙ୍କ ଠାରୁ ସେ ବଡ଼ ଥିଲେ। ବୋଉ ଠାରୁ ସେ ବଡ଼ ଥିଲେ। ବୋଉ (ମାଳ) ଠାରୁ କିରଣ ମାଉସୀ ବଡ଼ ଥିଲେ। ହେଲେ ବୋଉର ଭାରି ସାଙ୍ଗ ଥିଲେ ଆମର ପ୍ରିୟ ଜୟୀମଉସା ଓ କିରଣ ମାଉସୀ।

ମୋ ବୋଉକୁ ସେ ବହୁତ ଭଲ ପାଆନ୍ତି। ବୋଉ ଥରେ ଖବର ପାଇଲା ଜୟୀ ମଉସା ପାଇଖାନାରେ ପଡ଼ି ଯାଇଛନ୍ତି। ବୋଉ ବ୍ୟସ୍ତ ହୋଇ ଗୋଟେ folding commode କିଣି ଧରିକି ଗଲା। ମୁଁ ସାଙ୍ଗରେ ଥିଲି। ଗୋଟେ ପିଲାଟିଏ ଥାଏ ତାଙ୍କୁ ଦେଖିବାକୁ। ହସିଲେ, କହିଲେ କାହିଁକି ଏସବୁ ତୁ କରୁଛୁ।

ମୁଁ ବମ୍ବେ ଯାଇଥାଏ ମୋ ବଡ଼ ପୁଅ ପାଖକୁ। ବୋଉ ମୋତେ ଫୋନ କରି କହିଲା, ତୁ ଶୀଘ୍ର ଆସିବୁ ତୋତେ ଜୟୀ ମଉସା ଖୋଜୁଛନ୍ତି। ଏତେ ଦେହ ଖରାପ ବୋଲି ଜାଣି ପାରିଲିନି। ବୋଉ ଥାଏ ସୁରଟରେ ଭାଇ (ସୁବ୍ରତ) ପାଖରେ।

ମୁଁ ଶୀଘ୍ର ବମ୍ବେରୁ ଫେରିଲି। ତାପରେ ଘରକୁ ଗଲି ଦେଖା କରିବାକୁ ହେଲେ ସେ ସେତେବେଳେ ରାଜଧାନୀ ନର୍ସିଂ ହୋମରେ ଥିଲେ। ଆଖି ବନ୍ଦ କରି ଶୋଇଥାନ୍ତି। ପାଖରେ ଡଲି, ଗୋରୀ, ସୋମା ଥାଆନ୍ତି। କଥାବାର୍ତ୍ତା କରିବାକୁ ମନା। ମନ ଖରାପ ହେଲା। ଫେରି ଆସୁଥିଲି, ଭବାନୀ ମଉସା ଯାଇ ପହଞ୍ଚିଲେ। କିଛି ସମୟ ବସି ଫେରି ଆସିଲି।

ଦୁଇ ତିନି ଦିନ ପରେ ତପନ ଫୋନ କଲା, ସେବା ବାପା ଚାଲିଗଲେ। ସକାଳୁ ମୁଁ ଓ ମୋର ସ୍ୱାମୀ ଅଶୋକ ବାବୁ ଗଲୁ ଶେଷ ଦର୍ଶନ ପାଇଁ। ବନ୍ଧୁବାନ୍ଧବ ଅନୁଷ୍ଠାନର କର୍ମୀ ସବୁ ଆସିଥାଆନ୍ତି। ପ୍ରାର୍ଥନା ହେଲା। ଆମେ ଚାଲିଆସିଲୁ। ଗୋଟିଏ ମହାନ ଆତ୍ମାର ଶେଷ ହେଲା।

**'ସେବା ନିବାସ', ଶ୍ରୀରାମ ନଗର, ଭୁବନେଶ୍ୱର-୨**

# ଜୟୀଭାଇ, ଏକ ଅନନ୍ୟ ବ୍ୟକ୍ତିତ୍ୱ

**ରବି ମହାନ୍ତି**

ପରାଧୀନ ଭାରତରେ ଜନ୍ମଗ୍ରହଣ କରି ଜୟୀଭାଇ ଦେଶକୁ ସ୍ୱାଧୀନ କରିବା ପାଇଁ ସଂଗ୍ରାମୀ ହେଲେ, ଜେଲ ଗଲେ। ସ୍ୱାଧୀନତା ପରେ ଗାନ୍ଧୀ, ଗୋପବନ୍ଧୁ, ରମାଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀଦେବୀଙ୍କ ସହ ଦେଶ ଗଠନରେ ଲାଗି ପଡ଼ିଲେ। ବିଭିନ୍ନ ସମୟରେ ନିଜକୁ ସମର୍ପିତ କରି ସମସ୍ୟା ସହ ଜଡ଼ିତ ରହି, ଏକ ଚିନ୍ତାନାୟକ ଭାବେ ଓଡ଼ିଶାରେ ଏକ ସ୍ୱତନ୍ତ୍ର ସ୍ଥାନ ରଖି ଯାଇଛନ୍ତି। ଓଡ଼ିଶା ଖଦୀ ବୋର୍ଡ ହେଉ, ଉତ୍କଳ ନବଜୀବନ ମଣ୍ଡଳ, ସର୍ବୋଦୟ ମଣ୍ଡଳ, ସମାଜ ରିଲିଫ୍ କାର୍ଯ୍ୟ, ଯେତେବେଳେ ଯେଉଁ କାମ ଆସିଛି ସେଥିରେ ସେ ନିଜକୁ ନିୟୋଜିତ କରିଛନ୍ତି।

୧୯୭୦ ମସିହା ବେଳକୁ ନବରଙ୍ଗପୁର ଜିଲାର ଝରିଗାଁ ଅଞ୍ଚଳରେ ମରୁଡ଼ିର କରାଳଛାୟା ଦେଖା ଦେଇଥିଲା। ଉତ୍କଳ ଗ୍ରାମ ସ୍ୱରାଜ୍ୟ ସଂଘ, ନେଦରଲ୍ୟାଣ୍ଡ ସରକାରଙ୍କ ସହଯୋଗରେ ମରୁଡ଼ି ଅଞ୍ଚଳରେ ପିଇବା ପାଣି ଓ ଜଳସେଚନ କରିବା ପାଇଁ କେତେଗୁଡ଼ିଏ କୂଅ ଖୋଳାଇବାର ଏକ ଯୋଜନା ହାତକୁ ନେଇଥାନ୍ତି। ଜୟୀଭାଇ ସେତେବେଳେ ଉତ୍କଳ ଗ୍ରାମ ସ୍ୱରାଜ୍ୟ ସଂଘର ସମ୍ପାଦକ। ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କୂଅ ଖୋଳା କାମ ଆରମ୍ଭ ହୋଇଥାଏ। ଗ୍ରାମାଞ୍ଚଳରେ ଏହି କାମକୁ ଦେଖିବାକୁ ଜଣେ ଯୁବ ଓଭରସିଅର ଶ୍ରୀ କମଳାକାନ୍ତ ମହାନ୍ତିଙ୍କୁ ଜୟୀଭାଇ ନିଯୁକ୍ତ କରିଥାନ୍ତି ଓ ନିଜେ ବିଜାପୁର କେନ୍ଦ୍ରରେ ରହି ଗାଁମାନଙ୍କରେ ବୁଲି ଗ୍ରାମ କମିଟି ଗଢ଼ି ଗ୍ରାମ ଲୋକଙ୍କର ସହଭାଗୀତାରେ କାମ ଆଗେଇ ଚାଲିଥାଏ। ଏଣୁ ଖୁବ କମ ସମୟ ମଧ୍ୟରେ କୂଅ ଖୋଳା କାମ ଶେଷ ହେଲା। ଅଳ୍ପଦିନ ପରେ ବର୍ଷା ଆସିଯିବ। କୂଅରେ ନନ୍ଦ ନ ଦେଲେ ଭୁଷୁଡ଼ି ପଡ଼ିବ। ଜୟୀଭାଇ ସ୍ଥାନୀୟ ଲୋକମାନଙ୍କ ସଙ୍ଗେ ପରାମର୍ଶ କରି

ଜୟୀଭାଇଙ୍କୁ ପିଲାଦିନରୁ ଖୁବ୍ ପାଖରୁ ଓ ଦୂରରୁ ଦେଖି ଆସିଛି। ଏକ ସାଲିସହୀନ ସଂଗ୍ରାମୀ ଜୀବନ। ବଚନରେ ଦାମ୍ଭିକତା, ଖାଦ୍ୟରେ ପୌଷ୍ଟିକତା, ହସରେ ଆନ୍ତରିକତା, ଲୁଗା ପିନ୍ଧାରେ ସ୍ୱତନ୍ତତା, ସବୁଥିରେ ଥାଆନ୍ତି, କେଉଁଥିରେ ନଥାନ୍ତି ପରି ଜଣେ ମଣିଷ। ସେ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ, ରାଜନେତା, ସର୍ବୋଦୟ କର୍ମୀ, ପ୍ରଶାସକ, ଦେଶ ସେବକ, ଏକ ଦରଦୀ କର୍ମଚଞ୍ଚଳ ବ୍ୟକ୍ତି। ମାଳ ଅପା, କିରଣ ଅପା, ମୋର ବଡ଼ ଭଉଣି ପ୍ରେମ ଅପା, ସମସାମୟିକ, ଏକ ସଙ୍ଗେ ଆଶ୍ରମ ପରିସର ମଧ୍ୟରୁ ଜୀବନ ଗଢ଼ିଥିଲେ। ଜୟୀଭାଇଙ୍କ ସହଧର୍ମିଣୀ ଭାବରେ କିରଣଅପା, ସ୍ୱାଧୀନତା ସଂଗ୍ରାମ ଆଶମ ଜୀବନର ଅନୁଶାସନ, ସମାଜସେବା ଓ ଶେଷରେ ରାଜନୀତିରେ ଯୋଗଦାନ କରି, ଜଣେ ବିଧାନ ସଭା ସଦସ୍ୟ ହୋଇ 'ଭୂଦାନ କନ୍ୟା' ରୂପେ ଗୃହରେ ପରିଚିତ ଥିଲେ। ସମୟ ବଦଳିଯାଏ। ମୂଲ୍ୟବୋଧର ଅବକ୍ଷୟ ହୁଏ। ରାଜନୈତିକ ଜୀବନରେ ଜୁଆର ଓ ଭଟ୍ଟା ଆସେ। ସବୁଥିରେ ପରିବର୍ତ୍ତନ ପରିଲକ୍ଷିତ ହୁଏ। ରାଜନୀତିରେ ମଧ୍ୟ। ଆଜିର ନିର୍ବାଚନ, ନିର୍ବାଚନ ମଣ୍ଡଳୀ, ଭୋଟ ଓ ଭୋଟରଙ୍କ ସଙ୍ଗେ ଲୋକ ପ୍ରତିନିଧିମାନଙ୍କର ଆଚରଣ, ସମ୍ପର୍କ, ବଚନ ବଦ୍ଧତା, ସବୁକିଛିର ଏକ ପରିବର୍ତ୍ତନ ସବୁ ଯେମିତି ଓଲଟ ପାଲଟ। କିରଣଅପା ଓ ଜୟୀଭାଇଙ୍କ ଅମଳର ସେ ରାଜନୀତି ଓ ରାଜନୈତିକ ସ୍ୱଚ୍ଛତା କାହିଁ? ଭୁବନେଶ୍ୱରର ବୁଦ୍ଧନଗରର ସେ ଘର। ବୈଠକ ଖାନା, କେତେ ଆନ୍ତରିକତା, କେତେ ଆଲୋଚନା ଓ ଆତ୍ମବିଶ୍ୱାସର କଥା, ସବୁ ଗୋଟି ଗୋଟି ହୋଇ ମନେ ପଡ଼ିଯାଏ। ବିଶ୍ୱାସ କରି ହୁଏ ନାହିଁ ଯେ ଜୟୀଭାଇ ଆଜି ଆମ ଗହଣରେ ନାହାନ୍ତି ବୋଲି।

ପାରମ୍ପାରିକ କୌଶଳ ଅବଲମ୍ବନ କରି କାଠର ଫ୍ରେମ୍ ତିଆରି କରି କୂଅ ନଦ ରୂପେ ବ୍ୟବହାର କଲେ। କେତେକ ଗାଁରେ ଗୋଳିଆ ପାଣି ବାହାରୁଥିଲା। ଜାମୁ ଗଛର କାଠ ଓ ଛେଳି ବ୍ୟବହାର କରି କୂଅର ପାଣିକୁ ନିର୍ମଳ କରିବାର ଏକ ଅନୁଭୂତି ଗାଁ ଲୋକଙ୍କ ଠାରୁ ମିଳିଲା। ମୁଁ ସେତେବେଳେ ବିଜାପୁରଠାରେ ସମଗ୍ର ବିକାଶ ଯୋଜନାର କାମ ଆରମ୍ଭ କରିଥାଏ। ଜୟୀଭାଇ, ବାଜିଭାଇ, ରବିସିଂ ମାଝି (ପୂର୍ବତନ ମନ୍ତ୍ରୀ)ଙ୍କ ସମେତ ସ୍ଥାନୀୟ କର୍ମୀ ସନ୍ୟାସୀ ମାଝୀ, ପ୍ରହଲ୍ଲାଦ ପୂଜାରୀ, ଲଛମନ ମହନ୍ତ, ବଳି ପୂଜାରୀ, ଧନପତି, ଅମାନତ୍ୟ ଇତ୍ୟାଦି ମାନଙ୍କ ସହ ବିଚାର ଆଲୋଚନା କରି କୂଅ ଖୋଳା କାମ ଆନ୍ତରିକତାର ସହ ଶେଷ ହେଲା। ବଜେଟ୍ ଅନୁପାତରେ କମ୍ ପଇସା ଖର୍ଚ୍ଚ ହୋଇ ଅଧିକ ଗାଁରେ କୂଅ ଖୋଳାଯାଇ ପାରିଥିଲା। ଜୟୀଭାଇ, ସକାଳୁ ନିଜେ ନିତ୍ୟ କର୍ମ ଶେଷ କରି ମାଣ୍ଡିଆ ଜାଉ ଖାଉଥିଲେ ଓ ଆମକୁ ଖୁଆଉଥିଲେ। ତାଙ୍କର ପରାମର୍ଶରେ ଓଭରସିଅର କମଳାକାନ୍ତ ମହାନ୍ତି ଗାଁମାନଙ୍କୁ ସାଇକେଲରେ ଗଲାବେଳେ ମାଣ୍ଡିଆ ପେଜ ନେଇ ଯାଉଥିଲେ। ଫଳରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହେଉ ନଥିଲା।

୧୯୭୧ ମସିହା ଅଗଷ୍ଟ ୧୫ ତାରିଖ ଦିନ ବରୀ ମାତୃମଙ୍ଗଳ କେନ୍ଦ୍ରରେ ମୋର ପୁଅ ଅରବିନ୍ଦର ଜନ୍ମ ହୋଇଥିଲା। ସେତେବେଳେ ବରୀରେ ବଡ଼ ବଢ଼ି। ଠିକ୍ ଦୁଇମାସ ପରେ ବଡ଼ ବାତ୍ୟା ହେଲା। ଉଭୟ ବଢ଼ି ଓ ବାତ୍ୟାରେ ଲୋକଙ୍କର ଧନଜୀବନ ନଷ୍ଟ ହେଲା। ଲୋକେ ଅସହାୟ ହୋଇପଡ଼ିଲେ। ବାତ୍ୟାରେ ଗାଈ ଗୋରୁ ସବୁ ମରିଗଲେ। ନଈ, ନାଳରେ ମଲା ଗୋରୁମାନେ ଭାସୁଥିବାବେଳେ ମାଛମାନେ ମୃତ ପଶୁମାନଙ୍କୁ ଖାଉବାର ଦେଖି ଲୋକେ ମାଛ ଖାଇବାକୁ ଘୃଣା କରୁଥିଲେ। ଗାଈମାନେ ଖାଇବା ଅଭାବରେ କ୍ଷୀର ମଧ୍ୟ ଦେଲେ ନାହିଁ। କ୍ଷୀର ଟୋପାଏ ମିଳିବା ତ କାଠିକର ପାଠ। ରିଲିଫ୍ କାମ ଚାଲିଥାଏ। ଜୟୀଭାଇ, ବରୀ ଯାଇ ଆମ ଘରେ ମୋ ପୁଅର ଅବସ୍ଥା ଦେଖିଲେ। ସେତେବେଳେ ଅମୂଲ କିମ୍ୱା ଅନ୍ୟ ଶିଶୁ ଖାଦ୍ୟ ମିଳିବା କଷ୍ଟ। ଏଣୁ ଜୟୀଭାଇ ଭୁବନେଶ୍ୱରରୁ ବରାବର ମୋ ପୁଅ ପାଇଁ ଅମୂଲ ଡ଼ବା ପଠାଉଥିଲେ। ଅନ୍ୟ ପିଲାମାନଙ୍କ ପାଇଁ ମଧ୍ୟ ଶିଶୁ ଖାଦ୍ୟର ବ୍ୟବସ୍ଥା କରାଗଲା। ବିଭିନ୍ନ ସମସ୍ୟା ମଧ୍ୟରେ ନିଜକୁ ଜଡ଼ିତ କରି ଜୟୀଭାଇ ପରିଣତ ବୟସରେ ଉପନୀତ ହେଲେ। କିରଣ ଅପା ସାଙ୍ଗ ଛାଡ଼ି ଆରପାରିକୁ ଚାଲିଗଲେ। ପୁଅ ତପନ, ଝିଅ ଡ଼ଲି, ଗୌରୀ, ସୁମାଙ୍କ ତତ୍ୱାବଧାନରେ ରହିଲେ। ବଳହଟିଗଲା ଜୀବନ ସଂଗ୍ରାମରେ ପରାସ୍ତ ହୋଇ ଶେଷରେ ପରାଧୀନତାକୁ ସ୍ୱୀକାର କଲେ। ସବୁ ମଣିଷଙ୍କ ପରି।

ଜୟୀଭାଇ ଭୁବନେଶ୍ୱରରେ ଥାଇ ସମସ୍ତଙ୍କ ସଙ୍ଗରେ ସମ୍ପର୍କ ରଖନ୍ତି। ଭଲମନ୍ଦ କଥା ବୁଝନ୍ତି, ପରାମର୍ଶ ଦିଅନ୍ତି। ଉତ୍କଳ ନବଜୀବନ ମଣ୍ଡଳ କାମରେ ହେଉ, ବା ଅନ୍ୟ କାମରେ ହେଉ ସେ କୋରାପୁଟ ଆସନ୍ତି। ସର୍ବୋଦୟ ସମିତି, କୋରାପୁଟର ସେ ଥିଲେ ନିୟାମକ ମଣ୍ଡଳର ସଦସ୍ୟ। ବିଶ୍ୱନାଥ ଆଞ୍ଚା, ବାଜିଭାଇଙ୍କ ପରି ସେ ଥିଲେ ମାର୍ଗଦର୍ଶକ। ସର୍ବୋଦୟ ପରିବାର ଏକ ସଦସ୍ୟ। ଭାଇ ଅକ୍ଷୟ କୁମାର ମହାନ୍ତିଙ୍କର ସେ ଥିଲେ ଶୁଭ ଚିନ୍ତକ ଓ ପରାମର୍ଶଦାତା। କିଛିଦିନ ପୂର୍ବେ ସେ କୋରାପୁଟ ଆସିଥିଲେ, ଏଠାକାର କାମ ସାରି, ମୋ ସଙ୍ଗରେ ଦୁଃଖ ସୁଖ ହେଲେ। 'ନୁମା' ନାମକ ସଙ୍କଳନଟି ଦସ୍ତଖତ କରି ମୋତେ ଦେଲେ। ଟ୍ରେନ ସମୟ ହେବାରୁ ମୁଁ କୋରାପୁଟ ଷ୍ଟେସନକୁ ଛାଡ଼ିଦେବାକୁ ଯାଇଥିଲି। ବାଟରେ ଅନେକ କଥା କହିଲେ। ଟ୍ରେନରେ ବସିଲେ। ଟ୍ରେନ ଛାଡ଼ିଲା। ନମସ୍କାର କଲି। କହିଲେ ଭୁବନେଶ୍ୱର ଆସିବ ....। ସୌଭାଗ୍ୟକ୍ରମେ ତାଙ୍କର ଏକାଦଶାହ ଦିନ ଭୁବନେଶ୍ୱର ଯାଇ ସାମିଲ ହୋଇଥିଲି। ଅନ୍ତିମ ଦର୍ଶନର ଅଭିଳାଷ ମନ ଭିତରେ ସେମିତି ମଉଳି ଝରିପଡ଼ିଥିଲା।

**ଗାନ୍ଧୀନଗର, କୋରାପୁଟ**



ମାଳତୀ ଚୌଧୁରୀଙ୍କ ଶବ ଯାତ୍ରାରେ .....



ଗାନ୍ଧୀବାଦର ବଳିଷ୍ଠ ଦୁଇଟି ସ୍ତମ୍ଭ - ବିଶ୍ୱନାଥ ପଟ୍ଟନାୟକ (ଆଜ୍ଞା)ଙ୍କ ସହିତ




ଭୁବନେଶ୍ୱରସ୍ଥିତ ଲୋହିଆ ଏକାଡ଼େମୀରେ ଉତ୍କଳ ସର୍ବୋଦୟ ମଣ୍ଡଳ ତରଫରୁ ଆୟୋଜିତ ଆଲୋଚନ ଚକ୍ରରେ ସଭାପତିତ୍ୱ କରୁଛନ୍ତି ।



ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ "ସ୍ମୃତି ଓ ଅନୁଭୂତି" ଗ୍ରନ୍ଥର ନୂତନ ପରିବର୍ଦ୍ଧିତ ସଂସ୍କରଣ ଉଦ୍‌ଘାଟନ ଅବସରରେ । ପାର୍ଶ୍ୱରେ ଅଛନ୍ତି ଲେଖକ ଶ୍ରୀ ନୀଳମଣି ରାଉତରାୟ ଓ ପ୍ରଶାସକ ଶ୍ରୀ ବିଘ୍ନରାଜ ପଟେଲ ।

# ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନ ଓ ଅଭିବୃଦ୍ଧିରେ ଜୟକୃଷ୍ଣ ମହାନ୍ତିଙ୍କ ଭୂମିକା

ଶିବରାମ ମିଶ୍ର

ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନ ହେବାର ପୂର୍ବ କଥା। ଉତ୍କଳ ନବଜୀବନ ମଣ୍ଡଳର ଆର୍ଥିକ ସ୍ଥିତି ସୁଧାରିବା ଉଦ୍ଦେଶ୍ୟରେ ଅନ୍ୟୂନ ଏକ ଲକ୍ଷଟଙ୍କାର ଏକ ପାଣ୍ଠି ଗଠନ କରିବା ପାଇଁ ମଣ୍ଡଳର ୧୫.୧୨.୧୯୮୬ ତାରିଖ କାର୍ଯ୍ୟକାରୀ ସମିତି ବୈଠକରେ ନିଷ୍ପତ୍ତି ଗ୍ରହଣ କରାଗଲା। ଏହି ସଂଗୃହୀତ ପାଣ୍ଠିକୁ ନୂମା (ମାଳତୀ ଚୌଧୁରୀ)ଙ୍କ ୨୬.୦୭.୧୯୮୭ ଜନ୍ମ ତିଥିରେ ଥଳିଭେଟି ଆକାରରେ ଦିଆଯିବା ପାଇଁ ଜୟକୃଷ୍ଣ ମହାନ୍ତିଙ୍କ ସଂଯୋଜନାରେ ମାଳତୀ ଚୌଧୁରୀ ଜୟନ୍ତୀ କମିଟି ଗଠନ କରାଗଲା। ଏଥିରେ ମଣ୍ଡଳର କର୍ମୀ ସ୍ୱର୍ଗତ ନଟବର ପ୍ରଧାନ, ସ୍ୱର୍ଗତ ସୀତାବାଳା ଚୁଡୁ, ଶ୍ରୀମତୀ ଧୋବେନ୍ଦ୍ରୀ ମହାପାତ୍ର ଓ ଶ୍ରୀ ଗୋଲକ ଚରଣ ପାତ୍ର ସଦସ୍ୟ ରହିଲେ। ଏହି ନିଷ୍ପତ୍ତି ଏବଂ ଗଠନ କରାଯାଇଥିବା ଜୟନ୍ତୀ କମିଟିକୁ ମଣ୍ଡଳର କାମାକ୍ଷାନଗର ଠାରେ ୨୨.୦୨.୧୯୮୭ ତାରିଖ ଅନୁଷ୍ଠିତ ବାର୍ଷିକ ସାଧାରଣ ଅଧିବେଶନରେ ସର୍ବସମ୍ମତି କ୍ରମେ ଅନୁମୋଦନ କରାଯାଇଥିଲା ଏବଂ ସମସ୍ତ କର୍ମୀ ଓ କର୍ମକର୍ତ୍ତା ନିଜ ନିଜ କ୍ଷେତ୍ରାଞ୍ଚଳରୁ ଅର୍ଥ ସଂଗ୍ରହ କରିବା ପାଇଁ ଦାୟିତ୍ୱ ଗ୍ରହଣ କଲେ। ପରେ ଏହି କମିଟିରେ ଶ୍ରୀ ରବି ସାହୁ, ସ୍ୱର୍ଗତ ଅନିଲ ଘୋଷ, ସ୍ୱର୍ଗତ ଲୋକନାଥ ପ୍ରଧାନ, ସ୍ୱର୍ଗତ ପ୍ରଫୁଲ୍ଲ ଚନ୍ଦ୍ର ସାହୁ, ଶ୍ରୀ ବାଇଧର ସ୍ୱାଇଁ, ଶ୍ରୀ ପ୍ରଫୁଲ୍ଲ କୁମାର ମଲ୍ଲିକ, ସ୍ୱର୍ଗତ କିରଣଲେଖା ମହାନ୍ତି, ଶ୍ରୀମତୀ ମୀରା ଦାସ, ଶ୍ରୀମତୀ ସୌରେନ୍ଦ୍ରୀ ସାହୁ, ଶ୍ରୀ ନାରାୟଣ ଦାସ ଓ ଶ୍ରୀ ପ୍ରହ୍ଲାଦ କୁମାର ସିଂଙ୍କୁ ସଦସ୍ୟ ଭାବେ ଗ୍ରହଣ କରାଗଲା। ଅନ୍ୟୂନ ଏକ ଲକ୍ଷ ଟଙ୍କାର ପାଣ୍ଠି ନୂମାଙ୍କ ଜୟନ୍ତୀ ଅବସରରେ ସଂଗ୍ରହ କରିବା ସମ୍ଭବପର ନହେବାରୁ ଏହି ଥଳିଭେଟି କାର୍ଯ୍ୟକ୍ରମକୁ ବାପି (ନବକୃଷ୍ଣ ଚୌଧୁରୀ)ଙ୍କ ୨୩.୧୧.୧୯୮୭ ତାରିଖ ଜନ୍ମ ତିଥିରେ ସମ୍ପନ୍ନ କରିବା ସ୍ଥିର ହେଲା।

ତା ୨୩.୧୧.୧୯୮୭ ବାପିଙ୍କ ଜନ୍ମଜୟନ୍ତୀ ତଥା ଉତ୍କଳ ନବଜୀବନ ମଣ୍ଡଳର ବାର୍ଷିକ ସାଧାରଣ ଅଧିବେଶନ ଗାନ୍ଧି ଭବନ, ଭୁବନେଶ୍ୱର ଠାରେ ଅନୁଷ୍ଠିତ ହେଲା। ଜୟକୃଷ୍ଣ ମହାନ୍ତିଙ୍କ ଅଧ୍ୟକ୍ଷତା ଓ ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀଙ୍କ ମୁଖ୍ୟ ଆତିଥ୍ୟରେ ପାଳନ ହେଲା ବାପିଙ୍କ ଜୟନ୍ତୀ ଓ ଉଦ୍‌ଘାଟନ ହେଲା ମଣ୍ଡଳର ବାର୍ଷିକ ଅଧିବେଶନ। ଅବସରପ୍ରାପ୍ତ ବିଚାରପତି ସ୍ୱର୍ଗତ ହରିହର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅପରାହ୍ନରେ ଅନୁଷ୍ଠିତ ହେଲା ବହୁ ପ୍ରତିକ୍ଷିତ ଥଳିଭେଟି ସଭା। ଅଭ୍ୟର୍ଥନା ସମିତି ସଭାପତି ସ୍ୱର୍ଗତ ପ୍ରହ୍ଲାଦ ମଲ୍ଲିକଙ୍କ ସହ ଉପସ୍ଥିତ ଥିଲେ ମାନ୍ୟଗଣ୍ୟ ଅତିଥି ସ୍ୱର୍ଗତ ନୀଳମଣି ରାଉତରାୟ, ସ୍ୱର୍ଗତ ଶାନ୍ତନୁ କୁମାର ଦାସ ଓ ମଣ୍ଡଳର କର୍ମୀ ଓ କର୍ମକର୍ତ୍ତା। ସ୍ୱର୍ଗତ ଗୋପୀନାଥ ମହାନ୍ତି ଆଦିବାସୀ ସଙ୍ଗୀତ ଗାନ କରିବା ସହ ସଂଗୃହୀତ ଟ ୧,୧୧,୮୦୭.୫୫ ପଇସାର ଏକ ଥଳି ନୂମାଙ୍କୁ ଅର୍ପଣ କଲେ। ନୂମା ଏହି ଥଳିକୁ ଅତି

ଆନନ୍ଦର ସହ ଗ୍ରହଣ କରିବା ସହ ଏକ ଟ୍ରଷ୍ଟ ଗଠନ କରିବା ପାଇଁ ଜୟୀଭାଇ ଉପରେ ଦାୟିତ୍ୱ ନ୍ୟସ୍ତ କରିଥିଲେ। ମଣ୍ଡଳରେ ତା ୨୩.୦୯.୧୯୮୮ କାର୍ଯ୍ୟକାରୀ ସମିତି ବୈଠକ ନିଷ୍ପତ୍ତି କ୍ରମେ "ମାଳତୀ ଦେବୀ ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ" ଗଠନ କରାଗଲା ଏବଂ ଟ୍ରଷ୍ଟରେ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସମେତ ମଣ୍ଡଳର କର୍ମୀ ଶ୍ରୀମତୀ ଧୋବେନ୍ଦ୍ରୀ ମହାପାତ୍ର, ଶ୍ରୀମତୀ ସୀତାବାଳା ଟୁଡ୍ର, ଶ୍ରୀମତୀ ସବିତା ସାହୁ, ଶ୍ରୀମତୀ ତୁଳସୀ ମୁଣ୍ଡା, ଶ୍ରୀ ନଟବର ପ୍ରଧାନ, ଶ୍ରୀ ଗୋଲକ ଚରଣ ପାତ୍ର, ଶ୍ରୀ ସର୍ବେଶ୍ୱର ନାୟକ, ଶ୍ରୀ ବଂଶୀଧର ମଲ୍ଲିକ, ଶ୍ରୀ ଦେବରାଜ ସାହୁ, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଶ୍ରୀମତୀ ସୁମିତ୍ରା ଚୌଧୁରୀ, ଶ୍ରୀ ରବି ସାହୁ, ଶ୍ରୀ ଗୁରୁ ମହାନ୍ତି, ଶ୍ରୀ ଅନିଲ୍ କୁମାର ଘୋଷ ଓ ଶ୍ରୀ ଜୟକୃଷ୍ଣ ମହାନ୍ତି ସଦସ୍ୟ ରହିଲେ। ନୂମାଙ୍କ ଇଚ୍ଛାମତେ ଏହାର ସଦସ୍ୟତା ପାଇଁ ଏକ ତାଲିକା ପ୍ରସ୍ତୁତ କରାଯାଇ ସେମାନଙ୍କର ସ୍ୱୀକୃତି ମଗାଯାଇଥିଲା ଏବଂ ପରେ ସେମାନଙ୍କ ମଧ୍ୟରୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ, ଶ୍ରୀ ବାବୁ ଭାଇ ପଟେଲ, ଶ୍ରୀ ରବିନ୍ଦ୍ର ମୋହନ ଦାସ, ଶ୍ରୀ ପଦ୍ମଚରଣ ସାମନ୍ତ ସିଂହାର, ଶ୍ରୀ ଯୁଗଳ କିଶୋର ପାଣିଗ୍ରାହୀ, ଶ୍ରୀମତୀ ରାଧାମଣି ସାହୁ, ଶ୍ରୀ କୃଷ୍ଣଚନ୍ଦ୍ର ବକ୍ସିପାତ୍ର, ଶ୍ରୀ ପ୍ରହଲାଦ କୁମାର ସିଂହ, ଶ୍ରୀ ଗୋପିନାଥ ମହାନ୍ତି, ଶ୍ରୀ ପ୍ରହଲାଦ ମଲ୍ଲିକ, ଡ଼ା. ସରସ୍ୱତୀ ସ୍ୱାଇଁ ଓ ଶ୍ରୀ ଧନଞ୍ଜୟ ମହାନ୍ତିଙ୍କୁ ଟ୍ରଷ୍ଟର ସଦସ୍ୟ ଭାବେ ଗ୍ରହଣ କରାଯାଇଥିଲା। ଶ୍ରୀ ଜୟକୃଷ୍ଣ ମହାନ୍ତି ଟ୍ରଷ୍ଟର ପ୍ରଥମ ଅଧ୍ୟକ୍ଷ ହେବା ସହ ଶ୍ରୀ ବାବୁଲାଲ ପଟେଲ ଉପାଧ୍ୟକ୍ଷ ଓ ଶ୍ରୀ ଦେବରାଜ ସାହୁ ସମ୍ପାଦକ ଭାବେ ନିର୍ବାଚିତ ହୋଇଥିଲେ। ଏହାର ଗୋଟିଏ ବର୍ଷ ପରେ ଶ୍ରୀ ରବିନ୍ଦ୍ର ମୋହନ ଦାସ ଚେୟାରମ୍ୟାନ ଦାୟିତ୍ୱ ଗ୍ରହଣ କରିବା ସହ ଶ୍ରୀ ଜୟକୃଷ୍ଣ ମହାନ୍ତି ସମ୍ପାଦକ ଭାବେ ନିର୍ବାଚିତ ହେଲେ।

ଇତ୍ୟବସରରେ ଟ୍ରଷ୍ଟ ତା ୨୯.୦୩.୧୯୮୯ ରିଖ ଦିନ ରେଜିଷ୍ଟ୍ରିଭୁକ୍ତ ହୋଇଥିଲା। ମୂଳ ଥଳିଭେଟି ପାଣ୍ଠିରେ ମହିଳା ଓ ଶିଶୁକଲ୍ୟାଣ କାର୍ଯ୍ୟରେ ଉଲ୍ଲେଖନୀୟ ଅବଦାନ ପାଇଁ ପାଇଥିବା ଯମୁନାଲାଲ ବଜାଜ ଫାଉଣ୍ଡେସନଙ୍କ ପ୍ରଦତ୍ତ ଏକ ଲକ୍ଷ ଟଙ୍କାର ପୁରସ୍କାର ରାଶିକୁ ନୂମା ଟ୍ରଷ୍ଟ ପାଣ୍ଠିକୁ ଦାନ କରିଥିଲେ। ନୂମା ଟ୍ରଷ୍ଟ ବୋର୍ଡର ସଦସ୍ୟମାନଙ୍କ ହାତରେ ଏହି ପାଣ୍ଠିକୁ ସମର୍ପଣ କରି ଆଶା ଓ ଅନୁରୋଧ କରିଥିଲେ ଯେ ସମସ୍ତେ ମିଶି ପ୍ରତିବର୍ଷ କିଛି କିଛି ଅର୍ଥ ସଂଗ୍ରହ କରି ଏହି ପାଣ୍ଠିକୁ ପରିପୁଷ୍ଟ କରିବେ ଏବଂ ଗରିବ, ଆଦିବାସୀ ହରିଜନ ଆଦି ଅବହେଳିତ ଜନଗଣଙ୍କ ସେବାରେ ସମର୍ପିତ ଉତ୍କଳ ନବଜୀବନ ମଣ୍ଡଳ ଅନୁଷ୍ଠାନଟିକୁ ଭାରତ ସେବକ ସମାଜ/ଲୋକସେବକ ମଣ୍ଡଳ ଭଳି ଆର୍ଥିକ ଦୃଢ଼ଭିତ୍ତି ଉପରେ ପ୍ରତିଷ୍ଠିତ ଏକ ସ୍ୱାବଲମ୍ବୀ ଅନୁଷ୍ଠାନ ଭାବେ ଠିଆ କରାଇବେ।

ଟ୍ରଷ୍ଟର ଅଧ୍ୟକ୍ଷ ଶ୍ରୀ ରବିନ୍ଦ୍ର ମୋହନ ଦାସ ଅସୁସ୍ଥତା ବଶତଃ ଟ୍ରଷ୍ଟ ବୈଠକ ମାନଙ୍କରେ ଯୋଗଦେବା ସମ୍ଭବ ନହେବାରୁ ତାଙ୍କୁ ସମ୍ମାନ ଜଣାଇ ତାଙ୍କ ନିବାସସ୍ଥାଳ ବାଲେଶ୍ୱରଠାରେ ବାପିଙ୍କ ଜୟନ୍ତୀ ଅବସରରେ ତା ୨୩.୧୧.୨୦୦୫ରେ ଟ୍ରଷ୍ଟର ୧୮ତମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଲା। ଏହି ବୈଠକରେ ସର୍ବସମ୍ମତକ୍ରମେ ଜୟୀଭାଇଙ୍କୁ ଟ୍ରଷ୍ଟର ଅଧ୍ୟକ୍ଷ, ଶ୍ରୀ ଭବାନୀ ଚରଣ ପଟ୍ଟନାୟକଙ୍କୁ ଉପାଧ୍ୟକ୍ଷ ଓ ଶ୍ରୀ ଶିବରାମ ମିଶ୍ରଙ୍କୁ ସମ୍ପାଦକ ଭାବେ ନିର୍ବାଚିତ କରାଯାଇଥିଲା। ଜୟୀଭାଇ ତାଙ୍କର ଏହି ଦାୟିତ୍ୱକୁ ଜୀବନର ଶେଷ ପର୍ଯ୍ୟନ୍ତ ନିଷ୍ଠାର ସହ ତୁଲାଇଥିଲେ।

ଟ୍ରଷ୍ଟ ବୋର୍ଡର ବିଧାନମତେ ଏହାର ସମସ୍ତ ସମ୍ପତ୍ତି ଏବଂ ସମ୍ପତ୍ତିର ରକ୍ଷଣାବେକ୍ଷଣ ଦାୟିତ୍ୱ ଏକ ଛଅଜଣିଆ ହୋଲଡ଼ିଂଟ୍ରଷ୍ଟି ମାନଙ୍କଠାରେ ନ୍ୟସ୍ତ କରାଯାଇଛି।

ଜୟୀଭାଇ ଟ୍ରଷ୍ଟର ହୋଲଡ଼ିଂ ଟ୍ରଷ୍ଟି ଭାବେ ପ୍ରଥମରୁ ଜୀବନର ଶେଷ ପର୍ଯ୍ୟନ୍ତ ଏହାର ମୁଖ୍ୟଭାବେ ରହି ପାଣ୍ଠି ସଂଗ୍ରହ ଦାୟିତ୍ୱ ବହନ କରିଥିଲେ। ଆଜି ଟ୍ରଷ୍ଟର ଯେଉଁ ଅଭିବୃଦ୍ଧି ହୋଇଛି ତାହା କେବଳ ଜୟୀଭାଇଙ୍କ ନିଷ୍ଠା ଓ ଉଦ୍ୟମ ଦ୍ୱାରା ହିଁ ସମ୍ଭବ ହୋଇ ପାରିଛି।

ଟ୍ରଷ୍ଟ ପାଣ୍ଠି କିପରି ବୃଦ୍ଧିହେବ, ଏହି ଚିନ୍ତା ସବୁବେଳେ ଜୟୀଭାଇଙ୍କୁ ବ୍ୟାକୁଳ କରୁଥିଲା। ମୂଳପାଣ୍ଠି ବୃଦ୍ଧିପାଇ ଦଶଲକ୍ଷ ଟଙ୍କାରେ ପହଁଚିବ, ଟ୍ରଷ୍ଟ ପାଣ୍ଠିକୁ କେଉଁ ବ୍ୟାଙ୍କ/ଅର୍ଥଲଗାଣ ସଂସ୍ଥାରେ ବିନିଯୋଗ କଲେ ଅଧିକ ସୁଧ ମିଳିବ, ବିନିଯୋଗ ହୋଇଥିବା କମ୍ ସୁଧହାରର ସ୍ଥାୟୀ ଜମାକୁ ଉଠାଇଆଣି ନୂତନ ଅଧିକ ସୁଧ ଯୋଜନାରେ ବିନିଯୋଗ କରାଯିବ ଏଥିଲା ଜୟୀଭାଇଙ୍କ ସବୁଦିନର ଚିନ୍ତା। ଏପରିକି ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଏ ବ୍ୟାକୁଳତା ଲାଗିରହିଥିଲା। ତା ୦୬.୦୭.୨୦୦୮ ରିଖ ଟ୍ରଷ୍ଟ ବୈଠକ ପରର କଥା, ହଠାତ୍ ତପନ ବାବୁଙ୍କଠାରୁ ଖବର ମିଳିଲା ଜୟୀଭାଇ ଅସୁସ୍ଥ ଓ ନର୍ସିଂହୋମରେ ଚିକିତ୍ସାପାଇଁ ଭର୍ତ୍ତି ହୋଇଛନ୍ତି। ନର୍ସିଂହୋମରେ ପହଞ୍ଚି ଦେଖାକଲି। ଏକାନ୍ତରେ ମୋ ସହିତ କିଛି କଥା ହେବାପାଇଁ ଡ଼ଲିଅପାଙ୍କ ଦ୍ୱାରା ଡ଼କାଇଲେ ଓ ଅନ୍ୟମାନଙ୍କୁ ସେଠାରୁ ଚାଲିଯିବାକୁ କହିଲେ। ଏକାନ୍ତରେ ଆଉକିଛି ଅନ୍ୟକଥା ନଥିଲା କେବଳ ଥିଲା ଟ୍ରଷ୍ଟ ପାଣ୍ଠି କେମିତି ବଢ଼ିବ, ବ୍ୟାଙ୍କ ଜମା ଖାତାରେ ପଡ଼ିରହିଥିବା ଟଙ୍କା କେମିତି ଅଧିକ ସୁଧରେ ସ୍ଥାୟୀ ଜମାରେ ବିନିଯୋଗ ହେବ। ଦଶ ଲକ୍ଷ ଟଙ୍କା କେମିତି ପୂରଣ ହେବା ସହ ଟ୍ରଷ୍ଟ ପରିଚାଳନାରେ ଯେମିତି କିଛି ବ୍ୟତିକ୍ରମ ନହେବ ସେଥିପାଇଁ କିଛି ଉପଦେଶ ଓ ମାର୍ଗଦର୍ଶନ। ଏମିତି ଏକ ସମୟରେ ଜୟୀଭାଇଙ୍କର ଏ ଚିନ୍ତା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲା। ଏ ଥିଲା ଟ୍ରଷ୍ଟ ପାଇଁ ଜୟୀଭାଇଙ୍କ ଶେଷ ଦରଦ, ପରାମର୍ଶ ଓ ମାର୍ଗଦର୍ଶନ। ଜୟୀଭାଇଙ୍କର ଶେଷ ଆଶା ପୂରଣ ହୋଇଛି। ଦଶ ଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱ ଟ୍ରଷ୍ଟ ପାଣ୍ଠିର ରାଶିକୁ ଉତ୍ତର ପିଢ଼ୀ ହାତକୁ ଟେକି ଦେଇ ଜୟୀଭାଇ ଯେଉଁ ନିଷ୍ଠାପର ମହନୀୟତା ଦେଖାଇ ଯାଇଛନ୍ତି ତାହା ସବୁଦିନ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିବ। ଜୟୀଭାଇ ଟ୍ରଷ୍ଟର ଉତ୍ତରୋତ୍ତର ସମୃଦ୍ଧି ପାଇଁ ଆରପୁରରେ ରହି ଆଶୀର୍ବାଦ କରନ୍ତୁ ଏହାହିଁ କାମନା।

**ସମ୍ପାଦକ**

**ମାଳତୀଦେବୀ ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ।**

●●

**କୌଣସି ଲୋକର ଅନ୍ଧ ଭକ୍ତ ହେବା ଯେତିକି ଭୁଲ, ଆଉ କାହାରି ଅନ୍ଧ ନିନ୍ଦୁକ ହେବା ସେତିକି ଭୁଲ୍। ପରିସ୍ଥିତି ବଦଳିବା ସାଙ୍ଗେ ସାଙ୍ଗେ ବ୍ୟକ୍ତି ମଧ୍ୟ ବଦଳିଯାଏ। ପରିସ୍ଥିତି ବାହାର ଚାପରେ ହେଉ ବା ଭିତର ପ୍ରଭାବରେ ହେଉ - ଯେ ଯାହା ସେ ତାହା ଏକଥା ସତ୍ୟ ହୋଇଥିଲେ, ସମାଜ, ଦେଶ, ଦୁନିଆ ବଦଳୁଥାନ୍ତା। ସବୁ ମିଶି କରି ବଦଳୁଛି ଆମେ ମାନୁଛୁ। କିନ୍ତୁ ବ୍ୟକ୍ତି ବଦଳିବା କଥା ସହଜରେ ମାନୁନାହିଁ।**

**- ନବକୃଷ୍ଣ ଚୌଧୁରୀ**

# ଅନନ୍ୟ ଜନସେବୀ, ପ୍ରତିଭାଶାଳୀ ନେତା ସ୍ୱର୍ଗତ ଜୟକୃଷ୍ଣ

**ନିଶାକର ଦାସ**

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସୁଦକ୍ଷ ରାଜନୀତିଜ୍ଞ, ପ୍ରତୀଭାଶାଳୀ ସର୍ବୋଦୟ ନେତା ତଥା ଓଡ଼ିଶାର ଜଣେ ସଚ୍ଚା ସମାଜସେବୀ ସ୍ୱର୍ଗତଃ ଜୟକୃଷ୍ଣ ମହାନ୍ତିଙ୍କୁ ମୁଁ ୧୯୫୫ ମସିହା ପୁରୀ ସର୍ବୋଦୟ ସମ୍ମିଳନୀ ଏବଂ ଏହା ପୂର୍ବରୁ ବରୀ, ରାମଚନ୍ଦ୍ରପୁର, ଅନୁଗୁଳ, କଟକ ଓ କୋରାପୁଟ ପ୍ରଭୃତି ବିଭିନ୍ନ ସ୍ଥାନମାନଙ୍କରେ ଜଣେ ସକ୍ରୀୟ, ଟାଣୁଆ ତଥା ଆଗଧାଡ଼ିର ସମାଜସେବୀ ଭାବେ ଅତି ନିକଟରୁ ଜାଣିଛି। ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନ କୋରାପୁଟରେ ବ୍ୟାପକ ଭାବେ ଚାଲିଥିବା ବେଳେ ତାଙ୍କର ନୁମା ଓ ବାପାଙ୍କ ସହ ନିବିଡ଼ ସମ୍ପର୍କ ଦେଖିବାକୁ ମିଳିଥିଲା। ସେ ଦୁହେଁ ଜୟକୃଷ୍ଣ ବାବୁ, କିରଣ ଅପାଙ୍କୁ ନିଜର ପୁଅ ଓ ଝିଅ ଠାରୁ ଅଧିକ ସ୍ନେହ, ଶ୍ରଦ୍ଧା କରୁଥିଲେ। ଜୟକୃଷ୍ଣବାବୁଙ୍କ ବିଚାର, ପରାମର୍ଶ ଓ ନିଷ୍ପତ୍ତିରେ ଏତେ ଦୃଢ଼ତା ଥାଏ ଯେ ନୁମା, ବାପୀ ଯେ କୌଣସି କଠିନ କାମରେ ତଥା ଜଟିଳ ପରିସ୍ଥିତିରେ ତାଙ୍କର ସହଯୋଗ ଲୋଡ଼ିଥାନ୍ତି। ମା ରମାଦେବୀ, ପୂଜ୍ୟ ଗୋପ ବାବୁ, ବୁଲୁଭାଇ ପ୍ରଭୃତି ଓଡ଼ିଶାର ବିଶିଷ୍ଟ ସର୍ବୋଦୟ ନେତାମାନେ ମଧ ଜୟୀବାବୁଙ୍କ ବିଚାରଧାରା, ପରାମର୍ଶ ତଥା ମାର୍ଗଦର୍ଶନକୁ ସବୁବେଳେ ସମ୍ମାନ ଦେଉଥିଲେ।

ନବଜୀବନ ମଣ୍ଡଳର ସଭାପତି ଭାବେ ଜୟୀବାବୁ ଓଡ଼ିଶାର ବିଭିନ୍ନ ଆଦିବାସୀ ବହୁଳ ଅଞ୍ଚଳ ଯଥା ଗଞ୍ଜାମ, କୋରାପୁଟ, ଫୁଲବାଣୀ ପ୍ରଭୃତି ଅଞ୍ଚଳରେ କାମ କରୁଥିବା କର୍ମୀମାନଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲେ। ଆଦିବାସୀ, ହରିଜନ ଓ ଦୁର୍ବଳ ଶ୍ରେଣୀର ଲୋକଙ୍କ ଉପରେ ହେଉଥିବା ଅନ୍ୟାୟ, ଅତ୍ୟାଚାରର ଦୃଢ଼ ପ୍ରତିରୋଧ କରିବା ପାଇଁ ମଣ୍ଡଳର କର୍ମୀମାନଙ୍କୁ ସେ ନୈତିକ ସାହସ ଓ ବଳ ଯୋଗାଇ ଦେଉଥିଲେ। କୌଣସି ଅଞ୍ଚଳରେ ଆଦିବାସୀ, ହରିଜନମାନଙ୍କ ଉପରେ ଅନ୍ୟାୟ, ଶୋଷଣ ଓ ଅତ୍ୟାଚାର ସମ୍ପର୍କିତ ଖବର ମଣ୍ଡଳର କର୍ମୀଙ୍କ ଠାରୁ ଚିଠି ମାଧମରେ କିମ୍ବା ଅନ୍ୟ ସୂତ୍ରରୁ ପାଇବା ସାଙ୍ଗେ ସାଙ୍ଗେ ମାଳତୀଦେବୀ, ନବବାବୁ ଏବଂ ଜୟୀବାବୁ ମିଶି ସାଙ୍ଗେ ସାଙ୍ଗେ ସେଠାରେ ପହଞ୍ଚି ଯାଉଥିଲେ। ଏହା କର୍ମୀମାନଙ୍କର ମନୋବଳ ଯେ ବଢ଼ାଉଥିଲା ତାହା ନୁହେଁ ସାହୁକାର, ଶୋଷଣକାରୀ ସରକାରୀ କର୍ମଚାରୀ କିମ୍ବା ସେହି ଗୋଷ୍ଠୀର ଲୋକମାନେ ସେଥିପାଇଁ ଭୀତତ୍ରସ୍ତ ହୋଇଯାଉଥିଲେ। ମୁଁ ବହୁବର୍ଷ ଧରି ନବଜୀବନ ମଣ୍ଡଳର ଜଣେ ସକ୍ରୀୟ କର୍ମୀ ଭାବେ ଅନେକ ଘଟଣାରେ ଏହା ଅନ୍ଗେ ଲିଭାଇଛି। ଏ ସମସ୍ତ ଘଟଣାର ଉଲ୍ଲେଖ ଏ କ୍ଷୁଦ୍ରଲେଖା ମାଧମରେ ସମ୍ଭବପର ନୁହେଁ।

ଯେଉଁ କେତେଜଣ ନିଷ୍ଠାପର ଭାବେ ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ କରି ଓଡ଼ିଶାରେ ଭୂଦାନ ଓ ସର୍ବୋଦୟ ଆନ୍ଦୋଳନକୁ ନେତୃତ୍ୱ ଦେଇ ବଞ୍ଚାଇ ରଖିଥିଲେ, ଜୟକୃଷ୍ଣ ବାବୁ ସେମାନଙ୍କ ମଧରେ ଜଣେ ଆଗଧାଡ଼ିର ବ୍ୟକ୍ତିତ୍ୱ ଥିଲେ। ୧୯୭୫ ମସିହାରେ ଓଡ଼ିଶା ଖଦୀ ଓ

ଗ୍ରାମୋଦ୍ୟୋଗ ବୋର୍ଡର ସଭାପତି ପଦ ଅଳଙ୍କୃତ କରି ସେ ତାଙ୍କର ସ୍ୱଳ୍ପ କିଛି ବର୍ଷର କାର୍ଯ୍ୟକାଳ ମଧ୍ୟରେ ରୁଗ୍‌ଣ ଖଦୀ ଗ୍ରାମୋଦ୍ୟୋଗ ଶିଳ୍ପରେ ନୂତନ ଜୀବନ ଦେଇ ପାରିଥିଲେ। ସୂତାକଟା, ଲୁଗାବୁଣା, କୁଟୀର ଶିଳ୍ପ ପ୍ରଭୃତି କ୍ଷେତ୍ରରେ ଅନେକ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିବା ଯୋଗୁଁ ତାଙ୍କ କାର୍ଯ୍ୟକାଳକୁ ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡର ସୁବର୍ଣ୍ଣଯୁଗ ଆଖ୍ୟା ଦିଆଯାଇଥାଏ। କେବଳ ସେତିକି ନୁହେଁ କିଛି ବର୍ଷ ପାଇଁ ସେ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ପ୍ରଶାସନିକ ଅଧିକାରୀ ତଥା ଉପସଭାପତି ଦାୟିତ୍ୱ ନେଇ ଭୂଦାନ, ଗ୍ରାମଦାନ ଓ ଜମି ସଂଗ୍ରହ ଓ ବଣ୍ଟନ ପ୍ରଭୃତି କାର୍ଯ୍ୟକୁ ଅତି ନିଷ୍ଠାର ସହିତ ଖୁବ୍ ବ୍ୟବସ୍ଥିତ ଢ଼ଙ୍ଗରେ କରିପାରିଥିଲେ। ତାଙ୍କର କାର୍ଯ୍ୟଧାରାର ଚମତ୍କାରୀତା ଅନୁଷ୍ଠାନମାନଙ୍କରେ ନୂତନ ଉଦ୍ଦୀପନା ସୃଷ୍ଟି କରୁଥିଲା।

ଜରୁରୀକାଳୀନ ପରିସ୍ଥିତି ପରେ ଓଡ଼ିଶା ସରକାର କ୍ଷୁବ୍ଧ ହୋଇ ଉତ୍କଳ ନବଜୀବନ ମଣ୍ଡଳକୁ ସମସ୍ତ ଗ୍ରାଣ୍ଟ ବନ୍ଦ କରିଦେଲେ। ଏଥିରେ କର୍ମୀମାନଙ୍କ ମଧ୍ୟରେ ନୈରାଶ୍ୟ ଖେଳିଗଲା ଓ ସେମାନଙ୍କର ବେତନ ପାଇବା ମଧ୍ୟ ସମ୍ଭବପର ହେଲାନାହିଁ। ଏଥିରେ ବିଚଳିତ ନହୋଇ ଜୟକୃଷ୍ଣବାବୁ ତୂରନ୍ତ ମଣ୍ଡଳର ଜରୁରୀ ବୈଠକ ଡକାଇ ବିଭିନ୍ନ ସୂତ୍ରରୁ ଅର୍ଥ ସଂଗ୍ରହ କରି ବ୍ୟାଙ୍କରେ ସ୍ଥାୟୀଜମା କରି ରଖିବା ଓ ତା ସୁଧରୁ କର୍ମୀମାନଙ୍କୁ କିଛି ପାରିଶ୍ରମିକ ଦେବାର ପ୍ରସ୍ତାବ ରଖିଲେ। ମଣ୍ଡଳର ବିଭିନ୍ନ ସ୍ଥାନମାନଙ୍କରେ ରହିଥିବା ଘର ଓ ଜମିବାଡ଼ି କେତେଜଣ ସ୍ୱାର୍ଥପର କର୍ମୀଙ୍କ ବ୍ୟକ୍ତିଗତ ମାଲିକାନା ପାଲଟି ଯାଇଥିଲା ଓ ସେମାନେ ସେସବୁକୁ ଯୋର ଜବରଦସ୍ତ ନିଜ ଅକ୍ତିଆରରେ ରଖିଥିଲେ। ଜୟକୃଷ୍ଣ ବାବୁ ଅତି ନିର୍ଭୀକ ଭାବେ ଏମାନଙ୍କ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ଗ୍ରହଣ କଲେ ଏବଂ କୋର୍ଟରେ ସେମାନଙ୍କ ବିରୁଦ୍ଧରେ କେଶ୍ କରି ସେସବୁ ସମ୍ପତ୍ତି ନବଜୀବନ ମଣ୍ଡଳକୁ ଫେରାଇ ଆଣିପାରିଥିଲେ। ସମୟକ୍ରମେ ସେହିପରି କେତେକ ସ୍ଥାନରେ ଥିବା ମଣ୍ଡଳର ସମ୍ପତ୍ତି ବିକ୍ରୀକରି ମଣ୍ଡଳର ସ୍ଥାୟୀ ପାଣ୍ଠିକୁ ଦୃଢ଼ କରିବାର ଶ୍ରେୟ କେବଳ ଜୟକୃଷ୍ଣ ବାବୁଙ୍କର ହିଁ ଥିଲା।

ଜୟକୃଷ୍ଣ ବାବୁ ଓଡ଼ିଶାର ଆଦିବାସୀ ହରିଜନ ଓ ହଜାର ହଜାର ଦୁଃଖିରଙ୍କିଙ୍କର ଜଣେ ପରମ ବନ୍ଧୁ ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ। ଚିନ୍ତାରେ ସ୍ୱଚ୍ଛତା, କାର୍ଯ୍ୟଧାରାରେ ଦୃଢ଼ତା ତଥା ବ୍ୟକ୍ତିଗତ ଜୀବନରେ ମହାନତା ତାଙ୍କୁ ବିରଳ ବ୍ୟକ୍ତିର ମର୍ଯ୍ୟାଦା ଦେଇ ପାରିଥିଲା। ସେ ଥିଲେ ମାନବିକତାର ଗୋଟିଏ ଅଭୁଲା ପ୍ରତୀକ, ନିଷ୍ଠା, ସରଳତା ଓ ପ୍ରାଣ ପ୍ରାଚୁର୍ଯ୍ୟର ଜ୍ୱଳନ୍ତ ଉଦାହରଣ। ତାଙ୍କ ଅମର ଆତ୍ମାକୁ ମୋର ଶହ ଶହ ପ୍ରଣାମ।

କୁଲୁବିରି ଆଶ୍ରମ, କୋରାପୁଟ

●●

# ଜୟୀବାବୁଙ୍କ ସମ୍ବନ୍ଧେ ପଦେ

**ଶ୍ରୀଭାଇ (କଂଗ୍ରେସ ଭାଇ)**

"ଶ୍ରୀଭାଇ! ଆପଣ ସଚ୍ଚା ସେବକ ବିଶ୍ୱନାଥ ଭାଇ (ବିଶ୍ୱନାଥ ପଟ୍ଟନାୟକ) ବାଲିଗୁଡ଼ାଙ୍କର ଜଣେ ଅନ୍ତରଙ୍ଗ ଶିଷ୍ୟ। ପ୍ରିୟ ଅନୁଗାମୀ। ଆପଣଙ୍କ ଉପରେ ତାଙ୍କର ବିଶ୍ୱାସ ରହିଛି। ଆମେ (ଆପଣ, ମୁଁ, ବିଶ୍ୱନାଥ ଭାଇଙ୍କ ସାଙ୍ଗକୁ ସାରା ଭାରତର ସମସ୍ତ ସର୍ବୋଦୟ କର୍ମୀ, କାର୍ଯ୍ୟକର୍ତ୍ତା ଆଦି...) ଏକ ବିଶାଳ ସେବା ପରିବାରର ଲୋକ। ଏଣୁ ପରସ୍ପର ପରସ୍ପରର ସୁଖ-ଦୁଃଖ ଅଭାବ-ଅସୁବିଧା ସମୟରେ ଯଥା ସମ୍ଭବ ସହଯୋଗୀ, ସହଭାଗୀ ହେବା ଉଚିତ ମନେ ହୁଏ। ଏ ଦୃଷ୍ଟିକୋଣରୁ ଗତ କେତେଦିନ ହେଲା ଆପଣଙ୍କ ବିଷୟରେ ମୁଁ ଗୋଟିଏ କଥା ଚିନ୍ତା କରି ଆସୁଛି। ମାତ୍ର ଆପଣ ଅନ୍ୟାନ୍ୟ ଏନ୍.ଜି.ଓ.ର କାର୍ଯ୍ୟକର୍ତ୍ତା ଭଳି ଦେଶୀ, ବିଦେଶୀ ଦାତା ସଂସ୍ଥାର ଅନୁଦାନକୁ ହିଁ ସର୍ବସ୍ୱ ନ ମଣି ନାନା ଅଭାବ-ଅନାଟନ ମଧ୍ୟରେ ମଧ୍ୟ ସ୍ୱକୀୟ ଉଦ୍ୟମରେ ନିଜର ସେବାର ଡଙ୍ଗାଟିକୁ ସ୍ୱାଭିମାନର ସହ ଚଳାଇ ରଖି ସର୍ବୋଦୟ ବିଚାରକୁ ପ୍ରାଧାନ୍ୟ ଦେଇ ଆସୁଛନ୍ତି। ଏଣୁ ମୁଁ ଭାବୁଥିବା କଥାଟିକୁ ଆପଣଙ୍କ ଆଗରେ କହିବାକୁ ସାହସ କରି ପାରୁ ନାହିଁ। ସଙ୍କୋଚ ବୋଧ କରୁଛି। ତଥାପି, ଆପଣ ଯଦି କିଛି ନ ଭାବନ୍ତି ତେବେ ମୁଁ ମୋ ମନ କଥାଟି କହିବି ବୋଲି ଭାବୁଛି। ଏଥିପାଇଁ ଅନ୍ୟଥା ବୁଝିବେ ନାହିଁ। ମୋ ମନ କଥା ପ୍ରକାଶ କରିବା ପାଇଁ ଆପଣଙ୍କ ଅନୁମତି ଲୋଡ଼ୁଛି।" - ଏ କଥାଟି ସେଦିନ ବୁଦ୍ଧ ପୂର୍ଣ୍ଣିମା, ବନବାସୀ ସେବା ସମିତି, ବାଲିଗୁଡ଼ା (କନ୍ଧମାଳ)ର ବାର୍ଷିକ ଉତ୍ସବ ଅବସରରେ ଉପର ମହଲା ଅତିଥି ଭବନରୁ ତଳକୁ ଓହ୍ଲାଇ ଆସିଲା ବେଳେ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ ନେତା, ବିଧାୟକ ୰ଜୟକୃଷ୍ଣ ମହାନ୍ତି ମୋତେ କହିଥିଲେ।

ମୁଁ ଜୟକୃଷ୍ଣ ବାବୁଙ୍କୁ ତାଙ୍କ ମନ କଥା ମୋତେ ଖୋଲି କହିବାକୁ କହିଲି। ସେ ମୋତେ କହିଲେ ଯେ ମୁଁ ମାତ୍ର ଅଳ୍ପ କେଇଜଣ ଅନାଥ ଶିଶୁଙ୍କ ପାଇଁ ସରକାରୀ ସାହାଯ୍ୟ ଗ୍ରହଣ କରୁଥିଲେ ହେଁ ମୟୂରଭଞ୍ଜ, କେଉଁଝର ଜିଲ୍ଲାର ଶହଶହ ବିଦ୍ୟାର୍ଥୀଙ୍କ ମଧ୍ୟରେ ଶିକ୍ଷାର ଆଲୋକ ଜାଳିବାକୁ, ବିଭିନ୍ନ ଧର୍ମ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବ ସ୍ଥାପନ ସକାଶେ, ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କୁ ନେଇ ମାନବ ଧର୍ମ ସମ୍ମିଳନୀ, ମହିଳା ଜାଗରଣ, ନିଶା ନିବାରଣ, ବିନୋବା ପ୍ରଦର୍ଶିତ ପଥରେ ଗ୍ରାମପାଣ୍ଠି ଗଠନ ପାଇଁ ଚେଷ୍ଟା ଅବ୍ୟାହତ ରଖିଛି। ଏଣୁ ମୋ ସେବା ପାଇଁ ସେ ଗୁଣ୍ଡୁଚି ମୂଷା ଭଳି ବାଲି ଝାଡ଼ିବାକୁ ଚାହୁଁଛନ୍ତି। ଏଣୁ ମୁଁ ଅନୁମତି ଦେଲେ ସେ ମୋତେ ତାଙ୍କ ପେନ୍‌ସନରୁ ଯତ୍‌ସାମାନ୍ୟ ଧାରାବାହିକ ସେବା ଦେବେ ବୋଲି ପ୍ରକାଶ କଲେ। ମୁଁ ଅଡୁଆରେ ପଡ଼ିଗଲି। ମୋ ନୀରବ ସ୍ଥିତିକୁ ଅନୁଭବ କରି ମୋ ସେବାର ଅନ୍ୟତମ ଗୁରୁ ଯମୁନାଲାଲ ବଜାଜ୍ ପୁରସ୍କାର ବିଜେତା ପୂଜ୍ୟ ବିଶ୍ୱନାଥ ଆଜ୍ଞା ମୁଁ ମୋ ପାଇଁ ନ ହେଲେ ବି ସମାଜ ପାଇଁ ସେହି ସ୍ୱେଚ୍ଛାକୃତ ସହଯୋଗକୁ ଗ୍ରହଣ କରିବା ଉଚିତ ବୋଲି ସୂଚିତ କଲେ। ପୂଜ୍ୟ ଆଜ୍ଞାଙ୍କର ଏ ମତକୁ ସମ୍ମାନ ଜଣାଇ ମୋ ପାଇଁ ନୁହେଁ ଅଧିକନ୍ତୁ ଗରିବ ଦୁଃଖୀ ବିଦ୍ୟାର୍ଥୀ ଓ ଦୁଃସ୍ଥ ରୋଗୀଙ୍କର ଯତ୍‌ସାମାନ୍ୟ ସେବା ପାଇଁ ଗତ ୩/୪ ବର୍ଷ ହେଲା କିଛି

ଟଙ୍କା ଯାହା ସେ ମନିଅର୍ଡରରେ ପଠାଉଥିଲେ ପ୍ରତିମାସ ଗ୍ରହଣ କରୁଥିଲି। ଏବେ ତାଙ୍କର ଆବର୍ତ୍ତମାନ କାରଣରୁ ତାହା ବନ୍ଦ ହୋଇଛି। ତାଙ୍କର ଏ ସ୍ୱେଚ୍ଛାକୃତ ସେବା ମୋର ଭୁଲିବାର ନାହିଁ।

ପୁନଶ୍ଚ ତାଙ୍କର (୰ମହାନ୍ତିଙ୍କର) ମହତେଚ୍ଛା କ୍ରମେ ବିପ୍ଳବୀ ନବକୃଷ୍ଣ ଚୌଧୁରୀ ଓ ବିପ୍ଳବିନୀ ମାଳତୀ ଚୌଧୁରୀଙ୍କର ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ବାପି ଓ ନୁମାଙ୍କ କିଛି ବିଚାର ପୁଷ୍ଟ ବହି ବହୁ ଲୋକଙ୍କ ପାଖରେ ପହଞ୍ଚାଇ ପାରିଛି। ତାଙ୍କର ପ୍ରେରଣାରୁ ଉକ୍ତ ଦୁଇ ମହାନ ସେବକ-ସେବିକାଙ୍କର ବିଚାର ଗଙ୍ଗାକୁ ଲୋକଙ୍କଠାରେ ପହଞ୍ଚାଇ ପାରିଥିବାରୁ ମୁଁ କୃତାର୍ଥ ମଣୁଛି। ଶେଷରେ ଜୟୀ ବାବୁଙ୍କ ଆତ୍ମା ସ୍ୱର୍ଗରେ ଶାନ୍ତିରେ ରହୁ ଏ କାମନା ଜଣାଇ ରହୁଛି।

ବିଶ୍ୱବନ୍ଧୁ ସେବାମନ୍ଦିର, ଶିଶୁକୁଳି
ମୟୂରଭଞ୍ଜ-୭୫୭୦୯୧

●●

ସତ୍ୟାଗ୍ରହ କରିବା ଅର୍ଥ ଇଂରେଜ ସରକାରଙ୍କ ନୀତି ସହିତ ଲଢ଼ି ଜେଲରେ ବନ୍ଦୀ ହେବା ନୁହେଁ। ଉପରନ୍ତୁ ଖାଣ୍ଟି ସତ୍ୟାଗ୍ରହୀ ହେବାକୁ ହେବ। ଦେହ, ମନ, ଧନ ଦେଇ ସାଧୁତା ଦେଖାଇବା ଏବଂ ସମ୍ପୂର୍ଣ୍ଣ ଭାବରେ ବୀତରାଗ ହେବା, ଏମିତି ସତ୍ୟାଗ୍ରହୀ ହେଲେ ଆମକୁ ସଫଳତା ମିଳିବ।

- ମହାତ୍ମା ଗାନ୍ଧୀ

# ଜୟୀଭାଇଙ୍କ ସଙ୍ଗେ

**ମୁକ୍ତେଶ୍ୱର**

ଗତ ଅଗଷ୍ଟ ତା ୨୭, ୨୦୦୮ରିଖ ସକାଳ ୭ଟାରେ ଦୈନିକ ସମାଜରେ ଜୟୀଭାଇଙ୍କର ସ୍ୱର୍ଗବାସ ସମ୍ବାଦ ଦେଖିବାକୁ ପାଇଲି। ତା ପରେ ମୁଁ ତାଙ୍କ ବାସଭବନକୁ ଗଲି ଓ ସେଠାରେ ଦେଖିଲି ତାଙ୍କର କନ୍ୟା ଗୌରୀ, ତାଙ୍କ ବସିବା ସ୍ଥାନରେ ବସି ଫୋନ୍‌ରେ କଥାବାର୍ତ୍ତା କରୁଛନ୍ତି। ତାଙ୍କଠାରୁ ସମସ୍ତ ସମ୍ବାଦ ଶୁଣି ମର୍ମାହତ ହେଲି। ଶେଷ ଜୀବନରେ ତାଙ୍କୁ ମୁଁ ଦେଖା କରିନପାରି ଦୁଃଖ ପ୍ରକାଶ କଲି।

ତାଙ୍କ ସଙ୍ଗେ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟରେ ଅଧ୍ୟୟନ କରିଥିବା ତାଙ୍କର ସହପାଠୀ ସ୍ୱର୍ଗୀୟ ଫକିର ମିଶ୍ରଙ୍କ ଠାରୁ ତାଙ୍କର ବୈପ୍ଲବିକ ଜୀବନ ବିଷୟରେ ମୁଁ ଜାଣିବାକୁ ପାଇଥିଲି। ୧୯୪୨ 'ଭାରତଛାଡ', 'କର ବା ମର' ଗାନ୍ଧୀଜୀଙ୍କ ଆହ୍ୱାନରେ ସେ କଲେଜ ଛାଡ଼ି ଆନ୍ଦୋଳନରେ ଭାଗ ନେଇ ଦୀର୍ଘଦିନ କାରାବାସରେ ଥିଲେ। ତା ପରେ ସେ ଆଉ କଲେଜକୁ ନଯାଇ ଭାରତର ସ୍ୱତନ୍ତ୍ରତା ପର୍ଯ୍ୟନ୍ତ ସେହି କାମରେ ନିଜର ଜୀବନକୁ ଉତ୍ସର୍ଗ କରିଥିଲେ। ୧୯୪୭ ଅଗଷ୍ଟ ୧୫ ତାରିଖରେ ବ୍ରିଟିଶ ସରକାର ଭାରତର ସ୍ୱତନ୍ତ୍ରତା ଘୋଷଣା କଲାପରେ ସେ ନବ ଭାରତ ଗଠନ ପାଇଁ କାର୍ଯ୍ୟ କଲେ।

ଓଡ଼ିଶା ସରକାରରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ସମୟରେ ସେ ବିଧାୟକ ଥିଲେ। ସେହି ସମୟରେ ଓଡ଼ିଶାର ଗରିବ ଭୂମିହୀନ ଲୋକଙ୍କୁ ଭାଗଚାଷ ଜମି କିପରି ମିଳିବ ତା ପାଇଁ ସରକାରରେ ଥାଇ ବହୁ କଷ୍ଟସାଧ କାର୍ଯ୍ୟ କରିଛନ୍ତି।

ସେ ଜଣେ ବିଚକ୍ଷଣ ବୁଦ୍ଧିସମ୍ପନ୍ନ, ପ୍ରବୀଣ ରାଜନୀତିଜ୍ଞ, ସମାଜ ସେବାରେ ନିଜର ଜୀବନକୁ ଶେଷ ପର୍ଯ୍ୟନ୍ତ ଲଗାଇଛନ୍ତି। ୧୯୫୧ ସନ୍ଠୁ ବିନୋବାଜୀ ଓ ଜୟପ୍ରକାଶଙ୍କ ଭୂକ୍ରାନ୍ତି, ସବୁଭୂମି ଗୋପାଳଙ୍କର, ସର୍ବୋଦୟ ସମାଜ ଗଠନ ଓ ଖଦୀ ଗ୍ରାମୋଦ୍ୟୋଗ କାର୍ଯ୍ୟରେ ଯୋଗ ଦେଇ କାର୍ଯ୍ୟ କରିଛନ୍ତି। ସେ ଓଡ଼ିଶା ଖଦୀ ଗ୍ରାମୋଦ୍ୟୋଗ ବୋର୍ଡର ଅଧ୍ୟକ୍ଷ ହୋଇ ଖଦୀ ଗ୍ରାମୋଦ୍ୟୋଗ ବିକାଶ ପାଇଁ ବହୁତ କାର୍ଯ୍ୟ ସମ୍ପାଦନ କରିଛନ୍ତି। ଏହା ବ୍ୟତୀତ ନବଜୀବନ ମଣ୍ଡଳର ସମ୍ପାଦକ ଓ ବାଜିରାଉତ ଛାତ୍ରାବାସ ପରିଚାଳନା କାର୍ଯ୍ୟରେ ତାଙ୍କର ଅବଦାନ ଯଥେଷ୍ଟ। ଶେଷ ଜୀବନ ପର୍ଯ୍ୟନ୍ତ ବାଜିରାଉତ ଛାତ୍ରାବାସ କିପରି ଚାଲିବ ଓ ନବଜୀବନ ମଣ୍ଡଳ କାର୍ଯ୍ୟରେ ସେ ବ୍ୟସ୍ତ ରହୁଥିଲେ। ତାଙ୍କର ଧର୍ମପତ୍ନୀ ସ୍ୱର୍ଗୀୟା କିରଣ ଅପା ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀ ଥିଲେ। ସେ ମଧ ଓଡ଼ିଶା ବିଧାନ ସଭାର ବିଧାୟିକା ଥିଲେ। ଦୁଇ ଜଣଙ୍କ ସହଯୋଗରେ ଦୁହେଁ ଲୋକଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ।

ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କର ତାଙ୍କ ପ୍ରତି ଅପାର ବିଶ୍ୱାସ ଓ ଶ୍ରଦ୍ଧା ଥିଲା। ତା ବ୍ୟତିତ ଜୟୀଭାଇ ଆଚାର୍ଯ୍ୟ ହରିହର ଦାସ, ନବକୃଷ୍ଣ ଚୌଧୁରୀ, ସ୍ୱର୍ଗୀୟ ମାଳତୀ ଚୌଧୁରୀ ଟ୍ରଷ୍ଟର ମୁଖ୍ୟ ଭାବେ ଶେଷ ଜୀବନ ପର୍ଯ୍ୟନ୍ତ କାର୍ଯ୍ୟ କରିଛନ୍ତି। ଏହା ସହିତ ସେ ନବଜୀବନ ମଣ୍ଡଳର, ଉତ୍କଳ ଗାନ୍ଧୀ ସ୍ମାରକ ନିଧି, ଉତ୍କଳ ସର୍ବୋଦୟ ମଣ୍ଡଳ ଓ ଉତ୍କଳ ଖଦୀ ମଣ୍ଡଳ ପ୍ରମୁଖ

ଅନୁଷ୍ଠାନମାନଙ୍କର ପରିଚାଳକ ଭାବେ କାର୍ଯ୍ୟ କରିଛନ୍ତି। ତାଙ୍କର ମହତ୍ୱପୂର୍ଣ୍ଣ ପରାମର୍ଶ ସର୍ବଦା ଗ୍ରହଣ କରାଯାଇଥିଲା।

୧୯୮୫ ମସିହାରେ ମୁଁ ଉତ୍କଳ ଖଦୀ ମଣ୍ଡଳର ସମ୍ପାଦକ ଭାବେ କାର୍ଯ୍ୟ କରୁଥିବା ସମୟରେ ତାଙ୍କ ସଙ୍ଗେ କାର୍ଯ୍ୟ କରିବାର ସୁଯୋଗ ପାଇଲି। ୧୯୮୫ରୁ ୧୯୯୩ ପର୍ଯ୍ୟନ୍ତ ମୁଁ ତାଙ୍କ ପରାମର୍ଶରେ ପ୍ରାୟ ସମସ୍ତ କାର୍ଯ୍ୟ କରୁଥିଲି। ସେ ସମୟରେ ଖଦୀ ଗ୍ରାମୋଦ୍ୟୋଗ କମିଶନ ଉତ୍କଳ ଖଦୀ ମଣ୍ଡଳକୁ ବନ୍ଦ କରି ଉକ୍ତ ଅନୁଷ୍ଠାନକୁ ଏକପ୍ରକାର ଧ୍ୱଂସ କରିଦେଲେ। ଆଇନଗତ କାର୍ଯ୍ୟାନୁଷ୍ଠାନ ପାଇଁ ଯାହା ହେଉଥିଲା ସେଥିରେ ଜୟାଭାଇଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ତା ସହିତ ରାୟଗଡ଼ାରେ ଅବସ୍ଥିତ ଗୋପାଳବାଡ଼ୀ ଅନୁଷ୍ଠାନକୁ ମଧ୍ୟ ଓଡ଼ିଶା ସରକାର ବନ୍ଦ କରିବାକୁ ଚେଷ୍ଟା କଲେ ଓ ସଂସ୍ଥାର ଜମିକୁ ବାଣ୍ଟିଲେ। ସେଥିପାଇଁ କମିଶନ ଓ ଓଡ଼ିଶା ସରକାର ସହିତ ଆଇନଗତ ସଂଗ୍ରାମ ହେଲା ଶେଷରେ ଦୁଇଟି ଅନୁଷ୍ଠାନକୁ ନୂଆ ଜୀବନ ମିଳିଲା। ସେଥିରେ ଜୟାଭାଇଙ୍କ ସହଯୋଗ ଓ ଭୂମିକା ପ୍ରଣିଧାନ ଯୋଗ୍ୟ। ତାହା କେହି ଭୁଲି ପାରିବେ ନାହିଁ।

ଓଡ଼ିଶାରେ ଯେତେଗୁଡ଼ିଏ ଗାନ୍ଧୀ ଅନୁଷ୍ଠାନ, ନବଜୀବନ ମଣ୍ଡଳ, ବନବାସୀ ସେବାସମିତି, ଗୋପାଳବାଡ଼ୀ, ସର୍ବୋଦୟ ସଙ୍ଗଠନ, ଅଧିକାଂଶ ସହିତ ତାଙ୍କର ସମ୍ପର୍କ ଓ ସହଯୋଗ ରହିଥିଲା। ସେ ଉଦାର ମନରେ ସମସ୍ତଙ୍କୁ ସାହାଯ୍ୟ କରନ୍ତି। ଏ ସବୁ ଯେଉଁ କାର୍ଯ୍ୟ ସେ କରୁଥିଲେ ସେଥିପାଇଁ ଧର୍ମପତ୍ନୀ କିରଣ ଅପା, ତାଙ୍କର ତିନି କନ୍ୟା ଓ ପୁତ୍ରର ସହଯୋଗ, ଆତିଥ୍ୟ ଓ ସ୍ନେହ ପାଇଁ ସମ୍ଭବ ଥିଲା। ସ୍ୱର୍ଗୀୟ ମନମୋହନ ଚୌଧୁରୀ, ସ୍ୱର୍ଗୀୟ ଶରତଚନ୍ଦ୍ର ମହାରଣା, ସ୍ୱର୍ଗୀୟା ମା ରମା ଦେବୀ, ପୂଜ୍ୟା ଅନ୍ନପୂର୍ଣ୍ଣା ମହାରାଣାଙ୍କର ତାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଓ ବିଶ୍ୱାସ ଥିଲା।

ସେ ଓଡ଼ିଶାର ପ୍ରତ୍ୟେକ ସର୍ବୋଦୟ କର୍ମୀ ଓ ଅନ୍ୟମାନଙ୍କର ସ୍ମରଣୀୟ ହୋଇ ରହିବେ। ମୁଁ ତାଙ୍କର ଅମର ଆତ୍ମାକୁ ପ୍ରଣାମ କରୁଛି।

ରାୟଗଡ଼ା

●●

"ପୀଡ଼ିତ ସନ୍ତାନ ମୁହଁରେ ଅପଥ୍ୟ ଯୋଗାଇବା ଯେପରି ଦୋଷାବହ, ମଦ ଖାଉଥିବା ମଣିଷକୁ ମଦ ଯୋଗାଇବା ସେହିପରି ଦୋଷାବହ ଓ ଅମଣିଷ ପଣିଆ।"

- ମାଳତୀ ଦେବୀ

# ନୀତିନିଷ୍ଠ ଜୟକୃଷ୍ଣ ବାବୁ

**ଚୌଧୁରୀ ପ୍ରମୋଦକିଶୋର ଦାସ**

ଜୟକୃଷ୍ଣ ବାବୁ ଏକ ବିରଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ। ସମସାମୟିକ ଅଗ୍ରଗାମୀ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ସେ ଜଣେ ନିଆରା ମଣିଷ ଥିଲେ। ଆକୃତିରେ ଛୋଟ ମଣିଷଟିଏ, ହେଲେ ମୁହଁରେ ହସ ଲାଗି ରହିଥାଏ। ସାକ୍ଷାତରେ ଆନ୍ତରିକତା, ଅନୁରକ୍ତି, ଶ୍ରଦ୍ଧା ଶୁଭେଚ୍ଛା, ହୃଦୟର ଆବେଗ ବାରିହୋଇପଡ଼େ। ସତେ, ତାଙ୍କର ସ୍ମିତ ହାସ୍ୟ, ସାକ୍ଷାତରେ ବନ୍ଧୁକୁ ନିକଟତର କରାଏ। ହୃଦୟର ଭାବକୁ ଉଚ୍ଛ୍ୱସିତ କରାଏ। ଆବେଗରେ ଲମ୍ବିଯାଏ କେତେ କଥା। କଥା ଭାଷା ଗଢ଼ିଚାଲେ। କେତେ ଗପ, କେତେ ଖବର। ମଝିରେ ମଝିରେ ଉଚ୍ଚହାସ୍ୟ କଥୋପକଥନକୁ ରସାଣିତ କରେ। ଅନ୍ୟ ଆଗନ୍ତୁକର ଆଗମନରେ ସେ ଅସରନ୍ତି ଗପର ପରିସମାପ୍ତି ଘଟେ।

ବୁଦ୍ଧନଗର ଘର, ଘର ନୁହେଁ, 'ଆଶ୍ରମ', ନାନା ଜାତିର ଫୁଲ ଫଳରେ ଭରା। କିରଣ ଦେବୀ ଓ ଜୟୀବାବୁଙ୍କ ଆଦର ଯତ୍ନରେ ସେମାନେ ପାଳିତ। ପ୍ରାତଃ ମୁହୂର୍ତ୍ତରେ ବଗିଚାକାମ। ଆନନ୍ଦ ମିଳେ, ମନବି ପୂର୍ତ୍ତିରୁହେ। ତାଳ ଓ ଲତା ସେ ଆଶ୍ରମକୁ ଆଚ୍ଛାଦିତ କରି ରଖିଥାନ୍ତି। ଏବେ ସେ 'ଆଶ୍ରମ' ଘର ଅକ୍ଷତ ରହିଛି। ପରିବର୍ଦ୍ଧିତ ହୋଇଛି ଉଦ୍ୟାନ ତପନ ବାବୁଙ୍କ ପ୍ରଚେଷ୍ଟାରେ। ନାହାନ୍ତି 'ଜନକ' ଓ ମା' କିରଣ। ସରଳ ନିରାଡମ୍ବର ସେମାନଙ୍କ ଜୀବନ। ଘର, ଆସବାସରେ ଚାକଚକ୍ୟ ନଥିଲା। ଭାରତୀୟ ଆର୍ଯ୍ୟ ସଂସ୍କୃତି ଓ ପରମ୍ପରାର ପ୍ରତୀକ ଦେବର୍ଷି 'ଜନକ' ରାଜାଙ୍କ ଆଦର୍ଶ ଓ ନୀତି ଜୟକୃଷ୍ଣ ମହାନ୍ତିଙ୍କ ଜୀବନରେ ପ୍ରତିଫଳିତ ହୋଇଥିଲା। ଧନର ଗର୍ବ, ଜନର ଆସ୍ଫାଳନ, ମାନର ଦାମ୍ଭିକତା ଓ ପଦବୀର ଅହମିକା ତାଙ୍କ ମନକୁ କେବେ ସ୍ପର୍ଶ କରି ନଥିଲା। ସେ ବିଧାନ ସଭାର ସଭ୍ୟ ଥିଲେ, ମନ୍ତ୍ରୀଙ୍କ ଠାରୁ ମଧ୍ୟ ଅଧିକ କ୍ଷମତାର ଅଧିକାରୀ ଥିଲେ। ହେଲେ ନିଜକୁ ସମସ୍ତଙ୍କ ଭିତରେ 'ଜଣେ' ବୋଲି ମନେ କରୁଥିଲେ।

ତାଙ୍କ ବସିବାର ଠାଣି ସ୍ୱତନ୍ତ୍ର ଥିଲା। ଖଟ ଉପରେ ସପଟିଏ, ଦୁଇଟି ଛୋଟ ମାଣ୍ଡି। ଗୋଡ଼ଦୁଇଟିକୁ ଭାଙ୍ଗି ଦେଇ ଗୋଟିଏ କଡ଼ ପଟକୁ ଆଉଜି (ମହାତ୍ମା ଗାନ୍ଧିଙ୍କ ଠାଣିରେ) ବସି ରହୁଥିଲେ ଘଣ୍ଟା ଘଣ୍ଟା ଧରି, ଦିନ ଯାକ ଆସର ସରିବା ପର୍ଯ୍ୟନ୍ତ। ଚେୟାର ଓ ଟେବୁଲରେ ସେ ଏପରି ଭାବରେ ବସିବାକୁ ପସନ୍ଦ କରୁଥିଲେ।

ତାଙ୍କର କଥାବାର୍ତ୍ତା, ଆଲୋଚନା ଓ ସମାଲୋଚନା ତଥ୍ୟଗତ ଥିଲା। ଉପର ଠାଉରିଆ କିଛି କହିବାକୁ ପସନ୍ଦ କରୁନଥିଲେ। ସତ କଥା ଅପ୍ରିୟ ହେଲେ ମଧ କହିବାକୁ ଦ୍ୱିଧା ବୋଧ କରୁନଥିଲେ। କେବେ କେବେ ଉତ୍ତେଜିତ ହୋଇ ପଡ଼ୁଥିଲେ, ପର ମୁହୂର୍ତ୍ତରେ ହସି ଦେଇ ରାଗ ପ୍ରଶମିତ କରୁଥିଲେ। ସେ ରାଗରେ କ୍ରୋଧ ନଥାଏ, ଦଣ୍ଡ ଦେବାର ପ୍ରୟାସ ନଥାଏ। କାର୍ଯ୍ୟଟି ସୁରୁଖୁରୁରେ କରାଇ ନେବାର ପ୍ରବୃତ୍ତି ଥାଏ। ସହଜରେ ଧୈର୍ଯ୍ୟହରା ହୁଅନ୍ତି ନାହିଁ। ବିଭିନ୍ନ ଦୃଷ୍ଟିକୋଣରୁ ବିଷୟଟିର ବିଚାର କରିବାର ସାମର୍ଥ ତାଙ୍କ ଥିଲା। ମୋର ମନେ ଅଛି, ଭିନ୍ନ ଭିନ୍ନ ସମୟରେ ଜଣେ ଥାନା ଅଧିକାରୀ ଓ ଜଣେ ଆଇ.ଏ.ଏସ. ପଦାଧିକାରୀ, ନିର୍ଦ୍ଦେଶକ, ପର୍ଯ୍ୟଟକଙ୍କୁ ଅପୂର୍ବ ଧୈର୍ଯ୍ୟର ସହ

ବିଷୟଗୁଡ଼ିକର ଗୁରୁତ୍ୱ ବୁଝାଇଥିଲେ। ଯଦିଓ ସେମାନେ ବୁଝିବା ଅବସ୍ଥାରେ ନଥିଲେ। ହୁଏତ ଆଉ କେହି ଏପରି କ୍ଷେତ୍ରରେ ନମ୍ରତା ପ୍ରକାଶ ନକରି ନିଜର ଅଧିକାର ଜାହିର କରିଥାନ୍ତା।

୧୯୭୭ ମସିହାରେ ଜନତା ସରକାର ସମୟରେ କିରଣ ଲେଖା ଦେବୀ ରାଜ୍ୟ ବିଧାନ ସଭାର ସଭ୍ୟା ହୋଇଥାନ୍ତି। ପତିପତ୍ନୀ ପିପିଲି ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ପିପିଲି ଓ ଡେଲାଙ୍ଗ ଅଞ୍ଚଳର ଉନ୍ନତି ପାଇଁ ମନପ୍ରାଣ ଢ଼ାଳି ଦେଇଥାନ୍ତି। ଜୟୀବାବୁ ପୂର୍ବରୁ ଏ ନିର୍ବାଚନ ମଣ୍ଡଳୀର ସଭ୍ୟ ଥିଲେ। ତେଣୁ ଏ ଅଞ୍ଚଳର ଜନସାଧାରଣଙ୍କ ସହିତ ଓ ସେମାନଙ୍କ ସମସ୍ୟା ସହିତ ସେ ଓତପ୍ରୋତ ଭାବରେ ଜଡ଼ିତ ଥିଲେ। ପିପିଲି ଅଞ୍ଚଳ କଟକ-ପୁରୀ ରାଜପଥର ଦୁଇ ପାର୍ଶ୍ୱରେ ଅବସ୍ଥିତ ହେଲେ ମଧ୍ୟ ଆଭ୍ୟନ୍ତରିଣ ରାସ୍ତା ଗୁଡ଼ିକର ଅବସ୍ଥା ଭଲ ନଥିଲା। ଡେଲାଙ୍ଗ ଅଞ୍ଚଳ ଅପେକ୍ଷାକୃତ ଅନୁନ୍ନତ ଥିଲା। ସେତେବେଳେ ଭାରତ ସରକାର 'କାମପାଇଁ ଖାଦ୍ୟ ଯୋଜନା' ମାଧ୍ୟମରେ ବହୁଳ ପରିମାଣରେ ଗହମ ରାସ୍ତାଘାଟ ନିର୍ମାଣ ପାଇଁ ଯୋଗାଇଲେ। ଗ୍ରାମାଞ୍ଚଳରେ ରାସ୍ତା ନିର୍ମାଣ ପାଇଁ ଏହା ଏକ ଅପୂର୍ବ ସୁଯୋଗ ଆଣିଦେଲା। ଜୟୀବାବୁ ଓ କିରଣ ଦେବୀ ଗାଁ ଗାଁ ବୁଲି ଗ୍ରାମ୍ୟ କମିଟିମାନ ଗଢ଼ି ଯୁବକମାନଙ୍କୁ ଏଥିରେ ସମ୍ପୃକ୍ତ କରି ଏପରି ଭାବରେ ସେମାନଙ୍କୁ ଉତ୍ସାହିତ କଲେ ଯେ ଚାରିଆଡ଼େ ରାସ୍ତାଘାଟ ନିର୍ମାଣ ଚାଲିଲା। ସତେ ଯେପରି ଏକ ନିର୍ମାଣ ଯୁଗ ଆରମ୍ଭ ହେଲା। ବ୍ଲକ୍ ଉନ୍ନୟନ ଅଧିକାରୀ ଭାବେ ମୋ ପକ୍ଷରେ ଏ ସବୁ କାର୍ଯ୍ୟର ତଦାରଖ କରିବା ଓ ହିସାବ ସଂରକ୍ଷଣ କରିବା ଏକ ଦୁରୁହ ବ୍ୟାପାର ହୋଇ ପଡ଼ିଲା। ସେମାନଙ୍କର ଉତ୍ସାହ ଓ ଉଦ୍ଦିପନା ଉପଲବ୍ଧ କରି ମୁଁ ଓ ମୋର ସହକର୍ମୀମାନେ ପୁରା ପ୍ରାଣରେ ସହଯୋଗ କରି ସମସ୍ତଙ୍କର ବିଶ୍ୱାସଭାଜନ ହେଲୁ।

ନିଜ ପୋଷାକପତ୍ରରେ ଜୟକୃଷ୍ଣ ବାବୁଙ୍କ ନିର୍ଦ୍ଦିଷ୍ଟ କିଛି ରୁଚି, ଅଭିରୁଚି ନଥିଲା। ଖଦଡ଼ ଲୁଗା, ପଞ୍ଜାବୀ ଓ ଫତେଇ, ଖଦଡ଼ ବ୍ୟାଗ କାନ୍ଧରେ, ବାସ, ସେ ବାହାରି ପଡ଼ନ୍ତି ସୁନିର୍ଦ୍ଦିଷ୍ଟ ପଥରେ। ଲୁଗାପିନ୍ଧିବା ଶୈଳୀ ତାଙ୍କର ଭିନ୍ନ ଧରଣର। ଲୁଗା ପିନ୍ଧାରେ ଫେର ବାହାରୁନଥିଲା। ଲୁଗାର ଦୁଇ ମୁହଁ ପଛରେ କଚ୍ଛା ଭାବେ ମରାଯାଉଥିଲା। ଚାଲିକରି ହେଉ, ବସଯାତ୍ରା ହେଉ, ଗାଡ଼ି ହେଉ, ସବୁଥି ପାଇଁ ପ୍ରସ୍ତୁତ। ଅପେକ୍ଷା ନାହିଁ, ବିଳମ୍ବତା ନାହିଁ, ସମୟାନୁବର୍ତ୍ତିତା ତାଙ୍କର ଅସ୍ଥି ମଜ୍ଜାଗତ। ଛୋଟ ଛୋଟ ପାଦ ଦୁଇଟି ଅବିରାମ ଗତିରେ ଆଗକୁ ମାଡ଼ିଚାଲେ, ଗାଁର ଅର୍ଜୁନି ଭାଇ, ବୈକୁଣ୍ଠବାବୁ, ସନାତନ ବାବୁ ଯୋଗଦିଅନ୍ତି। ସମସ୍ତଙ୍କ ସହିତ ଗପ, ହସ, କେତେ ପୁରୁଣା କଥା।

ସନ୍ଧ୍ୟାରେ ଫେରିବେ ପିପିଲି ବସ୍‌ଷ୍ଟାଣ୍ଡକୁ, ଅପେକ୍ଷା କରିବେ ପୁରୀ-ଭୁବନେଶ୍ୱର ବସ୍‌କୁ। ରାତ୍ରୀର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ବସ୍ ଷ୍ଟାଣ୍ଡରେ ପତିପତ୍ନୀ ଅପେକ୍ଷା କରିବେ ସିନା, ବ୍ଲକ୍ ଜିପ ଭୁବନେଶ୍ୱର ଫେରିବା ପାଇଁ ବ୍ୟବହାର କରିବେ ନାହିଁ। ନିଜ ସୁବିଧା ପାଇଁ ସରକାରୀ ଜିପ ବ୍ୟବହାର କରିବା ସେମାନଙ୍କର ନୀତି ବିରୁଦ୍ଧ।

ଜୟକୃଷ୍ଣବାବୁଙ୍କ ସ୍ମୃତି ମନକୁ ଆସିଲେ, ବଳେ ବଳେ ତାଙ୍କର ଧର୍ମପତ୍ନୀ କିରଣ ଲେଖାଙ୍କ ସ୍ମୃତି ଜାଗରୁକ ହୁଏ କାରଣ ସେମାନେ ଗୋଟିଏ ମୁଦ୍ରାର ଦୁଇ ପାଖ। ଦୁଇଟି ଚରିତ୍ର ଅଙ୍ଗାଙ୍ଗୀ ଭାବେ ଜଡ଼ିତ। ବିଭିନ୍ନ ଦୃଷ୍ଟିକୋଣରୁ ଦେଖିଛି, ଜୟକୃଷ୍ଣ ବାବୁ ଓ କିରଣ ଲେଖା ଦେବୀଙ୍କର ଆଚାର, ବ୍ୟବହାର, ସଂସ୍କୃତି, ଜୀବନ ଧାରଣ ଶୈଳୀ, ଚିନ୍ତାଧାରା ସମାନ। ପତିପତ୍ନୀ ପରସ୍ପରର ପରିପୂରକ, ସାମଞ୍ଜସ୍ୟ ଅନେକ, କେବଳ କିରଣ ଲେଖାଙ୍କ କଥା ତୀକ୍ଷ୍ଣ, ସେଥିରେ ବାକ୍ ଚାତୁରୀର ସ୍ଥାନ ନାହିଁ। ସତ୍ୟ କହିବାକୁ ପଛାନ୍ତି ନାହିଁ, ଯେତେ

ଅପ୍ରିୟ ହେଲେ ମଧ୍ୟ। ଥରେ ତତ୍କାଳୀନ ପୁରୀ ସାଂସଦଙ୍କୁ ଶିକ୍ଷକ ବଦଳିରେ ହସ୍ତକ୍ଷେପ ନ କରିବାକୁ ସମସ୍ତଙ୍କ ସମ୍ମୁଖରେ ତାକିଦ୍ କରିଦେଲେ। ଜୟକୃଷ୍ଣ ବାବୁଙ୍କର କଥା କହିବାର ଭଙ୍ଗି ସ୍ୱତନ୍ତ୍ର ଥିଲା। ମଜେଇ କରି, ଜମେଇ କରି, ଚଳେଇ କରି ସମସ୍ତ ସମସ୍ୟାର ତଥ୍ୟଗତ ବିଷୟ ଉପସ୍ଥାପନା କରନ୍ତି, ଯାହାକି ସମସ୍ୟାର ସମାଧାନରେ ସହାୟକ ହେଉଥିଲା। ସେବା, ସତ୍ୟନ୍ୟାୟ ପଥରେ ପରସ୍ପରର ଅନୁଗାମୀ ଥିଲେ।

ଆଦର୍ଶ ସ୍ଥାନୀୟ ଦମ୍ପତି କେବେ ଆଦର୍ଶ, ନୀତି, ନିୟମରୁ ବିଚ୍ୟୁତ ହୋଇ ନାହାନ୍ତି। ଏହାର କାରଣ ସୁସ୍ପଷ୍ଟ, କିରଣ ଦେବୀ ଦଶବର୍ଷ ବେଳୁ ପୂଜ୍ୟ ରମାଦେବୀଙ୍କ 'ସେବାଘର' ଆଦର୍ଶରେ ଅନୁପ୍ରାଣିତ ହୋଇ ଆସିଥିବାବେଳେ, ଜୟୀବାବୁ ସ୍କୁଲ କଲେଜରେ ପଢ଼ିବା ବେଳୁ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକର୍ଷିତ ହୋଇଥିଲେ। ସେମାନଙ୍କ ଜୀବନ 'ଭିନ୍ନ ଉପାଦାନେ' ଗଢ଼ା ହୋଇଥିଲା। ଭାଗ୍ୟବାଦୀମାନେ ମନେ କରନ୍ତି ବରକନ୍ୟାଙ୍କ ବିବାହ ସ୍ୱର୍ଗରେ ସ୍ଥିରିକୃତ ହୁଏ। କିନ୍ତୁ ଜୟକୃଷ୍ଣବାବୁ ଓ କିରଣ ଲେଖାଦେବୀଙ୍କ ବିବାହରେ ପୁରୋହିତ ସାଜିଥିଲେ ଆଚାର୍ଯ୍ୟ ହରିହର, ବର ପିତା ହୋଇଥିଲେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଓ କନ୍ୟାପିତା ଥିଲେ ନବକୃଷ୍ଣ ଚୌଧୁରୀ। ନବବାବୁ ଓ ମାଳତୀ ଦେବୀଙ୍କ ପ୍ରିୟ କାର୍ଯ୍ୟ କ୍ଷେତ୍ର, ମାନସ ସନ୍ତାନ 'ବାଜିରାଉତ ଛାତ୍ରାବାସ'ର ମନୋଜ୍ଞ ଶାନ୍ତ ପରିବେଶ ମଧ୍ୟରେ ଏହି ବିବାହ ସଂଗଠିତ ହୋଇଥିଲା। ମଣି କାଞ୍ଚନର ସଂଯୋଗ। ଗଙ୍ଗା ଯମୁନାର ଅପୂର୍ବ ମିଳନରେ ସେବା କ୍ଷେତ୍ରରେ ଏକ ନୂତନ ପ୍ରବହମାନ ସ୍ରୋତର ସୃଷ୍ଟି ହେଲା।

ଗଠନମୂଳକ କାମରେ ଜୟକୃଷ୍ଣବାବୁଙ୍କର ଅହେତୁକୀ ଆଗ୍ରହ ଥିଲା। ବିନୋବା ଭାବେଙ୍କ ଭୂଦାନ ଯଜ୍ଞ, ଆନ୍ଦୋଳନକୁ ଓଡ଼ିଶାରେ ପ୍ରସାରିତ କରିବାରେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମାଦେବୀ ଓ ମାଳତୀ ଦେବୀଙ୍କ ସହିତ ଓଡ଼ିଶାର ପୁରପଲ୍ଲୀରେ ଅପୂର୍ବ ଶିହରଣ ସୃଷ୍ଟି କରିଥିଲେ। ସେ ଭୂଦାନ ଯଜ୍ଞ ସମିତିରେ ସଭାପତି ଭାବରେ ରାଜ୍ୟରେ ଭୂମି ବଣ୍ଟନରେ ନିର୍ଦ୍ଦିଷ୍ଟ ଭୂମିକା ଲିଭାଇଥିଲେ। ନବଜୀବନ ମଣ୍ଡଳର ସଭାପତି ଭାବେ ଗଠନମୂଳକ କାର୍ଯ୍ୟରେ ତାଙ୍କର ଅବଦାନ ଯଥେଷ୍ଟ ଥିଲା।

ଆଜି ତାଙ୍କର ପ୍ରଥମ ବାର୍ଷିକୀ ଶ୍ରାଦ୍ଧ ଦିବସରେ ସେହି ଅମର ଆତ୍ମା ପ୍ରତି ମୋର ଗଭୀର ଶ୍ରଦ୍ଧା ଜଣାଉଛି। ତାଙ୍କର ଅମର ସ୍ମୃତି, ତାଙ୍କର ପ୍ରିୟଜନ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କ ଜୀବନକୁ ଆଲୋକିତ କରୁ, ଏହାହିଁ କାମନା।

ଅରବିନ୍ଦ ନଗର, କଟକ-୧୦

●●

ଉଦୟେର ପଥେ ଶୁନି କାର ବାଣୀ
ଭୟ ନାଇ ଓରେ ଭୟ ନାଇ
ନିଃଶେଷେ ପ୍ରାଣ୍ ଯେ କରିଛେ ଦାନ୍
କ୍ଷୟ ନାହିଁ ତାର କ୍ଷୟ ନାଇ।
- ରବୀନ୍ଦ୍ର ନାଥ ଠାକୁର



ପଦ୍ମଚରଣ ସାମନ୍ତ ସିଂହାରଙ୍କ ସ୍ମୃତିସଭାରେ - ସର୍ବଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ଜୟକୃଷ୍ଣ ମହାନ୍ତି, ଶ୍ରୀ ସୁରେନ୍ଦ୍ରନାଥ ନାୟକ, ଶ୍ରୀ ଗଙ୍ଗାଧର ପାଇକରାୟ ଓ ଶ୍ରୀ ଗଙ୍ଗାଧର ମହାପାତ୍ର ପ୍ରମୁଖ।



ବନବାସୀ ସେବା ସମିତି, ବାଲିଗୁଡ଼ାର ବାର୍ଷିକ ପୁରସ୍କାର ବିତରଣ ସଭାରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ପୁରସ୍କାର ବିତରଣ ଅବସରରେ।



ରାଜ୍ୟ ମନ୍ତ୍ରୀମଣ୍ଡଳର ସଦସ୍ୟମାନଙ୍କ ସହ ବିଧାନସଭା ପରିସରରେ ଥିବା
ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଅର୍ପଣ।



ମାଳତୀ ଚୌଧୁରୀ ଜନ୍ମ ଶତବାର୍ଷିକୀ ଉଦ୍‌ଯାପନ ସମାରୋହରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଓ
ଅନ୍ୟାନ୍ୟ ଅତିଥିଙ୍କ ଗହଣରେ।

# କର୍ମଯୋଗୀ ଜୟକୃଷ୍ଣ ମହାନ୍ତି

## ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ ସହ ସମ୍ପୃକ୍ତି ଓ ଅବଦାନ

ସର୍ବେଶ୍ୱର ନାୟକ

**ଅତରଙ୍ଗ ଅନୁଭୂତି !**

ଜୟୀଭାଇ ନାହାନ୍ତି, ଭାବିବା ଏକ ଭ୍ରାନ୍ତି ଭଳି ଲାଗୁଛି। ଏଭଳି କ୍ଷେତ୍ରରେ ଗୀତାର ବାଣୀ ବାସ୍ତବ ବୋଧହୁଏ। ଶରୀର ଓ ଆତ୍ମା ଉଭୟର ସଂଯୋଗ ବା ସମିଶ୍ରଣରେ ଜୀବସଂସାରର ବାସ୍ତବତା ପ୍ରକଟିତ ହୋଇଛି। କେଉଁଟି କାହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବୁଝିବା ଆମ ଭଳି ସାଧାରଣ ମଣିଷ ପକ୍ଷେ ସହଜ ନୁହେଁ। ଦୁହେଁ ଏକାଙ୍ଗୀ ହୋଇଥିଲେ ବି ଶରୀରର ଅନ୍ତ ଘଟୁଥିବା ବେଳେ ଆତ୍ମା ଅମର ବୋଲି ବିଶ୍ୱାସ କାଳକ୍ରମେ ପ୍ରତିଷ୍ଠା ଲାଭ କରିଛି। ଆତ୍ମା ଅବିନାଶୀ ବୋଲି ବିଶ୍ୱାସ ନଥିଲେ ଆମେ ପିତୃପୁରୁଷଙ୍କୁ ପିଣ୍ଡ ଦାନ୍ତୁ ନଥାନ୍ତେ। ଜୀବନକାଳରେ ମଣିଷ ଏତେ ଜଞ୍ଜାଳଗ୍ରସ୍ତ ଯେ ସେ ସବୁଦିନେ ସବୁକଥା ମନେ ପକାଇ ପାରେ ନାହିଁ। ଅସଂଖ୍ୟ ମୋହ ଭିତରେ ଆପଣା ସମ୍ପର୍କୀୟ ପ୍ରତି ମୋହ ସର୍ବାଧିକ। ମୋହରୁ ମୁକ୍ତ ମଣିଷକୁ ସ୍ଥିତପ୍ରଜ୍ଞ ବୋଲି 'ଗୀତା' ବର୍ଣ୍ଣନା କରିଛି ଯାହା ସାଧାରଣ ମଣିଷ ପକ୍ଷେ ସମ୍ଭବ ନୁହେଁ। ବିରାଟ ଭାଗବତ ଗ୍ରନ୍ଥର ନିର୍ଯାସ ହେଉଛି 'ଭଗବତ ଗୀତା'। ତଥାପି ଦୁଇଟି ବିରୋଧାତ୍ମକ କଥା ଆମକୁ ଦିଆଯାଇଛି। ଭାଗବତର ଏକ ଶ୍ରେଷ୍ଠ ବାଣୀ ହେଉଛି : "ଏ ଦେହ ଥିଲେ ସର୍ବ ଥାଇ, ଜଳେ ଯେସନ ଶୂନ୍ୟ ଛାଇ"। ଏହି ବାଣୀର ଗୁରୁତ୍ୱ ଓ ମହତ୍ୱ ବୁଝିବାକୁ ଯେଉଁ କସରତ୍ ଦରକାର, ସେପାଇଁ ଏବେ ବେଳ ନାହିଁ। ଅପରପକ୍ଷରେ ଗୀତା କହୁଛି ଆତ୍ମା ଅମର। ତାହାର ମୃତ୍ୟୁ ବା ଅନ୍ତ ନାହିଁ।

"ବାସାଂସୀଜୀର୍ଣ୍ଣାଣୀ ଯଥାବିହାୟ, ନବାଣି ଗୃହ୍ଣାଦି ନରୋପରାଣି; ତଥା ଶରୀରାଣି ବିହାୟଜୀର୍ଣ୍ଣା ନିନ୍ୟାନି ସଂଯାତି ନବାନି ଦେହୀ।" ଶରୀର ଏକ ବସ୍ତ୍ରସଦୃଶ, ପୁରୁଣା ବସ୍ତ୍ର ତ୍ୟାଗ କରି ଆମେ ଯେପରି ନୂତନ ବସ୍ତ୍ର ପରିଧାନ କରୁ। ସେହି ପରି ଆତ୍ମା (ମାଲିକ) ପୁରୁଣା ଶରୀରକୁ ତ୍ୟାଗ କରି ନୂତନ ବସ୍ତ୍ରରୂପକ ଶରୀର ଗ୍ରହଣ କରେ। ସେହି ଦୃଷ୍ଟିରୁ ସ୍ୱର୍ଗତଃ ବୋଲି କୁହାଯାଉଥିବା ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କ ଆତ୍ମା ତାଙ୍କ ଜୀବନର ବ୍ୟାପକ ପରିସର ଭିତରେ ଆମ ହୃଦୟରେ ଉପଲବ୍ଧ ହୁଏ, ଏହା ବୁଝିବା ଅତ୍ୟନ୍ତ ସହଜ ଓ ସରଳ ଅଟେ। ତା' ହୋଇ ନଥିଲେ ଆମେ ତାଙ୍କୁ ସ୍ମରଣ କରନ୍ତେ ନାହିଁ, ମୁଁ ଥିବା ଯାଏ ଜୟୀଭାଇ ଅଛନ୍ତି ବୋଲି ମୁଁ ବିଶ୍ୱାସ କରେ।

ଜୟୀଭାଇଙ୍କ ସହିତ ଏ ଅତୁଟ ସମ୍ପର୍କ ମୋତେ ତାଙ୍କର ବ୍ୟାପକ କର୍ମମୟ ଜୀବନାଦର୍ଶରୁ ଉପଲବ୍ଧ ହୋଇଅଛି। ସେ ଜଣେ ଆଦର୍ଶ କର୍ମଯୋଗୀ ବୋଲି ମୁଁ ବିଶ୍ୱାସ କରେ। ତାଙ୍କର ଜୀବନ କର୍ମମୟ ଥିଲା। ସୁଖ-ଦୁଃଖର ସଂସାରରେ ସେ ଅବିଚଳିତ ଭାବେ କର୍ମରତ ଥିବାର ଚିତ୍ର ଏବେ ବି ମୋ ଆଖି ଆଗରେ ନାଚି ଉଠେ। ସ୍ୱାଧୀନତା ଆନ୍ଦୋଳନର ଅନ୍ତିମ ପର୍ଯ୍ୟାୟ ବା ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରେ ପୁରୀ ଜିଲାର ସଂଗ୍ରାମୀ ଗହଣରେ ତାଙ୍କୁ ଜାଣିବାର ସୁଯୋଗ ପାଇଥିଲେ ବି ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିପାରି ନଥିଲି। ୧୯୪୪ ଠାରୁ ୧୯୪୭ ମଧ୍ୟରେ ପୁରୀ କଲେଜ (ଏବେ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ)ରେ ଅଧ୍ୟୟନ କାଳରେ

ମୋର ସହପାଠୀ ସ୍ୱର୍ଗତଃ ହରିହର ବାହିନୀପତି ଓ ଚନ୍ଦ୍ରଶେଖର ମହାପାତ୍ରଙ୍କ ଭଳି ସ୍ୱାଧୀନତା ସଂଗ୍ରାମୀଙ୍କ ଗହଣରେ ପୁରୀ ଜିଲାର ବହୁ ସଂଗ୍ରାମୀଙ୍କ ସମ୍ପର୍କରେ ଆସିଥିଲି । ବିଶେଷ କରି ବରିଷ୍ଠ ସଂଗ୍ରାମୀ ଲୋକନାଥ ମିଶ୍ର (ପଙ୍କବାବୁ) ଓ ଗଙ୍ଗାଧର ମହାପାତ୍ରଙ୍କ ସହ ବିଭିନ୍ନ କାର୍ଯ୍ୟକ୍ରମ ପାଳନ ଅବସରରେ ମିଶିବାର ସୁଯୋଗ ମୋତେ ମିଳିଥିଲା। ଜୟୀଭାଇ ପୁରୀ ଜିଲାର ଜଣେ ଆଗଧାଡ଼ିର ସକ୍ରିୟ ଜେଲ୍ ଫେରନ୍ତା ସଂଗ୍ରାମୀ ଥିଲେ। ତାଙ୍କର ଶୃଙ୍ଖଳାତ୍ମକ ସଙ୍ଗଠନ ଶକ୍ତି ମୋତେ ବିଶେଷ ପ୍ରଭାବିତ କରିଥିଲା। ସ୍ୱାଧୀନତା ପ୍ରାପ୍ତିର ପୂର୍ବବର୍ତ୍ତୀ ଏହି ସମୟରେ ଉଭୟ ପୁରୀ ଓ କଟକର ଯୁବ ସଂଗ୍ରାମୀ ତଥା ସହଯୋଗୀ ଯୁବ ଗୋଷ୍ଠୀଙ୍କୁ ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ଜରିଆରେ ସଙ୍ଗଠିତ କରି ପରବର୍ତ୍ତୀ କାଳରେ ରାଜନୈତିକ ଓ ସାମାଜିକ ସଂସ୍କାର ପାଇଁ ପ୍ରସ୍ତୁତ ହେବାକୁ ତାଲିମ୍ ଦେବା ଜୟୀଭାଇଙ୍କ ଭଳି ସଂସ୍କାରବାଦୀ ସଂଗ୍ରାମୀମାନଙ୍କର କାର୍ଯ୍ୟଥିବା ମୁଁ ଲକ୍ଷ୍ୟ କରିଥିଲି। ୧୯୪୨ ମସିହାରେ ସେ ରେଭେନ୍ସା କଲେଜ, କଟକରେ ଅଧ୍ୟୟନ କରୁଥିବା ବେଳେ ପ୍ରତ୍ୟକ୍ଷ ଆନ୍ଦୋଳନରେ ଝାସ ଦେଇ କାରାବରଣ କରିଥିଲେ। ସେ ଦୃଷ୍ଟିରୁ ଭାରତୀୟ ଜାତୀୟ କଂଗ୍ରେସର ପ୍ରାଦେଶିକ ମୂଳପିଠ କଟକ ସ୍ୱରାଜ ଆଶ୍ରମ ତଥା ପ୍ରାଦେଶିକ ନେତୃବର୍ଗଙ୍କ ସହ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା। ବିଶେଷ କରି ଆଦର୍ଶ ଗାନ୍ଧୀବାଦୀ ଚୌଧୁରୀ ପରିବାର ସହିତ ସେ ଆତ୍ମିକ ଭାବେ ଜଡ଼ିତ ଥିଲେ। ତେଣୁ ୧୯୪୭ ଠାରୁ ମୋର ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ମୁଁ ସ୍ୱାଭାବିକ ଭାବେ ସ୍ୱରାଜ ଆଶ୍ରମ ପରିସରରେ ପୁଣି ତାଙ୍କ ସମ୍ପର୍କରେ ଆସିବା ସଙ୍ଗେ ସଙ୍ଗେ ଚୌଧୁରୀ ପରିବାରରେ ପରିଚିତ ହେବାର ସୁଯୋଗ ପାଇଥିଲି।

**ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ**

ଏହିଭଳି ପରୋକ୍ଷ ତଥା କ୍ଷୀଣ ସମ୍ପର୍କ କ୍ରମେ ନିବିଡ଼ ହେଲା ମୁଁ ୧୯୫୦ ମସିହା ଅଗଷ୍ଟ ମାସରେ ଅନୁଗୋଳସ୍ଥ ବାଜିରାଉତ ଛାତ୍ରାବାସର ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେବାରେ। ଜୟୀଭାଇ କେବଳ ଜଣେ ରାଜନେତା ନଥିଲେ, ସେ ଏକାଧାରରେ ଜଣେ ସଂସ୍କାରବାଦୀ ରଚନାତ୍ମକ ସଙ୍ଗଠକ ଓ ବିପ୍ଳବୀ ଭାବେ ପ୍ରଶଂସିତ ହେଉଥିଲେ। ରାଜନୀତି କ୍ଷେତ୍ରରେ ଦକ୍ଷତା ହେତୁ ସେ ଦୁଇଥର ଓଡ଼ିଶା ବିଧାନ ସଭାର ସଭ୍ୟ ଭାବେ ନିର୍ବାଚିତ ହୋଇଥିଲେ ଓ ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ମଧ ଥିଲେ। ଏହି ସମୟରେ ସେ ଜମିଜମା ସଂସ୍କାର କାର୍ଯ୍ୟରେ ତତ୍‌କାଳୀନ ରାଜସ୍ୱମନ୍ତ୍ରୀ ତଥା ପରେ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀଙ୍କୁ ବରାବର ସହଯୋଗ ପ୍ରଦାନ କରିଥିବା ଜଣାଯାଏ। କାରଣ ଶାସକ କଂଗ୍ରେସ ଦଳର ଏଥିପାଇଁ ଦୃଢ଼ ପ୍ରତିଶ୍ରୁତି ଥିଲା। ମାତ୍ର ୧୯୫୭ ସାଧାରଣ ନିର୍ବାଚନରେ ସେ ପ୍ରତିଯୋଗିତାରୁ ଓହରି ଯାଇ ରଚନାତ୍ମକ କାର୍ଯ୍ୟରେ ସମ୍ପୂର୍ଣ୍ଣ ଭାବେ ନିଜକୁ ନିୟୋଜିତ କରିବାର ନିଷ୍ପତ୍ତି ନେଇଥିଲେ। ଏହି ସମୟରେ ସେ ଉତ୍କଳ ନବଜୀବନ ମଣ୍ଡଳର ସଭ୍ୟ ଓ କର୍ମକର୍ତ୍ତା ଭାବେ ଓଡ଼ିଶାର ଆଦିବାସୀ ବିକାଶ କ୍ଷେତ୍ରରେ ପ୍ରତ୍ୟକ୍ଷ ଅଂଶୀଦାର ହୋଇଥିଲେ। ଓଡ଼ିଶା ରାଜ୍ୟର ଦୁଇ ପ୍ରମୁଖ ଗଠନମୂଳକ ଅନୁଷ୍ଠାନ ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ ରହି ସ୍ୱର୍ଗତଃ ମାଳତୀ ଚୌଧୁରୀଙ୍କୁ ଆଦିବାସୀ ଓ ଅବହେଳିତ ବର୍ଗର ସେବାକ୍ଷେତ୍ରରେ ସେ ସହଯୋଗ ପ୍ରଦାନ କରିଥିଲେ। ୧୯୪୬ରେ ବାଜିରାଉତ ଛାତ୍ରାବାସର ପ୍ରତିଷ୍ଠା ଓ ପରିଚାଳନାରେ ଅଂଶୀଦାର

ଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କିରଣଲେଖା ରାୟଙ୍କ ସହିତ ନିଜର ବିବାହ ପରେ ଜୟୀଭାଇ ସ୍ୱାଭାବିକ ଭାବେ ଏ ଦୁଇ ଅନୁଷ୍ଠାନର ଭଲମନ୍ଦରେ ସମ୍ପୃକ୍ତ ହୋଇ ଉଭୟର ଆଜୀବନ ସଭ୍ୟ, ସମ୍ପାଦକ ଓ ସଭାପତି ଭଳି ଗୁରୁତ୍ୱପୂର୍ଣ୍ଣ ପଦବୀରେ ରହି ଓଡ଼ିଶାର କୋଣେ-ଅନୁକୋଣେ ଆଦିବାସୀ ଉନ୍ନତି କ୍ଷେତ୍ରରେ କାମ କରିବାର ସୁଯୋଗ ପାଇଥିଲେ। ତାଙ୍କର ସମ୍ପୃକ୍ତି ଉଭୟ ଅନୁଷ୍ଠାନର ସାଙ୍ଗଠନିକ ଦୃଢ଼ତା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଭାବେ ସ୍ୱୀକୃତ ହୋଇଅଛି। ଅବଶ୍ୟ ମଝିରେ ଅଳ୍ପ କିଛିଦିନ ପାଇଁ ନିଜର ପାରିବାରିକ ଅସୁବିଧା ହେତୁ କଟକ ଠାରେ ରହି ସ୍ୱର୍ଗତଃ ବିରେନ୍ ମିତ୍ର (ମୁଖ୍ୟମନ୍ତ୍ରୀ)ଙ୍କୁ ତାଙ୍କର ଏକ ଶିଳ୍ପାନୁଷ୍ଠାନ ପରିଚାଳନାରେ ସାହାଯ୍ୟ କରିଥିଲେ। ମାତ୍ର ଏଥିରେ ତାଙ୍କୁ ସନ୍ତୋଷ ନ ମିଳିବାରୁ ତାହା ପରିତ୍ୟାଗ କରି ରଚନାତ୍ମକ କ୍ଷେତ୍ରକୁ ଫେରି ଆସିଲେ। ସେହି ସମୟରୁ ଜୀବନର ଶେଷ ପର୍ଯ୍ୟନ୍ତ ସେ ନୁମା (ମାଳତୀ ଦେବୀ) ଓ ବାପୀ (ନବବାବୁ)ଙ୍କୁ ପ୍ରତ୍ୟକ୍ଷ ସହଯୋଗ ଓ ସାହଚର୍ଯ୍ୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଆଗ୍ରହୀ ଯୁବାଗୋଷ୍ଠିକୁ ରଚନାତ୍ମକ କ୍ଷେତ୍ରରେ ପ୍ରବେଶ ପାଇଁ ନିରନ୍ତର ସଫଳ ଉତ୍ସାହ ପ୍ରଦାନ କରିଥିଲେ।

ଏହି ପରିପ୍ରେକ୍ଷୀରେ ଉତ୍କଳ ନବଜୀବନ ମଣ୍ଡଳ ଓ ବାଜିରାଉତ ଛାତ୍ରାବାସ ସହିତ ତାଙ୍କର ନିବିଡ଼ ସମ୍ପର୍କ ତାଙ୍କ ଜୀବନର ଏକ ଉଲ୍ଲେଖନୀୟ ଅଧ୍ୟାୟ ଅଟେ। ରାଜନୀତି କ୍ଷେତ୍ରରେ ଦକ୍ଷତା ଓ ପ୍ରତିଷ୍ଠା ଲାଭ କରି ଦୁଇ ଦୁଇଥର ବିଧାୟକ ହୋଇଥିବା ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କ୍ଷମତା ଲୋଭ ନ ରଖି କାହିଁକି ଯେ ସେ କ୍ଷେତ୍ରରୁ ସ୍ୱେଚ୍ଛାକୃତ ବିଦାୟ ଘେନିଲେ ତାହା ତାଙ୍କର ଏହି ପର୍ଯ୍ୟାୟ ଜୀବନ ଅନୁଧ୍ୟାନ କଲେ ବୁଝିହୁଏ।

ପ୍ରାୟତଃ ୧୯୫୮ ମସିହାଠାରୁ ଏହି ଅଧ୍ୟାୟ ଆନୁଷ୍ଠାନିକ ଭାବେ ଆରମ୍ଭ ହୋଇଥିବା ଜଣା ଯାଉଥିଲେ ବି ଏ ଦୁଇ ଅନୁଷ୍ଠାନର ଆରମ୍ଭ କାଳରୁ ଉଭୟ ସହିତ ତାଙ୍କର ନିବିଡ଼ ସମ୍ପର୍କ ରହିଥିବା ତାଙ୍କ ସହ ଅନ୍ତରଙ୍ଗ ଆଳାପ ଆଲୋଚନାରୁ ପ୍ରତୀୟମାନ ହୋଇଅଛି। ବାସ୍ତବ ପକ୍ଷେ ଏହି ସମ୍ପର୍କରେ ଉତ୍ସ ଥିଲା ଚୌଧୁରୀ ପରିବାର, ବିଶେଷ କରି ନୁମା-ବାପାଙ୍କ ପ୍ରତି ତାଙ୍କର ସ୍ୱତନ୍ତ୍ର ଆକର୍ଷଣ ଓ ଅନୁରକ୍ତି। ଅପରପକ୍ଷରେ, ଉତ୍କଳ ନବଜୀବନ ମଣ୍ଡଳ ସହିତ ତାଙ୍କର ସମ୍ପର୍କକୁ ବାଜିରାଉତ ଛାତ୍ରାବାସର ସମ୍ପର୍କ ଠାରୁ ଅଲଗା କରି ବିଚାର କରାଯାଇ ପାରିବ ନାହିଁ। ବାଜିରାଉତ ଛାତ୍ରାବାସର ଜଣେ ଆଦ୍ୟ ଶିକ୍ଷୟତ୍ରୀ ଏବଂ କର୍ମକର୍ତ୍ତା କିରଣଲେଖା ରାୟଙ୍କ ସହିତ ତାଙ୍କର ବିବାହର କିଛି ଦିନ ପୂର୍ବରୁ ଜଣେ ବିଧାୟକ ଭାବେ ସେ ଅନୁଗୋଳସ୍ଥ ଏହି ଦୁଇ ଅନୁଷ୍ଠାନକୁ ସାହାଯ୍ୟ କରି ଆସିଥିବା ଜଣାଯାଏ। ନବକୃଷ୍ଣ ଚୌଧୁରୀ (ବାପୀ) ୧୯୪୬ ଠାରୁ ରାଜସ୍ୱମନ୍ତ୍ରୀ ଓ ପରେ ୧୯୫୦ ମସିହାରୁ ମୁଖ୍ୟମନ୍ତ୍ରୀ ଥିଲେ। ମାଳତୀ ଚୌଧୁରୀ (ନୁମା)ଙ୍କ ଦ୍ୱାରା ପରିଚାଳିତ ଏହି ଦୁଇ ଅନୁଷ୍ଠାନ ପାଇଁ ସରକାରୀ ସହାୟତା ଲାଭରେ ଜୟୀଭାଇ ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ। କାରଣ ମାଳତୀ ଚୌଧୁରୀ ନିଜ ଅନୁଷ୍ଠାନ ପାଇଁ ସରକାରୀ ଉପର ସ୍ତରରେ ପ୍ରବେଶ କରିବାକୁ ପ୍ରଭାବ ପକାଇବା ବୋଲି ଦର୍ଶାଇ ଗଣମାଧ୍ୟମ ସମାଲୋଚନାର ସାମଗ୍ରୀ ପାଇଥାନ୍ତା। ପୁଣି, ତାଙ୍କର ଦୀର୍ଘ ରାଜନୈତିକ ଜୀବନ ଭିତରେ ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତିତ୍ୱ ଓ ଭାରତର ସମ୍ବିଧାନ ସଭା (Constituent Assembly)ର ସଦସ୍ୟା ଭାବେ ପ୍ରାଦେଶିକ ପ୍ରଶାସନିକ କ୍ଷେତ୍ରରେ ପ୍ରଭାବ ପକାଇବା ମଧ୍ୟ ସାଧାରଣରେ କଟୁ ଆଲୋଚନାର ବିଷୟ ହୋଇଥାନ୍ତା। କିଛି କିଛି ଭିତ୍ତିହୀନ ଆଲୋଚନା ଯେ ନ ହୋଇଛି, ଏହା ନୁହେଁ। ସେତେବେଳେ ରାଜନୈତିକ ବାତାବରଣ ସହିତ

ପରୋକ୍ଷ ସମ୍ପର୍କ ଥିବା ଏହି ଲେଖକର ଏହାହିଁ ଅଭିଜ୍ଞତା ଭିତ୍ତିକ ମତାମତ। ସେ ଯାହାହେଉ, ନବକୃଷ୍ଣ ଚୌଧୁରୀଙ୍କର ରାଜନୈତିକ ଭାବମୂର୍ତ୍ତିକୁ କ୍ଷୁଣ୍ଣ କଲାଭଳି କିଛି ନକରିବାକୁ ମାଳତୀ ଦେବୀ ସର୍ବଦା ଚେଷ୍ଟା କରିଥିବା ଆମେ ଲକ୍ଷ୍ୟ କରିଛୁ। ସେତେବେଳେ ଜଣେ ଲୋକ ପ୍ରତିନିଧିଙ୍କର ସମ୍ମାନ ଆଜିର ପରିବେଶରେ କଳ୍ପନା କରାଯାଇ ପାରେ ନାହିଁ। ଅଧିକାଂଶ ଲୋକ ପ୍ରତିନିଧି ଜଣେ ଜଣେ ଆଦର୍ଶବାଦୀ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ। ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ ଆଦିବାସୀ ସେବାକ୍ଷେତ୍ରରେ ଓଡ଼ିଶାରେ ସର୍ବପ୍ରଥମ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଭାବେ ଯଥାବିଧି ସରକାରୀ ସହାୟତା ପାଇଁ ହକ୍‌ଦାର ଥିଲେ। ଜୟୀଭାଇଙ୍କର ଏଥିପାଇଁ ଉଦ୍ୟମ ଯଥାର୍ଥରେ ସହାୟକ ହୋଇଥିଲା। ମାତ୍ର ସେ ଏଥିପାଇଁ କେବେ ଅଯଥା ପ୍ରଭାବ ପକାଇ ନାହାନ୍ତି। ତାଙ୍କର ଅମାୟିକ, ମେଳାପୀ ବ୍ୟବହାର ଓ ହୃଦୟଗ୍ରାହୀ (convincing) ଭାଷା ଛାଏଁ ଛାଏଁ କାମ କରିଥାଏ। ଜୀବନର ଶେଷ ଯାଏଁ ଏହି ବୈଶିଷ୍ଟ୍ୟ ଅବ୍ୟାହତ ରହିଥିଲା। ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କାଳରେ ପ୍ରଶାସକମାନଙ୍କ ପକ୍ଷରେ ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ ଭଳି ସ୍ୱେଚ୍ଛାସେବୀ ରଚନାତ୍ମକ ସଙ୍ଗଠନର ଭୂମିକାକୁ ବୁଝିବା ସହଜ ନଥିଲା। ଜୟୀଭାଇ ସେମାନଙ୍କୁ ବୁଝାଇବା କାର୍ଯ୍ୟ ଅତ୍ୟନ୍ତ ସୌହାର୍ଦ୍ଦ୍ୟପୂର୍ଣ୍ଣ କରି ପାରୁଥିଲେ। କାହାରି ପ୍ରତି ତାଙ୍କର ଆକ୍ରୋଶ ନଥିଲା, କି କାହାରି ଅପ୍ରତ୍ୟାଶିତ ବ୍ୟବହାରରେ ବ୍ୟଥିତ ହେବା ଆମେ ଦେଖି ନାହୁଁ। ବେଳ ଥିଲା ଉତ୍କଳ ନବଜୀବନ ମଣ୍ଡଳ ପାଇଁ ରାଜ୍ୟ ବଜେଟ୍‌ରେ ସ୍ୱତନ୍ତ୍ର ଆର୍ଥିକ ବ୍ୟବସ୍ଥା ଲକ୍ଷାବଧି ହୋଇ ପାରିଥିଲା, ମାତ୍ର ଏବେ ଏହା ଶୂନ୍ୟରେ ପହଞ୍ଚିଛି।

୧୯୪୬ ମସିହାରେ ପ୍ରତିଷ୍ଠିତ ବାଜିରାଉତ ଛାତ୍ରାବାସ ପାଇଁ ପ୍ରାଥମିକ ସରକାରୀ ଅନୁଦାନ ଅତ୍ୟାବଶ୍ୟକ ଥିଲା। ସାଧାରଣ ଯତ୍ନ ତଥା ଶିକ୍ଷା ସୁବିଧାରୁ ବଞ୍ଚିତ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ସଂଗ୍ରାମୀ ଓ ରାଜ୍ୟର ଅନ୍ୟ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କର ପିଲାମାନଙ୍କର ଭବିଷ୍ୟତ ଗଠନ ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ଏହି ଅନୁଷ୍ଠାନ ରାଜ୍ୟରେ ମହାତ୍ମା ଗାନ୍ଧୀଙ୍କର ମୌଳିକ ରାଷ୍ଟ୍ରୀୟ ଶିକ୍ଷାର ପ୍ରୟୋଗ ପାଇଁ ଏକ ପ୍ରକୃଷ୍ଟ କ୍ଷେତ୍ର ଥିଲା। ମାତ୍ର ଶୂନ୍ୟହସ୍ତା ମାଳତୀ ଚୌଧୁରୀଙ୍କ ପକ୍ଷେ ନିଜର ଏହି ବିରାଟ ପରିକଳ୍ପନାକୁ ସଫଳ ରୂପ ଦେବା ସହଜ ନଥିଲା। ଦରିଦ୍ରତମ ରାଜ୍ୟ ଓଡ଼ିଶାରେ ଭିକ୍ଷାଥଳି ଧରି ଏହାର ପରିଚାଳନା ଦୁରୂହ ବ୍ୟାପାର ଥିଲା। ବେସରକାରୀ ଅନୁଷ୍ଠାନମାନଙ୍କୁ ସରକାରୀ ଅନୁଦାନ ସମୁଦ୍ରକୁ ଶଙ୍ଖେ ସଦୃଶ। ନବବାବୁ ରାଜସ୍ୱମନ୍ତ୍ରୀ ଥିଲାବେଳେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ (ପ୍ରଧାନମନ୍ତ୍ରୀ) ହରେକୃଷ୍ଣ ମହତାବଙ୍କ ଦ୍ୱାରା ଉଦ୍‌ଘାଟିତ ଏହି ଅଭିନବ ପରିକଳ୍ପନା ପାଇଁ ଯୋଜନାବଦ୍ଧ ସରକାରୀ ସହାୟତାର ବ୍ୟବସ୍ଥା ହୋଇନଥିଲା। ପରବର୍ତ୍ତୀ କାଳରେ ମହତାବ ବାବୁ ମୌଳିକ ଶିକ୍ଷାର ବିରୋଧି ହୋଇଯିବା ଫଳରେ ସାରା ଭାରତରେ ଓଡ଼ିଶାରେ ହିଁ ପ୍ରଥମ କରି ଏହି ଶିକ୍ଷାର ପ୍ରୟୋଗକୁ ବନ୍ଦ କରି ଦିଆଗଲା। (ଅବଶ୍ୟ ଏହା ଏକ ବ୍ୟାପକ ଆଲୋଚନାର ବିଷୟ ଅଟେ।) ତଥାପି ଯେଉଁ କିଛି ସରକାରୀ ସହାୟତା ମିଳିଥିଲା ତାହା ମଧ୍ୟରେ ୨୦ଟି ପିଲାଙ୍କୁ ମାସିକ ୧୬ ଟଙ୍କା କରି ଭୋଜନ ଅନୁଦାନ ଓ ଅନୁଷ୍ଠାନର ଅଳ୍ପକେତେଜଣ କର୍ମକର୍ତ୍ତାଙ୍କୁ ନଗଣ୍ୟ ଭତ୍ତା ଅନ୍ତର୍ଭୁକ୍ତ ଥିଲା। ଏହାକୁ ଏକ ସରକାରୀ ଅନୁଷ୍ଠାନ ରୂପେ ଗଢ଼ି ମୌଳିକ ଶିକ୍ଷାର ସଫଳ ପ୍ରୟୋଗ କରାଯାଇ ପାରିଥାନ୍ତା। ମାତ୍ର ପରିକଳ୍ପନା-କାରିଣୀ ମାଳତୀ ଚୌଧୁରୀ ସରକାରୀ ଆଦବକାୟଦା ଓ

ହସ୍ତକ୍ଷେପର ଆଶଙ୍କା କରି ସେପରି କଲେ ନାହିଁ। ଫଳରେ ନିଜ ଦଳର ନେତ୍ରୀ ତଥା ଅଧ୍ୟକ୍ଷାଙ୍କ ପରିକଳ୍ପନାକୁ କାର୍ଯ୍ୟକାରୀ କରିବାକୁ ଶ୍ରୀ ମହାନ୍ତି ସହଯୋଗର ହାତ ବଢ଼ାଇବା ଖୁବ୍ ସମୀଚିନ ଥିଲା। ସେ ଜଣେ ଗାନ୍ଧୀବାଦୀ ଭାବେ ମୌଳିକ ଶିକ୍ଷାକୁ ପସନ୍ଦ କରିବା ସହିତ ବାଜିରାଉତ ଛାତ୍ରାବାସରେ ତାହାର ସଫଳ ପ୍ରୟୋଗରେ ସନ୍ତୋଷ ପ୍ରକାଶ କରି ନିଜର ପୁଅ-ଝିଅଙ୍କୁ ଏଠାରେ ପ୍ରାଥମିକ ଶିକ୍ଷାର ସୁଯୋଗ ଦେଇଥିଲେ। ସମୟକ୍ରମେ ଅନ୍ତେବାସୀ ସଂଖ୍ୟା ବଢ଼ି ଚାଲିଲା ସତ। ମାତ୍ର ଆରମ୍ଭରେ ଦିଆଯାଉଥିବା ଭୋଜନ ବୃତ୍ତି ସରକାର ବନ୍ଦ କରିଦେବାରେ ଗ୍ରାମମଙ୍ଗଳ ବିଭାଗରୁ ମିଳୁଥିବା ତଫସିଲଭୁକ୍ତ ଜାତି ଓ ଜନଜାତିର ପିଲାଙ୍କ ପାଇଁ ଛାତ୍ର ବୃତ୍ତିର ବ୍ୟବସ୍ଥା କରାଗଲା। ତଥାପି ସାଧାରଣବର୍ଗର ଦରିଦ୍ର-ଅବହେଳିତ ପିଲାଙ୍କୁ ଏଠାରେ ସୁଯୋଗ ଦେବାପାଇଁ ଜୟୀଭାଇ ଏହାର ସଭାପତି ଥିବାବେଳେ ମହିଳା ଓ ଶିଶୁ କଲ୍ୟାଣ ବିଭାଗର ବାଳାଶ୍ରମ (Orphanage) ବ୍ୟବସ୍ଥାନୁଯାୟୀ ଚାରିଗୋଟି ଏକକ ମଞ୍ଜୁର କରାଇ ଏକଶହ ଛାତ୍ର-ଛାତ୍ରୀଙ୍କୁ ଶିକ୍ଷା ବ୍ୟବସ୍ଥା କରାଯାଇଛି। ଅବଶ୍ୟ ପ୍ରଥମେ ପ୍ରଥମେ ନୁମା (ମାଳତୀ ଦେବୀ) ଏହି ନୂତନ ବ୍ୟବସ୍ଥାକୁ ପସନ୍ଦ କରି ପାରିନଥିଲେ। ମାତ୍ର ଅନୁଷ୍ଠାନକୁ ବଞ୍ଚାଇବାକୁ ଗତ୍ୟନ୍ତର ନଥିଲା। ଅନ୍ୟପକ୍ଷେ ପର୍ଯ୍ୟାପ୍ତ ଆର୍ଥିକ ସୁଯୋଗ ମଧ ନଥିଲା। ଏଥିରୁ ଶ୍ରୀ ମହାନ୍ତିଙ୍କର ବାଜିରାଉତ ଛାତ୍ରାବାସ ପ୍ରତି ମମତା ତଥା ଏହାର ଉତ୍ତରୋତ୍ତର ଉନ୍ନତିରେ ଆଗ୍ରହ ପ୍ରତିପାଦିତ ହୁଏ। ବୟସ ଓ ଶାରୀରିକ ଅସୁବିଧା ସତ୍ତ୍ୱେ ନିରବଚ୍ଛିନ୍ନ ପ୍ରତ୍ୟକ୍ଷଭାବେ ସମ୍ପୃକ୍ତ ନରହି ମଧ ସେ ନିଜର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଏ ଦିଗରେ ମାର୍ଗଦର୍ଶନ ଦେବାରେ କୁଣ୍ଠିତ ହୋଇନାହାନ୍ତି।

ଜୟୀଭାଇ ଉତ୍କଳ ନବଜୀବନ ମଣ୍ଡଳ ସହିତ ପ୍ରତ୍ୟକ୍ଷଭାବେ ୧୯୫୮ ମସିହାରେ ସମ୍ପୃକ୍ତ ହେବା କଥା ପୂର୍ବରୁ କହିଛି। ସେହି ବର୍ଷର ମାର୍ଚ୍ଚ ୧୯ ତାରିଖ ଠାରୁ ସେ ଏହାର କାର୍ଯ୍ୟକାରୀ ସମିତି ସଭ୍ୟ ଓ ସହ-ସମ୍ପାଦକ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ। ପରେ ୧୯୬୧ ମଇ ମାସଠାରୁ ସମ୍ପାଦକ ଦାୟିତ୍ୱ ତୁଲାଇଲେ। ମାତ୍ର ୧୯୬୨ ମସିହା ଅପ୍ରେଲ ମାସରେ ନିଜର ପାରିବାରିକ ଅସୁବିଧା ବଶତଃ ସମ୍ପାଦକତ୍ୱରୁ ଅବ୍ୟାହତି ନେଇଥିଲେ ହେଁ ପୂର୍ବଭଳି କାର୍ଯ୍ୟକାରୀ ସମିତି ସଭ୍ୟ ରହିଥିଲେ। ପରେ ୨୫.୬.୬୮ ଠାରୁ ୨୧.୬.୭୪ ଓ ପୁଣି ୨.୫.୭୬ ଠାରୁ ୩୧.୧.୮୫ ପର୍ଯ୍ୟନ୍ତ ଏହାର କୋଷାଧ୍ୟକ୍ଷ ଥିଲେ। ୨୨.୨.୮୭ ତାରିଖ ମଣ୍ଡଳର କାମାକ୍ଷାନଗର ବାର୍ଷିକ କର୍ମୀ ସମ୍ମିଳନୀରେ କର୍ମୀମାନଙ୍କ ତରଫରୁ ମାଳତୀ ଦେବୀଙ୍କୁ ଏକ ଲକ୍ଷ ଟଙ୍କାର ଥଳି ଭେଟି ଦିଆଯିବା ପାଇଁ ପ୍ରସ୍ତାବ ଗୃହିତ ହେବାରେ ଜୟୀଭାଇ ଏଥିପାଇଁ ସଂଯୋଜକ ରହିବାକୁ ସମ୍ମତ ହୋଇଥିଲେ। ଏହି ସମୟରେ ମୁଁ ମଣ୍ଡଳର ସାଧାରଣ ସମ୍ପାଦକ ଥିଲି। ଥଳି ଭେଟି ପାଣ୍ଠି ଏକଲକ୍ଷ ସ୍ଥଳେ ଏକଲକ୍ଷ ଏଗାର ହଜାର ସଂଗୃହିତ ହେବାରେ ତାଙ୍କର ଅବଦାନ ଉଲ୍ଲେଖନୀୟ ଥିଲା। ପରେ ୧୨.୪.୮୭ ଠାରୁ ୧୦.୨.୮୮ ପର୍ଯ୍ୟନ୍ତ ସେ ଉତ୍କଳ ନବଜୀବନ ମଣ୍ଡଳର ସଭାପତି ଆସନ ଅଳଙ୍କୃତ କରିଥିଲେ ଏବଂ ଶେଷ ଜୀବନ ପର୍ଯ୍ୟନ୍ତ ଏହାର କାର୍ଯ୍ୟକାରୀ ସମିତିର ଜଣେ ପ୍ରଭାବଶାଳୀ ସଭ୍ୟ ଭାବେ ମଣ୍ଡଳର ବିଭିନ୍ନ ନିଷ୍ପତ୍ତି ଓ କାର୍ଯ୍ୟକ୍ରମରେ ଦିଗ୍‌ଦର୍ଶନ ପ୍ରଦାନ କରିଥିଲେ।

ବାଜିରାଉତ ଛାତ୍ରାବାସ ଓ ଉତ୍କଳ ନବଜୀବନ ମଣ୍ଡଳ ସହିତ ତାଙ୍କର ସମ୍ପର୍କ ଏତିକିରେ ସୀମିତ ନୁହେଁ। ମାଳତୀ ଦେବୀଙ୍କର ଇଚ୍ଛାନୁସାରେ ସେ ପାଇଥିବା ଥଳିଭେଟି ଓ ବଜାଜ୍ ପୁରସ୍କାର ଅର୍ଥକୁ ସମ୍ବଳ କରି ଏକ

ଟ୍ରଷ୍ଟ ଗଢ଼ିବା କାର୍ଯ୍ୟ ଏକମାତ୍ର ଜୟୀଭାଇଙ୍କ ଯୋଗେ ସଫଳତାର ସହିତ ସମ୍ଭବ ହୋଇଅଛି, କହିଲେ ଅତ୍ୟୁକ୍ତି ହେବ ନାହିଁ। ସେ ପ୍ରଥମେ ଏହି "ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ"ର ସଂଯୋଜକ ଓ ପରେ ଏହା ରେଜିଷ୍ଟ୍ରିକୃତ ହେବାରେ ଏହାର ସମ୍ବିଧାନ ଅନୁଯାୟୀ ସମ୍ପାଦକ ଦାୟିତ୍ୱ ଗ୍ରହଣ କରିଥିଲେ। ଏହାର ପ୍ରଥମ ସଭାପତି ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରବୀନ୍ଦ୍ର ମୋହନ ଦାସ ଗତ ୨୩.୧.୨୦୦୫ ତାରିଖରେ ବୟସ ଓ ଶାରୀରିକ ଅସୁବିଧା ହେତୁ ଅବ୍ୟାହତି ନେବା ପରଠାରୁ ଜୟୀଭାଇ ଏହାର ସଭାପତି ଭାବେ ଶେଷ ଜୀବନ ପର୍ଯ୍ୟନ୍ତ କାର୍ଯ୍ୟ ତୁଲାଇଥିଲେ। ତାଙ୍କର ବିଶେଷ ଉଦ୍ୟମ ଓ ଆଗ୍ରହ ଫଳରେ ଏହି ଟ୍ରଷ୍ଟର ପାଣ୍ଠି ବିଧିବଦ୍ଧ ସମସ୍ତ ବ୍ୟୟପରେ ଏବେ ୧୦ ଲକ୍ଷରୁ ଉର୍ଦ୍ଧ୍ୱ ହୋଇ ପାରିଛି। ଏହି ଟ୍ରଷ୍ଟ ପାଣ୍ଠିର ଉପଲବ୍ଧ ସୁଧରୁ ସାଧାରଣ ଆନୁଷ୍ଠାନିକ ଖର୍ଚ୍ଚ ପରେ ଶତକଡ଼ା ୮୦ ଭାଗ ଉତ୍କଳ ନବଜୀବନ ମଣ୍ଡଳ ଏହାର ସମାଜ ସେବା କାର୍ଯ୍ୟକ୍ରମ ପାଇଁ ଅନୁଦାନ ଭାବେ ପାଇବାର ବ୍ୟବସ୍ଥା ଟ୍ରଷ୍ଟ ସମ୍ବିଧାନରେ ଆରମ୍ଭରୁ ରଖା ଯିବା ପଛରେ ଜୟୀଭାଇଙ୍କର ମଣ୍ଡଳ କାର୍ଯ୍ୟକ୍ରମରେ ସ୍ୱତନ୍ତ୍ର ଆଗ୍ରହ ହେତୁ ସମ୍ଭବ ହୋଇଅଛି।

ଏହି ସବୁ ଅନୁଷ୍ଠାନ ପ୍ରତି ତାଙ୍କର ଅବଦାନ କେବଳ ଉଲ୍ଲେଖନୀୟ ନୁହେଁ, ଅଧିକନ୍ତୁ ଅନୁକରଣୀୟ ଏବଂ ଅବିସ୍ମରଣୀୟ ମଧ୍ୟ। ଏହିଭଳି ଜଣେ ଅମାୟିକ, ମହାନ ଉଦାରମନା ବ୍ୟକ୍ତିତ୍ୱଙ୍କ ସହିତ ପ୍ରାୟ ୬୦ ବର୍ଷ ଧରି ବିଭିନ୍ନ କ୍ଷେତ୍ର ଓ କାର୍ଯ୍ୟକ୍ରମରେ ସମ୍ପୃକ୍ତ ରହି ମୁଁ ନିଜକୁ ଗୌରବାନ୍ୱିତ ଓ ଧନ୍ୟ ମନେ କରୁଛି। "କୁସୁମପରଶେ ପଟନିସ୍ତରେ"।

ପୂର୍ବତନ ପ୍ରଧାନଶିକ୍ଷକ ଓ ସଭାପତି, ବାଜିରାଉତ ଛାତ୍ରାବାସ
ପୂର୍ବତନ ସାଧାରଣ ସମ୍ପାଦକ, ଉତ୍କଳ ନବଜୀବନ ମଣ୍ଡଳ
ଆଜୀବନ ସଦସ୍ୟ, ମାଳତୀଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ।

●●

ସମାଜରେ ମଣିଷ ଭଳି ମଣିଷ ଅଭାବ ସବୁବେଳେ। ସେଥିପାଇଁ ଅତ୍ୟନ୍ତ ଦୁଃଖରେ, କ୍ଷୋଭରେ, ବେଦନାଦଗ୍ଧ ହୃଦୟରେ ଋଷିପ୍ରାଣ ମଧୁସୂଦନ ଲେଖିଯାଇଛନ୍ତି -

କୋଟିଏ ସନ୍ତାନ ମା ଧରିଛୁ ତୁ କୋଳେ,
ଗୋଟିଏ ମଣିଷ କାହିଁ ମୁଁ ନ ଦେଖିଲି ଡ଼ୋଳେ।

# ଜୟୀଭାଇ ପ୍ରଣାମ

**ସୁଶ୍ରୀ ଦାସ**

ଯାହାଙ୍କ କଥା ମନେ ପଡ଼ିଲେ ଶ୍ରଦ୍ଧା, ଭକ୍ତି, ଭଲପାଇବାରେ ମଥା ନଇଁଯାଏ, ସେ ଜୟୀଭାଇ। ନମ୍ରତାର ପ୍ରତିମୂର୍ତ୍ତି, ନିଜକୁ ଘାସ ଠାରୁ ବି ଆହୁରି ଛୋଟ ମନେ କରୁଥିବା, ସଦା ହସ ହସ ମୁହଁରେ ଯାହାକୁ ଦେଖିଲେ ପାଛୋଟି ନେବା, ସମସ୍ତଙ୍କୁ ସହଜରେ ଆପଣାର କରିନେବା, ପୁଣି ସମସ୍ତଙ୍କ ଭିତରେ ନିଜକୁ ହଜେଇ ଦବାର ଅଦ୍ଭୁତ ଗୁଣଗୁଡ଼ିକ ଯାହାଙ୍କଠାରେ ଥିଲା ସେ ସେଇ ଜୟୀଭାଇ - ଜୟକୃଷ୍ଣ ମହାନ୍ତି। ଆମକୁ ଛାଡ଼ି ଚାଲିଗଲେଣି ବର୍ଷେ ହେଲା।

ସେ ଦଶବର୍ଷ ବିଧାୟକ ଥିଲେ, ଖଦୀବୋର୍ଡରେ ଅନେକ ବର୍ଷ ପ୍ରେସିଡେଣ୍ଟ ଥିଲେ, ଆଉ କେତେ କଣ କମିଟିର ସଭ୍ୟ ଥିଲେ, ମୋର ସବୁ କଥା ମନେ ନାହିଁ, କିନ୍ତୁ ଏ ସବୁ ତାଙ୍କ ବଡ଼ପଣିଆକୁ ଜାହିର କରିବାକୁ କିଛି ବି ନୁହେଁ। ମୁଁ କେବଳ ଜାଣିଛି, ସ୍ୱାଧୀନତା ସଂଗ୍ରାମୀମାନଙ୍କ ଭିତରେ ସେ ଥିଲେ ଅଗ୍ରଣୀ, ଆଉ ଯେତେବେଳେ ସ୍ୱାଧୀନତା ପ୍ରାପ୍ତିର ଅନେକ ବର୍ଷ ପରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ମାନିତ କରିବା ପାଇଁ ଦିଲ୍ଲୀ ଡକାଯାଇଥିଲା, ପ୍ରଥମ ଦଫାରେ ଓଡ଼ିଶାରୁ ଜୟୀଭାଇ ଯାଇଥିଲେ ଓ ମାନପତ୍ର ପାଇଥିଲେ।

ଏତିକିରେ ତାଙ୍କ କଥା ସରିଯାଇନି। କର୍ମମୟ ଜୀବନ ତାଙ୍କର ଥିଲା ଦୀର୍ଘ। ନିଷ୍ଠାପର, ତ୍ୟାଗପୂତ ଜୀବନର ନମୁନା ଅସଂଖ୍ୟ - ସେଗୁଡ଼ିକ ବଖାଣି ବସିବା ମୋ ଶକ୍ତିର ବାହାରେ। ମୁଁ କିନ୍ତୁ ତାଙ୍କୁ ଦେଖିଛି ଓ ଜାଣିଛି ଅତି ପାଖରୁ। ଅନେକଦିନର ସମ୍ପର୍କ ଆମର। ବଡ଼ଭାଇ ପରି ସେ ମୋର ଅତି ସମ୍ମାନନୀୟ। କିରଣଅପା, ଯିଏ ଥିଲେ ତାଙ୍କର ଜୀବନସାଥୀ, ତାଙ୍କୁ ଛାଡ଼ି ବହୁତ ଆଗରୁ ଏ ଦୁନିଆରୁ ବିଦାୟ ନେଇ ଯାଇଛନ୍ତି। ସେ ଦୁଃଖ ବି ସେ ବରଦାସ୍ତ କରିଥିଲେ ସେଇ ହସ ହସ ମୁହଁରେ। ସଦା ପ୍ରଫୁଲ୍ଲ, ହସହସ, ସ୍ଥିର, ଅବିଚଳିତ - ଏଗୁଡ଼ିକ ଥିଲା ତାଙ୍କ ବ୍ୟକ୍ତିତ୍ୱର ଏକ ବିଶିଷ୍ଟ ଦିଗ। ଆଶ୍ଚର୍ଯ୍ୟର କଥା କିରଣଅପାଙ୍କ ଅନୁପସ୍ଥିତିରେ ବି ତାଙ୍କ ସହିତ ସମ୍ପର୍କ ଫିକା ପଡ଼ିବା ପରିବର୍ତ୍ତେ ଆହୁରି ଗାଢ଼ ହୋଇଥିଲା। ଜାଣେନି କାହିଁକି ଏକ ଅହେତୁକ ଭରସା ଆଉ ବିଶ୍ୱାସ ତାଙ୍କର ମୋ ଉପରେ ଥିଲା। ଯେତେବେଳେ ଯେଉଁଠି ସାମାନ୍ୟ କିଛି ଦ୍ୱନ୍ଦରେ ପଡ଼ିଛନ୍ତି ସାଙ୍ଗେ ସାଙ୍ଗେ ମତେ ଫୋନ ଲଗାନ୍ତି। ସେଇ ବିଶ୍ୱାସ ଭଲପାଇବାର ବର୍ଷାରେ ମୁଁ ଜୁଡୁବୁଡୁ ହୋଇଯାଏ। ଛାତିଟା ଗର୍ବରେ ଫୁଲି ଉଠେ। ପୁଣି ମୁଣ୍ଡ ନଇଁଯାଏ ତାଙ୍କ ପାଖରେ। ହୁଏତ ମୁଁ ଏକା ନୁହେଁ, ତାଙ୍କ ସମ୍ପର୍କରେ ଆସିଥିବା ଅନେକ ଠିକ୍ ମୋ ପରି ଭାବୁଥିବେ। ମୁଁ କିନ୍ତୁ ନିଜକୁ ନିଜେ ଟେକି ହୁଏ, ଭାବେ ଏମିତି ନିଃସ୍ୱାର୍ଥପର ଭଲପାଇବା ଭାଗ୍ୟରେ ଥିଲେ ମିଳେ। ମଣିଷପଣିଆର ପରାକାଷ୍ଠା ତାଙ୍କ ପାଖରେ ମୁଁ ଦେଖିଥିଲି, ଅନୁଭବ କରିଥିଲି, ନାମ, ଯଶ, ଖ୍ୟାତି, ପ୍ରତିଷ୍ଠା ସବୁ ପଛକୁ ଥାଉ, ଏଇ ମଣିଷପଣିଆହିଁ ତାଙ୍କ ଜୀବନକୁ ଚିର ଜାଜ୍ୱଲ୍ୟମାନ କରି ରଖିଥିବ।

କିରଣଅପା ଯାଇଥିଲେ, ଜୟୀଭାଇ ଗଲେ। ଛାତି ଭିତରଟା ବେଳେବେଳେ କେମିତି ଶୂନ୍ୟ ଲାଗେ, କିନ୍ତୁ ସେମାନଙ୍କ ସାଙ୍ଗେ ବିତେଇଥିବା ସେଇ କେତୋଟି ଦିନର ମଧୁର ସ୍ମୃତି ବଞ୍ଚିଥିବା ଯାଏଁ ମୋ ଜୀବନର ଅମୂଲ୍ୟ ସମ୍ପଦ ହୋଇ ରହିବ, ଆଉ ଏଇ ଶୁଷ୍କ ନୀରସ ଜୀବନଟାକୁ ସଦାସର୍ବଦା ରସାଣିତ କରୁଥିବ। ଆଜି ପ୍ରଥମ ଶ୍ରାଦ୍ଧ ବାର୍ଷିକିରେ ତାଙ୍କ ପାଦତଳେ ମୋର ଶତକୋଟି ପ୍ରଣାମ।

ଶହୀଦ ନଗର

# ଜୟୀଭାଇ ଯଦି ଥାଆନ୍ତେ

ବ୍ରଜକିଶୋର ତ୍ରିପାଠୀ

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସର୍ବୋଦୟ ନେତା ଏବଂ ପ୍ରଖ୍ୟାତ ଗାନ୍ଧିବାଦୀ, ପୂର୍ବତନ ବିଧାୟକ ସ୍ୱର୍ଗତ ଜୟକୃଷ୍ଣ ମହାନ୍ତି ରାଜ୍ୟର ଜଣେ ଅବିସ୍ମରଣୀୟ ତଥା ବିରଳ ବ୍ୟକ୍ତିତ୍ୱ। ଏକାଧାରରେ ସେ ଥିଲେ ଜଣେ ଆଦର୍ଶ ଶିକ୍ଷକ, ପିତା ଓ ସ୍ୱାଧୀନଚେତା ଲୋକ ପ୍ରତିନିଧି। ସୁପ୍ତ ଆଗ୍ନେୟଗିରି ଭଳି ସେ ଥିଲେ ସଦା ଶାନ୍ତ, ସୁଧୀର। କିନ୍ତୁ ଅନ୍ୟାୟ, ଅନୀତି, ଅଶୋଭନୀୟ କାର୍ଯ୍ୟ, ଦୁର୍ନୀତି-ଭ୍ରଷ୍ଟାଚାର ଓ ଅଗଣତାନ୍ତ୍ରିକ ବ୍ୟବସ୍ଥା ବିରୁଦ୍ଧରେ ତାଙ୍କଠାରୁ ନିର୍ଗତ ହୁଏ ଆଗ୍ନେୟଗିରିର ବିସ୍ଫୋରଣ ଭଳି ପ୍ରତିକ୍ରିୟା। ଯୌବନରେ ଦେଶର ସ୍ୱାଧୀନତା ଆନ୍ଦୋଳନ ସମୟରେ ସଂଗ୍ରାମୀ ଜୀବନ ଆରମ୍ଭ ହୁଏ ହିଂସାତ୍ମକ କାର୍ଯ୍ୟକ୍ରମକୁ ନେଇ ଓ ସମର୍ପିତ ହୁଏ ଗାନ୍ଧିଜୀଙ୍କ ଅହିଂସାତ୍ମକ ସଂଗ୍ରାମରେ। ତାଙ୍କ ପାଖରେ ଥିଲା ଅସାଧାରଣ ବ୍ୟକ୍ତିତ୍ୱର ପ୍ରତିଭା। ସ୍ନେହୀ, ଅଥଚ ରୁଚିରେ ବାଛ-ବିଚାର। ଆଦର୍ଶ ସହ ସାଲିସ ନାହିଁ। ସ୍ୱାଧୀନତା ସଂଗ୍ରାମ ହେଉ, କିମ୍ବା ଦେଶରେ ଜରୁରୀ ପରିସ୍ଥିତିର ଅନ୍ଧକାର ହେଉ, ସେ ଥିଲେ ସମସ୍ତଙ୍କର ଆଲୋକ ବର୍ତ୍ତିକା ସଦୃଶ। ନିଜେ ଜେଲର ଅନ୍ଧାର କୋଠରୀ ଭିତରେ ସଢ଼ି, ଦେଶ ଓ ଆଦର୍ଶ ପାଇଁ ଅନ୍ୟର ଉଦାହରଣ ଥିଲେ।

ମୋର ସୌଭାଗ୍ୟ ମୁଁ ତାଙ୍କର ସାନ୍ନିଧ ପାଇଥିଲି, ସ୍ନେହ ପାଇଥିଲି। ସେ ମୋତେ ବହୁତ ଭଲପାଉଥିଲେ, ଖାଲି ମୋତେ ନୁହେଁ, ସମସ୍ତଙ୍କୁ ମଧ୍ୟ ଭଲ ପାଉଥିଲେ। ସେ ଆଜି ନାହାନ୍ତି, ଆମ୍ଭେମାନେ ଜିଲ୍ଲାରେ ମୁରବିଶୂନ୍ୟ। କିଏ ବାଟ ଦେଖାଇବ? ଜିଲ୍ଲାରେ, ରାଜ୍ୟରେ ସମସ୍ୟା ଅସୁମାରୀ। ଗଣତାନ୍ତ୍ରିକ ବ୍ୟବସ୍ଥା ଭୁଷୁଡ଼ି ପଡୁଛି, ଦଳମାନଙ୍କରେ ଆଭ୍ୟନ୍ତରୀଣ ଗଣତନ୍ତ୍ର ନାହିଁ। ଶିକ୍ଷିତ ସମାଜ ଓ ଗଣମାଧ୍ୟମ ପ୍ରାୟ ମୂକ। ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଉପରେ ପ୍ରଚଣ୍ଡ ଆକ୍ରମଣ। ରାଜ୍ୟରେ ଶାସନ, ପ୍ରଶାସନ, ଶିଳ୍ପ, ଖଣି ସବୁ ଓଡ଼ିଶା ବାହାର ଲୋକଙ୍କ ହାତକୁ ଚାଲିଯାଉଛି, ଚାଷୀମାନଙ୍କ ଜମି, ଜଳ ମଧ୍ୟ ସେଥିରୁ ବାଦ ଯାଉନି। ଜଙ୍ଗଲ ଧ୍ୱଂସ ହୋଇ ଯାଉଛି। ଦେଶରେ ଓ ରାଜ୍ୟରେ କର୍ପୋରେଟ ଓ ବିଦେଶୀ ଶାସନର ପ୍ରତିଧ୍ୱନି ପ୍ରତିଫଳିତ। ସେ ଆଜି ଆମ ଗହଣରେ ନାହାନ୍ତି, ନଚେତ ସେଭଳି ଗାନ୍ଧିବାଦୀ ନେତା କଣ କେବେ ଏପରି ଘଡ଼ି ସନ୍ଧି ପରିସ୍ଥିତିରେ ନୀରବ ଥାଆନ୍ତେ?

୧୯୭୫ ଜରୁରୀ ପରିସ୍ଥିତିରେ ମୁଁ ଆଗୁଆ ମିଶାରେ ଗିରଫ ହୋଇ ସମ୍ବଲପୁର ଜେଲ୍‌ରେ ରହିଲି, ପରେ ସେ ଓ ପଦ ଭାଇ ଗିରଫ ହୋଇ ପୁରୀ ଜେଲ୍‌ରେ ରହିଲେ। ତାଙ୍କ ସାଙ୍ଗରେ ଯେଉଁମାନେ ଥିଲେ, ବହୁତ କଥା ଜାଣିବା ଓ ଶିଖିବାର ସୁଯୋଗ ପାଇଲେ, ମୁଁ ଏହି ଆଦର୍ଶ ଶିକ୍ଷକଙ୍କ ସାନିଧ୍ୟରୁ ବଞ୍ଚିତ ହେଲି।

୧୯୭୭ରେ ସେ ପିପିଲି ବିଧାନ ସଭାରୁ ନ ଲଢ଼ି, ତାଙ୍କର ପତ୍ନୀ ସ୍ୱାଧୀନତା ସଂଗ୍ରାମୀ, ନାରୀନେତ୍ରୀ କିରଣ ଅପାଙ୍କୁ ଛାଡ଼ିଦେଲେ। ସେ ଆଦର୍ଶ ବ୍ୟକ୍ତିତ୍ୱ ସମ୍ପନ୍ନ ଉଭୟ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀଙ୍କ ପଦାଙ୍କ ଅନୁସରଣ କରି କ୍ଷମତା ରାଜନୀତିଠାରୁ ଦୂରରେ ରହିଲେ। ଲୋକନାୟକ ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ଅଧୁରା ରହିଲା। ଜୟପ୍ରକାଶ ଆଜି ନାହାନ୍ତି, ନବ ବାବୁ, ମାଳତୀ ଚୌଧୁରୀ ଚାଲିଗଲେଣି, ଶେଷରେ ଜୟୀଭାଇ ଓ କିରଣ ଅପା ମଧ୍ୟ ସେମାନଙ୍କ ପଥ ଅନୁସରଣ କଲେ। ଦେଶର ଭବିଷ୍ୟତ ଇତିହାସ, ଆଉ କିଏ ଲେଖିବ?

ପୂର୍ବତନ ସାଂସଦ, ଲୋକସଭା

# ତାଙ୍କ ସହ ହୋଟେଲରେ ଖାଇବାର ଏକ ନିଆରା ଅନୁଭୂତି

ସ୍ୱୟଂ ପ୍ରକାଶ ଜେନା

ସକାଳ ୫.୩୦ ମିନିଟ୍, ସାଧାରଣତଃ ସେହି ସମୟରେ ମତେ ସବୁଠାରୁ ଭଲ ନିଦ ହୋଇଥାଏ। ହଠାତ୍ ଫ୍ୟାନ୍ ବନ୍ଦ ହୋଇଯିବ ଓ ଲାଇଟ୍ ଜଳୁଥିବ, ୫ ମିନିଟ୍ ଭିତରେ ନିଶ୍ଚୟ ନିଦ ଭାଙ୍ଗିଯିବ ଗରମରେ। ଫ୍ୟାନ୍ ସୁଇଚ୍ କିଏ ବନ୍ଦ କଲା ? ଦେଖେ ତ କେହି ନଥିବେ। ଭୋର ବେଳାର ମଜା ନିଦରେ ଏପରି ହସ୍ତକ୍ଷେପ ଯୋଗୁଁ ବେଳେବେଳେ ବହୁତ ଚିଡ଼ି ମାଡ଼େ। ଦିନେ ଦୁଇଦିନ ନୁହେଁ ଦୀର୍ଘ ୧୬ ବର୍ଷ ଧରି ଏପରି ହୋଇଛି। କେତେବେଳେ କେମିତି ଫ୍ୟାନ୍ ବନ୍ଦ ହବା ପୂର୍ବରୁ ନିଦ ଭାଙ୍ଗିଗଲେ ବି ଫ୍ୟାନ୍ ବନ୍ଦ ହବାପାଇଁ ଅପେକ୍ଷା କରି ଶେଯରେ ପଡ଼ିରହେ। ସଂକ୍ଷେପରେ କହିବାକୁ ଗଲେ ଫ୍ୟାନ୍‌ଟି ଥିଲା ଆଲାର୍ମ ଘଡ଼ି। ସକାଳୁ ଫ୍ୟାନ୍ ବନ୍ଦ କରି ବାପା ନଜର ରଖିଥିବେ କେତେବେଳେ ଉଠୁଛି। ପ୍ରତିଦିନ ସକାଳୁ ଉଠିବା ପରେ ମିଳେ ଗୋଟେ ବଢ଼ିଆ ଘଷା ମୋଡ଼ା ବାପାଙ୍କ ହାତରୁ। ଏଥିଲା ମୋର ପ୍ରତିଦିନ ସକାଳ କାର୍ଯ୍ୟକ୍ରମ।

ବେଳେବେଳେ ବାପାଙ୍କୁ ମୁଁ ପଚାରେ ଏତେ ସକାଳୁ କାହିଁକି ଫ୍ୟାନ୍‌ଟା ବନ୍ଦ କରିଦଉଛ ? ସେତେବେଳେ ସେ ମତେ ଓଲଟା ପ୍ରଶ୍ନ କରନ୍ତି କେତେବେଳେ ଶୋଉଛ ? ଉତ୍ତରରେ ମୁଁ କହେ, "ତମେ ତ ୧୧ଟା ହେଲେ ଲାଇଟ୍ ବନ୍ଦ କରିଦଉଛ"। ସେ କହନ୍ତି ୧୧ଟାରୁ ୫ଟା ୬ ଘଣ୍ଟା, ଏବେଠାରୁ ଯଦି ୬ ଘଣ୍ଟା ଶୋଇବ, ଭବିଷ୍ୟତରେ ବି ୬ ଘଣ୍ଟା ଶୋଇବାକୁ ପାଇବ। ଏବେ ଯେତେ ଅଧିକ ଶୋଇବ ପରେ ଶୋଇବା ପାଇଁ ସେତିକି କମ୍ ସମୟ ମିଳିବ। ସେତେବେଳେ ଏସବୁ କଥା ଶୁଣି ବହୁତ ବେକାର ଲାଗୁଥିଲା। ହେଲେ ପରବର୍ତ୍ତୀ ଅବସ୍ଥାରେ ଏ କଥାଗୁଡ଼ିକର ତାତ୍ପର୍ଯ୍ୟ ଉପଲବ୍ଧ ହେଉଛି। ବାପାଙ୍କ ସହ ମୋର ପ୍ରତିଦିନ ସକାଳର ବାର୍ତ୍ତାଳାପ ଭଳି ଦିନଯାକ ବିଭିନ୍ନ ଅଧ୍ୟାୟ ଚାଲେ। ସେ ସବୁ ମଜା ମଜା ଘଟଣା ବର୍ଣ୍ଣନା କଲେ ପୁରା ସ୍ମରଣିକାଟି ଭର୍ତ୍ତି ହୋଇଯିବ। ହେଲେ ତାଙ୍କର ପ୍ରତି କଥାର ଶେଷରେ ଗୋଟିଏ କିଛି ମଞ୍ଜି ଥାଏ।

ସବୁବେଳେ ବାପା ପଚାରନ୍ତି ବଡ଼ ହେଲେ କ'ଣ କରିବ ? ମୋ ଠାରୁ କିଛି ଉତ୍ତର ପାଇବା ପୂର୍ବରୁ ନିଜେ କହନ୍ତି, "ପିଲାମାନେ ଏତେ ଅସୁବିଧାରେ ଅଛନ୍ତି, ଲୋକ ଖାଇବାକୁ ପାଉନାହାନ୍ତି, ବାଜିରାଉତ ଛାତ୍ରାବାସରେ ପିଲାମାନେ କାମ କରି ପାଠ ପଢୁଛନ୍ତି, ହେଲେ ତମେ ମାନେ ସବୁ ଏଠି ଏତେ ଆରାମରେ ଅଛ, ଖାଲି ପାଠ ପଢ଼ି କେଉଁଠି ଚାକିରୀ କରିବା ତମମାନଙ୍କ ମନୋବୃତ୍ତି, ଶିକ୍ଷିତ ଗୋଟି ଶ୍ରମିକ ହେବା ତୁମମାନଙ୍କର ଇଚ୍ଛା। ଏବଂ ଶେଷରେ କହିବେ ଏମିତି କିଛି କର ଯାହାଦ୍ୱାରା କିଛି ଲୋକଙ୍କୁ ତମେ ନିୟୋଜିତ କରିପାରିବ, କିଛି ଲୋକ ତୁମ ଦ୍ୱାରା ଉପକୃତ ହେବେ ଆଉ ତମେ ନିଜେ ବି ପ୍ରତିଷ୍ଠା ପାଇବ। ଏହି କଥା ସବୁ ବାରମ୍ବାର ଶୁଣି ବେଳେବେଳେ ଆମେମାନେ ବୋର୍ ହେଉ, ବିରକ୍ତି ବି ପ୍ରକାଶ କରୁ, ହେଲେ ପରବର୍ତ୍ତୀ ସମୟରେ ଏ ସବୁ କଥାର ମହତ୍ତ୍ୱ କେତେ ଅଧିକ ତାହା

ଜାଣି ପାରୁଛୁ । କିଛି ନୂଆ କରିବାର ସାହସ ବି ମନରେ ଆସିଯାଉଛି ଏବଂ ତାକୁ କାର୍ଯ୍ୟକାରୀ କରିବାର ବିଶ୍ୱାସ ବି ସୃଷ୍ଟି ହେଉଛି ।

ଦିନକର କଥା, ତିନୁ ମାଉସୀ ଓ ବିଭୂତି ମଉସାଙ୍କ ଝିଅ ବାହାଘର ଭୁବନେଶ୍ୱରର ଗୋଟିଏ ବଡ଼ ହୋଟେଲରେ ହେଉଥାଏ । ଆମେମାନେ ସବୁ ହୋଟେଲ ଗଲେ ଫେରିବା ପରେ ବାପାଙ୍କ ଠାରୁ କିଛି ନା କିଛି ଶୁଣିବୁ, କେତେ ପଇସାର ଖାଇଲ ? ଘରେ ସେତିକି ରାନ୍ଧିଥିଲେ କେତେ ଖର୍ଚ୍ଚ ହୋଇଥା'ନ୍ତା ? ସବୁର ହିସାବ କରିବେ । ତିନୁ ମାଉସୀଙ୍କ ଝିଅ ବାହାଘର କଥା ବାପା ଆମକୁ ଯେତେବେଳେ କହିଲେ, ମୁଁ ଓ ଟୁଲୁ ମଉସା କଥା ହେଲୁ ଆମକୁ ତ ହୋଟେଲ ଯିବାକୁ ଆକଟ କରୁଛନ୍ତି, ଦେଖିବା ଏବେ କ'ଣ କରିବେ ? ନିଜେ ବାହାଘରକୁ ଯିବେ କି ନାହିଁ ? ହେଲେ ଶେଷରେ ବାପା ଟୁଲୁ ମଉସାଙ୍କୁ ଓ ମତେ ଫୋନ୍ କରି ଡାକିଲେ ଓ ନିଜେ ହୋଟେଲ ଯିବାକୁ ବହୁ ଅନିଚ୍ଛା ସତ୍ୱେ ବାହାରିଲେ । ଟୁଲୁ ମଉସା ବାପାଙ୍କ ଫୋନ୍ ପାଇ ତାଙ୍କ ଭଣଜା ମିଲୁଭାଇଙ୍କୁ ଡ଼ାକି ଆଣିଲେ ଆମ ସହିତ ଯିବାକୁ । ଚାରିଜଣ ବାହାରିଲୁ । ସେଠି ପହଞ୍ଚି ଆମେ ଖାଲି ବାପାଙ୍କୁ ଦେଖୁଥାଉ । ନିମନ୍ତ୍ରଣ ପତ୍ରରେ Hi-Tea ଲେଖାଥିଲା । କିଛି ସ୍ୟାଣ୍ଡଉଇଚ୍ ଏବଂ ପକୋଡ଼ାରେ ଭୋଜି ଶେଷ ହେଲା । ବାପା ଭାରି ଅପ୍ରସ୍ତୁତ ହେଲେ । ଆମ ଦୁଇଜଣଙ୍କୁ ତ ଡାକିକି ନେଇଛନ୍ତି, ଆମ ସାଙ୍ଗରେ ପୁଣି ମିଲୁଭାଇ, ତେଣୁ କହିଲେ କେଉଁଠି ବାହାରେ ଖାଇକି ଯିବା । ଆମେ ଭାରି ଖୁସି, ସେଠାରୁ ଆମେ ଗଲୁ ଆଉ ଗୋଟିଏ ହୋଟେଲ ରାତି ଖାଇବା ପାଇଁ । ହୋଟେଲରେ ଆମ ରୁଚି ଅନୁସାରେ ଖାଇବା ଅର୍ଡର ଦେଲୁ । ହେଲେ ଆମେ ଖାଲି କଥା ହେଉଥାଉ ଆଜିର ବିଲ୍‌ଟା ଘରକୁ ନେଇକି ଯିବା ଆଉ ବାପାଙ୍କୁ କହିବା ବେକାରଟାରେ ହୋଟେଲରେ ଏତେ ଟଙ୍କା ଖର୍ଚ୍ଚ କଲେ । ଘରେ ଅମୃତଭଣ୍ଡା ସିଝା, ଘିଅମରାରୁଟି ଓ ଛେନା ଖାଇଥିଲେ କେତେ ଭଲ ହୋଇଥାନ୍ତା । ଏପରି ବହୁତ ଅନୁଭୂତି ଓ ମଜା ମଜା ଘଟଣା ଆମର ବାପାଙ୍କ ସାଙ୍ଗରେ ପ୍ରତିଦିନ ଘଟେ ।

ସବୁ ନାତି ନାତୁଣୀଙ୍କ ଭିତରୁ ମୁଁ ତାଙ୍କ ପାଖରେ ସବୁଠାରୁ ଅଧିକ ସମୟ ରହିଛି । ନାତି ହିସାବରେ ସେ ମତେ ଖୁବ୍ ସ୍ନେହ କରିଛନ୍ତି, ପ୍ରତିକ୍ଷେତ୍ରରେ ଉଚିତ୍ ପରାମର୍ଶ ମଧ୍ୟ ଦେଇଛନ୍ତି । ତାଙ୍କ ସଂସ୍ପର୍ଶରେ ଆସିଥିବାରୁ ମୁଁ ବହୁତ ଅଧିକ ଉପକୃତ ହୋଇଛି । ମୁଁ ଅଷ୍ଟ୍ରେଲିଆରେ ଥିବାରୁ ତାଙ୍କର ଶେଷ ସମୟରେ ଆସି ଦେଖା ନ କରିପାରିବାର ଅବଶୋଷ ସବୁଦିନ ପାଇଁ ରହିବ ।

ଓ୍ୱାକର ଭିଲେ, ଆଡ଼ିଲେଟ, ଅଷ୍ଟ୍ରେଲିଆ

••

# ମୋର ରାଜନୈତିକ ପ୍ରତିଦ୍ୱନ୍ଦୀ

**ବିପିନ ଦାସ**

ରାଜ୍ୟର ଜଣେ ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀ ପିପିଲି ନିର୍ବାଚନ ମଣ୍ଡଳୀର ପ୍ରଥମ ବିଧାୟକ ଜୟକୃଷ୍ଣ ମହାନ୍ତିଙ୍କର ପ୍ରଥମ ଶ୍ରାଦ୍ଧୋତ୍ସବ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ ପାଉଛି। ମୋ ରାଜନୈତିକ ଜୀବନର ପ୍ରଥମ ସଂଗ୍ରାମରେ ସେହି ମହାନ୍ ବ୍ୟକ୍ତି ଥିଲେ ମୋର ପ୍ରତିଦ୍ୱନ୍ଦୀ। ମୁଁ ବିଶେଷ ଭାବେ ତାଙ୍କୁ ଜାଣିନଥିଲି କିନ୍ତୁ ତାଙ୍କର ସୁପୁତ୍ର ଡଃ ତପନ କୁମାର ମହାନ୍ତି ଥିଲେ ମୋର ସହପାଠୀ। ପ୍ରଥମ ଦେଖାରେ ସମ୍ମାନ ଜଣାଇଥିଲି ଓ ହସହସ ବଦନରେ ସେ ମୋତେ ଆଶୀର୍ବାଦ କରିଥିଲେ। ନିର୍ବାଚନ ସମୟରେ କେବେହେଲେ ଗାଳି ଗୁଲଜ ଓ ବିଶୃଙ୍ଖଳା ଆଦୌ ନଥିଲା। ମୁଁ ତାଙ୍କୁ ଜଣେ ସାଧାରଣ ଭଦ୍ର ରାଜନୀତିକ କର୍ମୀ ବୋଲି ଭାବିଥିଲି। ମାତ୍ର ମୋର ସେ ଭାବନା ଭୁଲ ଥିଲା। ସେ ଜଣେ ଉଚ୍ଚକୋଟିର ସ୍ୱାଧୀନତା ସଂଗ୍ରାମୀ କେବଳ ନଥିଲେ, ଗାନ୍ଧୀ, ଗୋପବନ୍ଧୁଙ୍କର ବହୁ ଗୁଣର ସେ ଅଧିକାରୀ ଥିଲେ। ସ୍ୱାଧୀନତା ସଂଗ୍ରାମରେ ଯେଉଁ ଯୁବକ-ଛାତ୍ରମାନେ ଆନ୍ଦୋଳନରେ ସାମିଲ ଥିଲେ କିମ୍ବା ସକ୍ରିୟ ଭୂମିକା ଗ୍ରହଣ କରିବାକୁ ଉଦ୍ୟମରତ ଥିଲେ ସେହି ବାନର ସେନାଙ୍କ ମୁଖ୍ୟ ଥିଲେ ସଂଗ୍ରାମୀ ଜୟକୃଷ୍ଣ ମହାନ୍ତି। ଏହି ଉକ୍ତି ମୋର ନୁହେଁ, ମୁଁ ସେହି ସମୟର ଯେଉଁ ନେତାଙ୍କୁ ଅତ୍ୟାଧିକ ଭକ୍ତି ଓ ଶ୍ରଦ୍ଧା କରୁଥିଲି, ସେ ହେଉଛନ୍ତି ସଂଗ୍ରାମୀ ପୂର୍ବତନ ମନ୍ତ୍ରୀ, ଲୋକ ସଭା ସଦସ୍ୟ ଓ କଂଗ୍ରେସ ସଭାପତି, ସେ ହିଁ ମୋତେ ଜୟୀବାବୁଙ୍କର ପ୍ରଚଣ୍ଡ ସଂଗ୍ରାମର କାହାଣି କହନ୍ତି। ୧୯୭୭ ମସିହାରେ ଜରୁରୀ ପରିସ୍ଥିତି ଥିବା ସମୟରେ ଲୋକ ସଭା ନିର୍ବାଚନ ଘୋଷଣା ହୋଇଥିଲା - ନିର୍ବାଚନ ପ୍ରଚାରରେ ଆସିଥିଲେ ସଂଗ୍ରାମୀ ଜେ.ବି. କ୍ରିପାଳିନୀ। ଦାଣ୍ଡମୁକୁଣ୍ଡପୁର ଠାରେ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ। ସଭାର ବିବରଣୀ ଜାଣିବାକୁ ବନମାଳି ବାବୁ ମୋତେ ପଠାଇଥିଲେ। ମାତ୍ର ସଭାର ଲୋକସଂଖ୍ୟା ଦେଖି ମୁଁ ବନମାଳି ବାବୁଙ୍କ ଆଗରେ ତାଚ୍ଛଲ୍ୟ କରୁଥିଲି ଯେ ଜେ.ବି. କ୍ରିପାଳିନୀଙ୍କ ସଭାରେ ଜୟୀବାବୁ ଓ ଅଳ୍ପକେତେକ ଲୋକ ଯୋଗ ଦେଇଥିଲେ ମାତ୍ର ବନମାଳିବାବୁ ଅତ୍ୟନ୍ତ କ୍ରୋଧିତ ହୋଇ ମୋତେ ଗାଳିଦେଲେ। ଜେ.ବି. କ୍ରିପାଳିନୀଙ୍କ ସମ୍ପର୍କରେ ମୁଁ ଆଗରୁ ଜାଣିଥିଲି କିନ୍ତୁ ଜୟୀବାବୁ ଜଣେ କିପରି ପ୍ରଚଣ୍ଡ ସ୍ୱାଧୀନତା ସଂଗ୍ରାମୀ ତାହା ସେ ବର୍ଣ୍ଣନା କରିଥିଲେ।

୧୯୭୪ ମସିହାରେ ମୁଁ ବିଜୟୀ ହୋଇଥିଲି। ଯେଉଁ କିଛି ବର୍ଷ ପିପିଲିର ବିଧାୟକ ଥିଲି କେବେହେଲେ ଆମ ଭିତରେ ମନୋମାଳିନ୍ୟ ଓ ଅଞ୍ଚଳର ରାଜନୀତିକ ସ୍ଥିତିରେ କିଛି ଭୁଲ ବୁଝାମଣା ନଥିଲା। ତାଙ୍କ ପୁଅଙ୍କର ବନ୍ଧୁ ହୋଇଥିବାରୁ ସେ ମୋତେ ପୁତ୍ରତୁଲ୍ୟ ଦେଖୁଥିଲେ। ଯେତେବେଳେ ଦେଖାହୁଅନ୍ତି ହସହସ ମୁହଁ ଓ ଅତ୍ୟନ୍ତ ଖୋଲା ହୃଦୟର ହସ ତାଙ୍କ ମୁହଁରେ ମୁଁ ଦେଖିବାକୁ ପାଇଛି। ଜୟୀବାବୁଙ୍କର ଧର୍ମପତ୍ନୀ ଶ୍ରୀମତୀ କିରଣଲେଖା ମହାନ୍ତି ୧୯୭୭ ମସିହାରେ ପିପିଲିରେ ପ୍ରାର୍ଥୀ ହେଲେ ଓ ମୋ ସହିତ ତାଙ୍କର ପ୍ରତିଦ୍ୱନ୍ଦିତା ହେଲା ଓ ସେ ବିଜୟିନୀ ହେଲେ। ଶ୍ରୀମତୀ ମହାନ୍ତି ସେତେବେଳେ ତାଙ୍କରି ଦଳ ପକ୍ଷରୁ ଆହ୍ୱାନର ସମ୍ମୁଖୀନ ହୋଇଥିଲେ। ମୋ ସହିତ

ଜୟୀ ବାବୁ ଓ ତାଙ୍କର ଅନୁଗତ ସ୍ୱରାଜ୍ୟ ବିଶ୍ୱାଳ ଓ ପ୍ରହ୍ଲାଦ ସିଂଙ୍କର ଖୁବ୍ ଭଲ ସମ୍ପର୍କ ଥିଲା। ଏଣୁ ନିର୍ବାଚନ ସଂଗ୍ରାମ ଅତି ଶାନ୍ତି ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣରେ ସମାପ୍ତ ହୋଇଥିଲା।

୧୯୭୭ ମସିହାରେ ମୁଁ ଶ୍ରୀମତୀ କିରଣଲେଖା ମହାନ୍ତିଙ୍କ ଠାରୁ ନିର୍ବାଚନରେ ହାରିଗଲି। କିନ୍ତୁ ଅଧିକାଂଶ ବିଶିଷ୍ଟ କର୍ମୀ ଆମ ଦଳର ଯେଉଁମାନେ ମୋତେ ନିର୍ବାଚନରେ ସହଯୋଗ କରିଥିଲେ, ନିର୍ବାଚନ ପରେ ସେମାନେ ବିଧାୟିକା ଶ୍ରୀମତୀ ମହାନ୍ତିଙ୍କୁ ସହଯୋଗ କଲେ। ମୋ ଘରେ ଯେଉଁ ପିଲାଟି କାମ କରୁଥିଲା (ଘରୋଇ) ସେ ମଧ୍ୟ କିରଣଲେଖାଙ୍କ ବାସଭବନରେ କାର୍ଯ୍ୟ କଲା।

ସ୍ୱର୍ଗତ ସଂଗ୍ରାମୀ ଜୟକୃଷ୍ଣ ମହାନ୍ତି ଓ ତାଙ୍କର ପତ୍ନୀ କିରଣଲେଖା ମହାନ୍ତି ଆଜି ଇହ ଜଗତରେ ନାହାନ୍ତି। ଯେଉଁ ଅଞ୍ଚଳର ସେ ପ୍ରତିନିଧିତ୍ୱ କରୁଥିଲେ ଆଜି ସେ ନିର୍ବାଚନ ମଣ୍ଡଳୀ ବିପରିତିରେ ପ୍ରସିଦ୍ଧି ଲାଭ କରିଛି। ସେ ସମୟର ରାଜନୀତକ ସ୍ଥିତି ଆଉ ନାହିଁ।

ଯେଉଁ ବନ୍ଧୁମାନେ ସ୍ୱର୍ଗତ ଜୟକୃଷ୍ଣ ମହାନ୍ତିଙ୍କର ସ୍ମୃତି ରକ୍ଷା ପାଇଁ ଉଦ୍ୟମ କରୁଛନ୍ତି ସେମାନଙ୍କ ନିକଟରେ ମୁଁ ନିଜର କୃତଜ୍ଞତା ଜ୍ଞାପନ କରୁଛି।

ସାଧାରଣ ସମ୍ପାଦକ,
ବିଜୁ ଜନତା ଦଳ, ଭୁବନେଶ୍ୱର

••

ତୁହି ମା ଜନମ ଭୂମି ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେ ଅଟୁ ସରବେ,
ତୋର ଶ୍ରୀଚରଣ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦରବେ।
ତୋ ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ।

- ଉତ୍କଳବି ମଧୁସୂଦନ



ଗୋଟିଏ ପଥର ପଥିକ .......



କିରଣଲେଖାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ପ୍ରକାଶିତ ସ୍ମରଣିକା ଉଦ୍‌ଘାଟନ କରୁଛନ୍ତି ବିଶିଷ୍ଟ ସର୍ବୋଦୟ ନେତା ମନମୋହନ ଚୌଧୁରୀ।



ନାତି ସତ୍ୟବ୍ରତର ବିବାହ ପ୍ରସ୍ତୁତିପର୍ବ



ନାତୁଣୀ ନିପା ଓ ନାତୁଣୀ ଜ୍ୱାଇଁ ସତ୍ୟାଙ୍କ ଶୁଭବିବାହ ଅବସରରେ

# ଏକ ସ୍ୱୟଂ ସମ୍ପୂର୍ଣ୍ଣ ପ୍ରତିଭାର ଅବସାନ

**ଭବାନୀ ଚରଣ ପଟ୍ଟନାୟକ**

ଜୟକୃଷ୍ଣ ମହାନ୍ତି ଥିଲେ ଜଣେ ଉଚ୍ଚକୋଟୀର ମୁକ୍ତି ସଂଗ୍ରାମୀ ଓ ଜନନେତା। ନିମାପଡ଼ାର ଇତିହାସକୁ ରୋମନ୍ଥନ କଲେ ଜୟକୃଷ୍ଣ ବାବୁଙ୍କ ସଂଗ୍ରାମୀ ଜୀବନର ପ୍ରତିଛବି ସର୍ବାଗ୍ରେ ଦୃଶ୍ୟମାନ ହୁଏ। ନିମାପଡ଼ାର ପ୍ରତିଟି ଧୂଳିକଣା ସହିତ ପରିଚିତ, ପ୍ରତିଟି ମେହନତି ମଣିଷର ସାଥୀ ଜୟୀଭାଇ ନିଜ ଶରୀର, ମନ, ପ୍ରାଣ ଓ ଆତ୍ମାରେ ଗାନ୍ଧିବାଦୀ ଥିଲେ।

ତାଙ୍କର ଜନ୍ମହୁଏ ନିମାପଡ଼ା ସନ୍ନିକଟ ତୋରିହଁ ଗ୍ରାମରେ। ତାଙ୍କ ସଂଗ୍ରାମୀ ପରିବାରରେ ଭାଇ ଅଭିରାମ ମହାନ୍ତି, ଦାଦା ଗଙ୍ଗାଧର ମହାନ୍ତିଙ୍କ ସହିତ ଉତ୍କଳମଣୀ ଗୋପବନ୍ଧୁ ଦାସଙ୍କର ଘନିଷ୍ଠ ସମ୍ପର୍କ ଥିଲା। ଉତ୍କଳମଣୀଙ୍କ ନିଃସ୍ୱାର୍ଥ ଜନସେବା, ଅସମ୍ଭବ ବାଗ୍ମୀତା ଓ ଓଡ଼ିଶାର ଗରିବ ଜନସାଧାରଣଙ୍କ ବିକାଶ ପାଇଁ ତାଙ୍କର ଦୃଢ଼ ସାଂଗଠନିକ ଦକ୍ଷତାରେ ଅନୁପ୍ରାଣୀତ ହୋଇ ଏହି ମହାନ୍ତି ପରିବାରର ସଦସ୍ୟମାନେ ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ ଓ ନିଜକୁ ଗାନ୍ଧୀ ଓ ଗୋପବନ୍ଧୁଙ୍କ ପବିତ୍ର ସତ୍ୟନିଷ୍ଠ ଜୀବନାଦର୍ଶରେ ଗଢ଼ିବାପାଇଁ ପ୍ରୟାସ କରୁଥିଲେ। ତେଣୁ ପିଲାଦିନୁ ଜୟୀଭାଇ ଭାରତ ମୁକ୍ତି ସଂଗ୍ରାମ ସହ ନିବିଡ଼ ଭାବେ ଜଡ଼ିତ ଥିଲେ।

ଜୟୀବାବୁ ପୁରୀରେ ପାଠ ପଢୁଥିବା ସମୟରେ ତାଙ୍କର ସାକ୍ଷାତ ହୁଏ ବଙ୍ଗଭଙ୍ଗ ଆନ୍ଦୋଳନର ଅନ୍ୟତମ ପୁରୋଧା ସତେନ୍ ଗୁହ ଓରଫ୍ 'ସତେନ୍ ଦା'ଙ୍କ ସହିତ। ସେ ମଙ୍ଗୁମଠରେ ରହି ସେତେବେଳେ ପାଠ ପଢୁଥିଲେ। ମଙ୍ଗୁମଠ ଥିଲା ମୁକ୍ତି ସଂଗ୍ରାମୀମାନଙ୍କର ରାଜନୈତିକ ଯୋଜନା କ୍ଷେତ୍ର। ଜୟୀବାବୁ ସ୍କୁଲରେ ପାଠ ପଢୁଥିବା ସମୟରେ ସତେନ୍ ଦା' ଛାତ୍ରମାନଙ୍କୁ ସ୍ୱାଧୀନତା ସଂଗ୍ରାମ ବିଷୟରେ ତାଲିମ ଦେଉଥିଲେ। ସ୍କୁଲ ଶିକ୍ଷା ପରେ ଜୟୀବାବୁ କଟକ ରେଭେନ୍ସା କଲେଜରେ ପାଠ ପଢ଼ିଲେ। କଟକରେ ପାଠ ପଢୁଥିଲା ବେଳେ ଜୟୀବାବୁ ସଂଗ୍ରାମୀ ନବକୃଷ୍ଣ ଚୌଧୁରୀଙ୍କ ଘରେ ରହି ତାଙ୍କ ପିଲାମାନଙ୍କୁ ପାଠ ପଢ଼ାଉଥିଲେ। ଜୟୀବାବୁଙ୍କ ସଂଗ୍ରାମୀ ଜୀବନକୁ ଅନୁଶୀଳନ କଲେ ଜଣାପଡ଼େ, ତାଙ୍କ ଉପରେ ନବବାବୁଙ୍କ ପ୍ରଭାବ ସର୍ବାଧିକ। ସେତେବେଳେ ନବବାବୁ ଓଡ଼ିଶାର ଜଣେ ଖ୍ୟାତନାମା କୃଷକ ନେତା। ନବବାବୁଙ୍କ ଆଦର୍ଶରେ ଅନୁପ୍ରାଣୀତ ଜୟୀବାବୁ ପ୍ରଥମେ ଗୋପବନ୍ଧୁଙ୍କ ପଞ୍ଚଶିଷ୍ୟ ଆଚାର୍ଯ୍ୟ ହରିହରଙ୍କ ସହିତ ମିଶି ଛୁଟିଦିନ ମାନଙ୍କରେ ବିଭିନ୍ନ ସମାଜସେବା କାର୍ଯ୍ୟ କରନ୍ତି। ବଡ଼ଭାଇ ଅଭିରାମ ବାବୁଙ୍କ ସହିତ ମିଶି କଂଗ୍ରେସରେ ସାଂଗଠନିକ କାର୍ଯ୍ୟକ୍ରମରେ ମଧ୍ୟ ସମ୍ପୃକ୍ତ ଥିଲେ। ଆଚାର୍ଯ୍ୟ ହରିହର ସେତେବେଳେ ଯୁବକମାନଙ୍କ ପାଇଁ ଗାଁ ମାନଙ୍କରେ ଟ୍ରେନିଂ କ୍ୟାମ୍ପ ଆୟୋଜନ କରି ସେମାନଙ୍କୁ ସଂଗ୍ରାମ ବିଷୟରେ ତାଲିମ୍ ଦେଉଥାନ୍ତି। ଗ୍ରାମ ସଫେଇ, ଖଦି କାମ ସାଙ୍ଗକୁ ଶିକ୍ଷାର ବିସ୍ତାର ଶିବିର ଆୟୋଜନ-ଏଭଳି ଅନେକ କାର୍ଯ୍ୟ କରିବାକୁ ପଡୁଥାଏ।

ଜୟୀବାବୁ କଲେଜରେ ବି.ଏସ୍.ସି. ପଢୁଥିବା ସମୟରେ ଗାନ୍ଧିଜୀଙ୍କ ଡ଼ାକରାରେ ପାଠ ଛାଡ଼ି କଂଗ୍ରେସ କାର୍ଯ୍ୟରେ ଯୋଗ ଦେଲେ। ସେ ଗାଁ ଗାଁ ବୁଲି ଛାତ୍ର ଓ ଯୁବକମାନଙ୍କୁ ଏକାଠି କରି ସୂତାକଟା ଓ ଖଦିବୁଣା ଟ୍ରେନିଂ ଦେଲେ। ସେ ଠାକୁର ଅନୁକୂଳଚନ୍ଦ୍ରଙ୍କ ସହ ବହୁବାର ସାକ୍ଷାତ କରି ତାଙ୍କ ସଂସ୍ପର୍ଶରେ ଆସିଥିଲେ।

୧୯୪୨ରେ ନିମାପଡ଼ାର ସଂଗ୍ରାମୀମାନେ ପୂର୍ଣ୍ଣ ସ୍ୱରାଜ୍ୟ ପାଇଁ ଭାରତ ଛାଡ଼ ଆନ୍ଦୋଳନରେ ସାମିଲ ହେଲେ। ନିମାପଡ଼ା ଥାନା ମାମଲା ଯୋଗୁ ଗିରଫ ହୋଇ ମୁଁ ପୁରୀ ଜେଲ୍‌ରେ ଥାଏ। ସେତେବେଳେ ମୋର ପ୍ରଥମ ସାକ୍ଷାତ ହୁଏ ଜୟୀଭାଇଙ୍କ ସହିତ। ତାଙ୍କ ସହିତ କିଛି ଦିନ ରହିବା ଭିତରେ ମୁଁ ଯାହା ଲକ୍ଷ୍ୟ କରିଛି, ସେ ସବୁ କାର୍ଯ୍ୟକୁ ନିଖୁଣ ଭାବରେ କରିବାକୁ ଚେଷ୍ଟା କରୁଥିଲେ। ସମସ୍ତଙ୍କର କାର୍ଯ୍ୟକୁ ଖୁବ୍ ଟିକିନିଖି ଭାବେ ଦେଖୁଥିଲେ। ସେ ଜଣେ ଉଚ୍ଚ ଆଦର୍ଶବାଦୀ ଓ ତର୍କବାଦୀ ନେତା ଥିଲେ। କୌଣସି କଥାକୁ ଭଲଭାବେ ନ ବୁଝିବା ପର୍ଯ୍ୟନ୍ତ ହଠାତ୍ ମାନିଯିବା ଭଳି ଲୋକ ସେ ନଥିଲେ। ପୁରୀ ଜେଲ୍‌ରେ କିଛି ଦିନ କଟାଇବା ପରେ "ସିକ୍ୟୁରିଟି ପ୍ରିଜ୍‌ନର" ଭାବେ ବ୍ରହ୍ମପୁର ଜେଲକୁ ସ୍ଥାନାନ୍ତରିତ ହେଲେ। ସେତେବଳେର ଭାରତ ରକ୍ଷା ଆଇନ୍ ବଳରେ ସେ ଦୋଷୀ ସାବ୍ୟସ୍ତ ହୋଇ ନଥିଲେ। କେବଳ ସୁରକ୍ଷା ଦୃଷ୍ଟିରୁ ଜୟୀବାବୁଙ୍କ ଭଳି ବହୁତୁଙ୍ଗ ନେତାଙ୍କୁ ଗିରଫ କରି ଜେଲ୍‌ରେ ରଖା ଯାଇଥିଲା।

ସେବା ଥିଲା ତାଙ୍କର ବଂଚିବାର ମୂଳମନ୍ତ୍ର। ସେବାକୁ ସେ ଈଶ୍ୱରଙ୍କ କାର୍ଯ୍ୟ ଭାବେ ବିଚାର କରୁଥିଲେ। ୧୯୪୬ ମସିହାରେ ସେ ଜେଲ୍‌ରୁ ମୁକ୍ତି ପାଇଲେ। ସେତେବେଳେ ନିମାପଡ଼ା, ଗୋପ, କାକଟପୁର ମିଶି ଗୋଟିଏ ନିର୍ବାଚନ ମଣ୍ଡଳୀ ଭାବେ ଥିଲା। ସେହି ନିର୍ବାଚନ ମଣ୍ଡଳୀରୁ ସେ ୧୯୪୬ ମସିହାରେ ନିର୍ଦ୍ୱନ୍ଦରେ ଓଡ଼ିଶା ପ୍ରାଦେଶିକ ଆସେମ୍ବ୍ଲିକୁ ନିର୍ବାଚିତ ହୋଇ ଆସିଲେ। ସେତେବେଳେ ଓଡ଼ିଶା ବିଧାନସଭାରେ ମାତ୍ର ୬୦ ଜଣ ମେମ୍ବର୍ ଥାନ୍ତି। ତା'ପରେ ୧୯୫୨ ମସିହାରେ ପିପିଲି ନିର୍ବାଚନ ମଣ୍ଡଳୀରୁ ବିଧାୟକ ଭାବେ ନିର୍ବାଚିତ ହୋଇ ଆସିଲେ। ଆଜି ମଧ୍ୟ ପିପିଲିର ଜନସାଧାରଣଙ୍କ ମନରେ ସେ ଜଣେ ଅନନ୍ୟ ବ୍ୟକ୍ତିତ୍ୱ ଭାବେ ଦେଦିପ୍ୟମାନ।

**ଚାଷୀ ଆନ୍ଦୋଳନ ଓ ଜୟୀବାବୁ**

ନିମାପଡ଼ା ଅଞ୍ଚଳରେ ଜୟୀବାବୁ ଚାଷୀ ଆନ୍ଦୋଳନର ମୁଖ୍ୟ ପୁରୋଧା ଥିଲେ। କୃଷକ ନେତା ନବବାବୁଙ୍କ ପ୍ରେରଣାରେ ସେ ନିମାପଡ଼ାର ମୋହନ ଦାସଙ୍କ ସହିତ ମିଶି ଚାଷୀ ଆନ୍ଦୋଳନର ନେତୃତ୍ୱ ନେଲେ। ସେତେବେଳେ ରେସିଙ୍ଗା, ବାଇଶିବାଟି ଇତ୍ୟାଦି ଅଞ୍ଚଳରେ ସେ କୃଷକମାନଙ୍କ ନେତୃତ୍ୱ ନେଇ ସେମାନଙ୍କ ଅଧିକାର ପାଇଁ ଲଢ଼େଇ କରୁଥିଲେ। ତାଙ୍କ ଉଦ୍ୟମ କ୍ରମେ ଧନୁଆଁ ନଦୀର ଅଚ୍ୟୁତପୁର କାଜର ବନ୍ଧକୁ ଉଚ୍ଚା କରାଯାଇଥିଲା। ସେତେବେଳେ ଭାଗଚାଷୀ ଆନ୍ଦୋଳନରେ ମୋହନବାବୁ, ନବବାବୁ ଓ ମାଳତୀ ଚୌଧୁରୀ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି। ଭାଗଚାଷୀ ଆଇନ୍ ପ୍ରସ୍ତୁତ ପାଇଁ ଗୋଟିଏ ବିଧାନସଭା କମିଟି ଗଠନ କରାଯାଇଥାଏ। ଜୟୀବାବୁ ସେହି କମିଟିର ଜଣେ ସକ୍ରିୟ ସଭ୍ୟ ଭାବେ କାର୍ଯ୍ୟ କଲେ। ନବବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଜମିଜମା ସଂସ୍କାର

କରାଗଲା । ଆଇନ୍ ହେଲା ଯେ ୩୩ ଏକର ଜମିରୁ କେହି ଅଧିକ ରଖି ପାରିବେ ନାହିଁ । କିନ୍ତୁ ଏହାକୁ କାର୍ଯ୍ୟକାରୀ କରିବା ଖୁବ୍ ଦୂରୁହ ଥିଲା । ସେତେବେଳେ ସଦାଶିବ ତ୍ରିପାଠୀ ଥିଲେ ରାଜସ୍ୱ ମନ୍ତ୍ରୀ । କର୍ଯ୍ୟୀବାବୁ ଏହି ଲ୍ୟାଣ୍ଡ ରିଫର୍ମ କମିଟିର ସଭ୍ୟ ଭାବେ ଏହାକୁ ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରି ତା'ର ରୂପରେଖ ତିଆରି କଲେ । ତା'ପରେ ଏହା କାର୍ଯ୍ୟକାରୀ ହେଲା ।

ବିଧାୟକ ହେବା ପରେ ସେ ସ୍ୱାଧୀନତା ସଂଗ୍ରାମୀ କିରଣ ଦେବୀଙ୍କୁ ବିବାହ କରିଥିଲେ । କିରଣ ଦେବୀ ମଧ୍ୟ ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରି ରମାଦେବୀଙ୍କ ସହିତ ମିଶି ବହୁ ଗଠନ ମୂଳକ କାର୍ଯ୍ୟ କରିଛନ୍ତି । କର୍ଯ୍ୟୀବାବୁଙ୍କ ପରେ କିରଣ ଦେବୀ ମଧ୍ୟ ପିପିଲି ନିର୍ବାଚନ ମଣ୍ଡଳୀରୁ ବିଧାୟିକା ଭାବେ ନିର୍ବାଚିତ ହୋଇଥିଲେ ।

କର୍ଯ୍ୟୀବାବୁଙ୍କ ରାଜନୈତିକ କାର୍ଯ୍ୟ ଅପେକ୍ଷା ଗଠନ ମୂଳକ କାର୍ଯ୍ୟରେ ଅଧିକ ଦକ୍ଷତା ଓ ଅଭିଜ୍ଞତା ଥିଲା । ସେ ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନରେ ଓଡ଼ିଶାର ଜଣେ ଅପ୍ରତିଦ୍ୱନ୍ଦୀ ନେତା ଭାବେ ପରିଚିତ ଥିଲେ । ନବବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ଭୂଦାନ ଆନ୍ଦୋଳନର ପ୍ରତିଷ୍ଠାତା ବିନୋବାଜୀ ଓଡ଼ିଶା ଆସିଥିଲେ । ସେ ବିନୋବାଜୀଙ୍କ ସହିତ ମିଶି ଓଡ଼ିଶାର ପୁରପଲ୍ଲୀରେ ଭୂଦାନ ଆନ୍ଦୋଳନ ବିଷୟରେ ପ୍ରଚାର କରିଥିଲେ । ତାଙ୍କ ଯୋଗୁଁ ଶହ ଶହ ଭୂମିହୀନ ଲୋକ ଜମି ପାଇଲେ । କର୍ଯ୍ୟୀଭାଇ ଓଡିଶା ଖଦୀବୋର୍ଡର ଅଧ୍ୟକ୍ଷ ଭାବରେ କିଛି ବର୍ଷ ଦାୟିତ୍ୱ ନେଇ ବୈପ୍ଳବିକ ପଦକ୍ଷେପ ନେଇଥିଲେ । ଓଡ଼ିଶାର ଲୋକମାନଙ୍କ ମଧ୍ୟରେ ଖଦୀର ପ୍ରସାର ପାଇଁ ସେ ସାରା ଜୀବନ କାର୍ଯ୍ୟ କରିଛନ୍ତି । ଏତଦ୍‌ବ୍ୟତୀତ କର୍ଯ୍ୟୀବାବୁ ଜଣେ ଅନ୍ୟତମ ସର୍ବୋଦୟ ନେତା ଭାବେ ଓଡ଼ିଶାରେ ସୁପରିଚିତ । ଏପରିକି ଜୀବନର ସାଂଯକାଳରେ ମଧ୍ୟ ସେ ସର୍ବୋଦୟ କାର୍ଯ୍ୟ କରୁଥିଲେ ଓ ଯୁବକମାନଙ୍କୁ ସର୍ବୋଦୟ କାର୍ଯ୍ୟପାଇଁ ପ୍ରେରଣା ଯୋଗାଉଥିଲେ । ସେ ନିଜ ପରିବାର ପୁଅ ଝିଅମାନଙ୍କୁ ମଧ୍ୟ ତାଲିମ ଦେଇ ସେବା କାର୍ଯ୍ୟରେ ନିୟୋଜିତ କରିଥିଲେ ।

ଏଭଳି ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ, ଅସଂଖ୍ୟ ଜନ ଆନ୍ଦୋଳନର ଅପ୍ରତିଦ୍ୱନ୍ଦୀ ନେତା, ଗରୀବ, ଚାଷୀ, ମୂଲିଆର ସାଥୀ ପ୍ରିୟ କର୍ଯ୍ୟୀଭାଇ ଆମ ପାଖରେ ଆଉ ନାହାଁନ୍ତି । କିନ୍ତୁ ସେ ଆଜିର ଯୁବସମାଜ ପାଇଁ ଯେଉଁ ଆଦର୍ଶ ଛାଡ଼ି ଯାଇଛନ୍ତି, ସେଥିରେ ଉଦ୍‌ବୁଦ୍ଧ ହୋଇ ଯୁବକମାନେ କାର୍ଯ୍ୟ କଲେ ଖୁବ୍ ଶୀଘ୍ର ଗାନ୍ଧିଜୀଙ୍କ ସ୍ୱପ୍ନର ରାମରାଜ୍ୟ ପ୍ରତିଷ୍ଠା ହୋଇ ପାରିବ ।

ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ସାଂସଦ
(ରାଜ୍ୟସଭା)
୩୪, ଅଶୋକନଗର, ଭୁବନେଶ୍ୱର ।

••

# କିମ୍ବଦନ୍ତୀର ମଣିଷ ଜୟୀଭାଇ

ଶ୍ରୀ ସୁରେନ୍ଦ୍ର ନାଥ ନାୟକ

ମୋ ଦୃଷ୍ଟିରେ ଜୟୀଭାଇ ଓ ପଦଭାଇ ଏକ ସ୍ୱତନ୍ତ୍ର ଅନୁଚିନ୍ତା ପ୍ରଣୋଦିତ ଦୁଇଟି ମଣିଷ। ବାଲ୍ୟ ଜୀବନର ଏକ ସନ୍ଧିସନ୍ଧି ମୁହୂର୍ତ୍ତରେ ଯେତେବେଳେ ମୁଁ ଅନିଶ୍ଚିତତା ଭିତରେ ରହି ବ୍ୟସ୍ତ ବିବ୍ରତ ହୋଇ କୌଣସି କୂଳ କିନାରା ପାଉନଥିଲି ସେତିକିବେଳେ ଅର୍ଥାତ୍ ୧୯୫୨-୫୩ ମସିହାରେ ମୋର ଜୟୀଭାଇ ଓ ପଦଭାଇଙ୍କ ସହିତ ସାକ୍ଷାତ ହୋଇଥିଲା। ଜୟୀଭାଇ ପୁରୀ ଜିଲ୍ଲାରେ କଂଗ୍ରେସର ନେତୃତ୍ୱ ନେଉଥିବା ବେଳେ ସର୍ବୋଦୟ ଅନୁଚିନ୍ତାରେ ପଦଯାତ୍ରା ଓ ପ୍ରଚାର କାର୍ଯ୍ୟ ଚୁଲାଉଥାନ୍ତି। ମୁଁ ସେ ଦୁଇଜଣଙ୍କ ଆଚରଣ ଓ ଚଳଣୀ ସହିତ ନିଜକୁ ସାମିଲ୍ କରି ସେମାନଙ୍କ ପ୍ରଦର୍ଶିତ ରାସ୍ତାରେ ଯାଇ ତାଙ୍କ ସହ ମିଶିଲି ଏବଂ ଅଳ୍ପ ସମୟ ପାଇଁ ଚୁଲାଉଥିବା ପ୍ରାଥମିକ ଶିକ୍ଷକ କାର୍ଯ୍ୟରୁ ଅବ୍ୟାହିତ ନେଇ କଂଗ୍ରେସ ଓ ସର୍ବୋଦୟ ଚିନ୍ତାଧାରାକୁ ଅନ୍ତଃକରଣ ଗ୍ରହଣ କରି ସେଦିନର ସମସ୍ତ ଦ୍ୱନ୍ଦମୂଳକ ଜୀବନରୁ ମୁକ୍ତିଲାଭ କରିଥିଲି। ପରବର୍ତ୍ତୀ ଅବସ୍ଥାରେ ପୁରୀ ଆସି ବିଶ୍ୱମ୍ଭର ବିଦ୍ୟାପୀଠ ସାମନାରେ ଭଡ଼ାଘରେ ଚାଲୁଥିବା କଂଗ୍ରେସ ଅଫିସରେ ପଦଭାଇଙ୍କ ସହିତ ସାକ୍ଷାତ କରିବା ସହିତ ପଥୁରିଆ ସାହିରେ ରହୁଥିବା ଜୟୀଭାଇ ଓ କିରଣ ଅପାଙ୍କ ପରିବାର ସହ ମିଶୁଥିଲି। ସେହି ଦିନଠାରୁ ଜୟୀଭାଇ, ପଦଭାଇ ଓ କିରଣ ଅପାଙ୍କର ସ୍ନେହ, ଶ୍ରଦ୍ଧା, ଆଚରଣ ଓ ଚଳଣୀ ମତେ ଗଭୀର ଭାବେ ପ୍ରଭାବିତ କରିଥିଲା। ଏହିମାନଙ୍କ ସମ୍ପର୍କରେ ଆସିବା ଯୋଗୁ ଋଷିପ୍ରତୀମ ଆଚାର୍ଯ୍ୟ ହରିହରଙ୍କ ସହିତ ମିଶିବାର ସୁଯୋଗ ପାଇ ତାଙ୍କ ପଦଯାତ୍ରାରେ ସାମିଲ୍ ହୋଇଥିଲି।

କିରଣ ଅପା ଓ ଜୟୀଭାଇଙ୍କୁ ମୁଁ ମୁରବୀର ସମ୍ମାନ ଦେଉଥିଲି ଓ ସେମାନଙ୍କ ସହ ମୋର ଘନିଷ୍ଠତା ମୋ ଆଚରଣକୁ ସୁଚିନ୍ତିତ କରୁଥିଲା। ଜୟୀଭାଇ ଓ କିରଣ ଅପା ଥିଲେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ଧର୍ମକାମାତା ଓ କନ୍ୟା। ଜୟୀଭାଇଙ୍କ ପରିବାର ସହ ମୋର ସମ୍ପର୍କ ଯୋଗୁ ମୁଁ ନବବାବୁ ଓ ମାଳତୀ ଦେବୀଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲି। ନବବାବୁଙ୍କ ଆଦର୍ଶବାଦୀ ଜୀବନ ମତେ ଆହୁରି ସ୍ୱଚ୍ଛ ଅନୁଚିନ୍ତାର ବଶବର୍ତ୍ତୀ କରାଇଥିଲା। ଏମାନଙ୍କ ସାନ୍ନିଧ୍ୟ ଯୋଗୁ ଓଡ଼ିଶାର ତଥା ଏ ଦେଶର ଅନେକ ସମ୍ମାନାସ୍ପଦ ବ୍ୟକ୍ତିଙ୍କ ସହ ମିଶିବାର ସୁଯୋଗ ମିଳିଥିଲା। ଜୟୀଭାଇ, କିରଣ ଅପାଙ୍କର ବୃଦ୍ଧ ନଗରସ୍ଥିତ ଦୁଇ ବଖରା ବିଶିଷ୍ଟ ଛୋଟିଆ ଘରଟିରେ ମାଳତୀ ଦେବୀ ଓ ନବବାବୁ ଭୁବନେଶ୍ୱର ଆସିଲେ ରୁହନ୍ତି। ନବବାବୁଙ୍କୁ ଦେଖା କରିବାକୁ ବିଜୁବାବୁ ଜୟୀଭାଇଙ୍କ ଘରକୁ ଆସୁଥିବା ମତେ ଆହୁରି ପ୍ରଭାବିତ କରିଥିଲା। ଆଜି ଜୟୀଭାଇ, ପଦଭାଇ ଓ କିରଣ ଦେବୀ କେହି ବି ନାହାନ୍ତି। ଏମାନଙ୍କ ଆଚରଣ ଓ ଚଳଣୀ ମୋତେ ଦୀର୍ଘ ୫୦ ବର୍ଷ ଧରି ଏକି

ଦ୍ୱିଧାହୀନ, ସରଳ ଜୀବନ ଯାପନର ପ୍ରେରଣା ଦେଇଥିଲା ଓ ସାମାଜିକ କ୍ଷେତ୍ରରେ ପରିଚିତ ହେବାପାଇଁ ଏକ ସୁବର୍ଣ୍ଣ ସୁଯୋଗ ଆଣି ଦେଇଥିଲା ।

ମୋର ବାଲ୍ୟାବସ୍ଥାରେ ପିତୃବିୟୋଗ, ପରିବାରରେ ସମସ୍ୟା, ଅଭାବ ଅନାଟନରୁ ମୁଁ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇଥିଲେ ମଧ୍ୟ ଏ ସମସ୍ତ ମୋର ମାନସିକ ସ୍ଥିତିକୁ ହଲାଇ ପାରିନଥିଲା । ମୁଁ ଗାଁକୁ ଗଲେ ମୋର ମା' ଏବଂ ବାହାରକୁ ଆସିଲେ ଏଇ କେତେକଣ ମୋର ମୁରବୀ ଓ ମାର୍ଗଦର୍ଶକ ଥିଲେ । କର୍ପୂରୀଭାଇ ଓ କିରଣ ଅପାଙ୍କ ସ୍ପଷ୍ଟବାଦୀତା, ନିର୍ଭୀକତା ଏବଂ ଅନ୍ୟାୟ ପାଖରେ ମୁଣ୍ଡ ନ ନୂଆଁଇବା ଗୁଣ ଯୋଗୁ ସେମାନେ ବହୁ ଉଚ୍ଚକ୍ଷମତା ସମ୍ପନ୍ନ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ପ୍ରଭାବିତ କରିବାରେ ସକ୍ଷମ ହୋଇ ପାରିଥିଲେ । ମୁଁ ମୋର ସାଧାରଣ ଜୀବନରେ ସେମାନଙ୍କ ସହ ବହୁ ସମୟ ବିତାଇଥିଲି ଓ ସେମାନଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲି । ଆଜି ମୁଁ ସେମାନଙ୍କ ଅନୁପସ୍ଥିତିରେ ସାଥୀହରା ହୋଇ ପଡ଼ିଛି । ସେମାନଙ୍କ ପରି ନୀତିନିଷ୍ଠ ମଣିଷଙ୍କ ଅଭାବ ମୋ ପରି ସାଧାରଣ ମଣିଷଙ୍କୁ ସତେ ଯେପରି ଏକଘରକିଆ କରି ଦେଉଛି । ମୋ ଗାଁ ଅଣକଣାଠାରୁ ରାଜ୍ୟର ବିଭିନ୍ନ ଅଞ୍ଚଳର ଲୋକଙ୍କ ସହ ମିଶିବା ଓ ସେମାନଙ୍କ ସେବାରେ ନିଜକୁ ବିନିଯୋଗ କରିବାରେ ବହୁ କ୍ଷମତା, ସମ୍ମାନ ପାଇଥିଲି ଓ ଅନେକ ସମାଲୋଚନା ତଥା ଅସମ୍ମାନର ସାମନା ମଧ୍ୟ କରିଥିଲି । ହେଲେ ଉପଭୋଗ ଓ ଯନ୍ତ୍ରଣା ମଧ୍ୟରେ ପ୍ରଭେଦ ମୁଁ କେବେ ଅନୁଭବ କରି ନଥିଲି । ଆଜି କିନ୍ତୁ କର୍ପୂରୀଭାଇ, ସଦଭାଇ ଓ କିରଣ ଦେବୀଙ୍କ ଅବର୍ତ୍ତମାନରେ ମୁଁ ସମ୍ପୂର୍ଣ୍ଣ ଏକୁଟିଆ ଅନୁଭବ କରୁଛି । ଇତିହାସର ପୁନରାବୃତ୍ତି ଯୁଗେ ଯୁଗେ ହୋଇଥାଏ । ମୋର ଦୃଢ଼ ବିଶ୍ୱାସ ଈଶ୍ୱର ପୁଣି ସେହିଭଳି ବ୍ୟକ୍ତି ବିଶେଷଙ୍କୁ ଜନ୍ମ ଦେଇଥିବେ । ସେମାନେ ହଜି ଯାଇଥିବା ନୈତିକତାକୁ ପୁଣି ଲୋକ ଲୋଚନକୁ ଆଣି ପାରିବେ । ପରମବ୍ରହ୍ମରୁ ନିଃସୃତ ବ୍ରହ୍ମର ପରମ ବ୍ରହ୍ମରେ ମିଳନ ସଭ୍ୟତାର ଏକ ସତ୍ୟ, ଯାହାକୁ ଆମେ ଜନ୍ମ ଓ ମୃତ୍ୟୁର ଆଖ୍ୟା ଦେଇଥାଉ । ଯେପରି ସମୁଦ୍ର ଜଳରାଶି ଉତ୍ତପ୍ତ ସୂର୍ଯ୍ୟକିରଣ ଦ୍ୱାରା ବାଷ୍ପୀଭୂତ ହୋଇ ପୁନର୍ବାର ଭୂମିଷ୍ଠ ହୁଏ ଓ ଭୂମିଷ୍ଠ ମାତ୍ରେ ଜୀବ, ଉଦ୍ଭିଦ ଓ ମାନବ ଜଗତର ସେବାକରି ପୁଣି ମହାସମୁଦ୍ରରେ ମିଶିଯାଏ ସେହିପରି ଦୁନିଆରେ ମଣିଷ ଜନ୍ମ ଗ୍ରହଣ କରି ତା'ର ମଣିଷ ଧର୍ମ ପାଳନ କରି ଭଗବାନଙ୍କ ନିକଟକୁ ବାହୁଡ଼ିଯାଏ । ଏହିଭଳି ଏକ ଐତିହାସିକ କିମ୍ବଦନ୍ତୀର ମଣିଷ ଥିଲେ କର୍ପୂରୀଭାଇ ଓ କିରଣ ଦେବୀ ।

**ଉପାଧ୍ୟକ୍ଷ, ରାଜ୍ୟ ଯୋଜନା ବୋର୍ଡ**

**ଭୁବନେଶ୍ୱର ।**

●●

# ଜୟୀଭାଇ ଏକ ବିରଳ ବ୍ୟକ୍ତିତ୍ୱ

**ବିପିନ ବିହାରୀ ପଟ୍ଟନାୟକ**

ଜୟୀଭାଇଙ୍କ ସାଙ୍ଗରେ ଆମର ସମ୍ପର୍କ ବହୁତ ଦିନର। ୧୯୩ ମସିହାରେ ମୁଁ ଯେତେବେଳେ ତତ୍‌କାଳୀନ ପୁରୀଜିଲ୍ଲା ସ୍କୁଲରେ ନାମ ଲେଖାଇଲି, ସେତେବେଳେ ଶୁଣିବାକୁ ପାଇଲି ଜୟକୃଷ୍ଣ ମହାନ୍ତି ନାମକ ଜଣେ ମେଧାବୀଛାତ୍ର ମୋର ଦୁଇକ୍ଲାସ ଉପରେ ପଢୁଛନ୍ତି। ସେହି ସମୟରେ ବିହାର-ଓଡ଼ିଶା ଶିକ୍ଷା ପରିଷଦ ଦ୍ୱାରା ପରିଚାଳିତ ହେଉଥିବା ସମସ୍ତ ସ୍କୁଲ ମାନଙ୍କର ଯେଉଁ ସମୂହ ପରୀକ୍ଷା ହେଉଥିଲା ସେଥିରେ ସେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତି ପାଇଥିଲେ।

କିଛି ଦିନ ପରେ ଏକ ଭିନ୍ନ ପରିବେଶରେ ତାଙ୍କ ସହିତ ମୋର ସାକ୍ଷାତ ହେଲା। ପୁରୀଜିଲ୍ଲା ସ୍କୁଲର ଅନତି ଦୂରରେ 'ସତୀନ୍ଦ୍ର ନାଥ ଗୁହ' ନାମରେ ଜଣେ ବଙ୍ଗୀୟ ବିପ୍ଲବୀ ରହୁଥିଲେ। ରାଜନୈତିକ କାରଣରୁ ତାଙ୍କୁ ବଙ୍ଗଳାଦେଶରୁ ପୁରୀକୁ ନିର୍ବାସିତ କରାଯାଇଥିଲା। ତାଙ୍କ ଗଂହଣରେ ମୋର 'ଜୟୀଭାଇ'ଙ୍କ ସହ ପ୍ରଥମ ସାକ୍ଷାତ ହୋଇଥିଲା। ସେହିଦିନ ମୁଁ ତାଙ୍କୁ ବଡ଼ଭାଇ ପରି ଗ୍ରହଣ କରି ନେଇଥିଲି। ୧୯୪୦ରୁ ୧୯୪୨ ମସିହା ପର୍ଯ୍ୟନ୍ତ ରେଭେନ୍‌ସା କଲେଜରେ ପଢ଼ିବା ସମୟରେ ମୁଁ ଓ ଜୟୀଭାଇ ଗୋଟିଏ ମେସ୍‌ରେ ଏକାଠି ରହୁଥିଲୁ। ୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇ ଜୟୀଭାଇ କାରାବରଣ କଲେ। ସେ ଜଣେ ସରଳ, ନିଷ୍କପଟ, ସ୍ୱାଧୀନଚେତା ବ୍ୟକ୍ତିଥିଲେ। ସେ ନିନ୍ଦା ପ୍ରଶଂସାକୁ ଅପେକ୍ଷା ନ କରି ନିଜର କର୍ତ୍ତବ୍ୟ ଖୁବ୍ ନିଷ୍ଠାର ସହ କରୁଥିଲେ। ପ୍ରକୃତରେ ତାଙ୍କର ଆତ୍ମବିଶ୍ୱାସ ପ୍ରଗାଢ଼ ଥିଲା।

ଆମଦେଶ ସ୍ୱାଧୀନ ହେଲାପରେ ସେ ଅନୁଗୁଳର ମାଳତୀ ଦେବୀଙ୍କ ଆଶ୍ରମରେ ରହି ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ନିର୍ଦ୍ଦେଶନାରେ ଆଶ୍ରମ ତତ୍ତ୍ୱାବଧାନ କାର୍ଯ୍ୟ ସୁଚାରୁ ରୂପେ କରୁଥିଲେ। ତାଙ୍କ ଉପରେ ସେମାନଙ୍କ ଆଶୀର୍ବାଦ ଓ ସ୍ନେହ ପୂର୍ଣ୍ଣରୂପେ ରହିଥିଲା। କିଛିଦିନ ପରେ ଡ଼କ୍ଟର ହରେକୃଷ୍ଣ ମହତାବ ଓ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ପୌରହିତ୍ୟରେ 'ଜୟୀ ଭାଇ'ଙ୍କର 'କିରଣ ଲେଖା'ଙ୍କ ସହ ବିବାହ ସମ୍ପନ୍ନ ହେଲା। ମତେ ସେ ଖୁବ୍ ଭଲ ପାଇଥିବାରୁ ମୁଁ ସେହି ବିଭାଘରରେ ଯୋଗ ଦେବାର ସୁଯୋଗ ପାଇଥିଲି। ସେହି ସମୟରେ ସେ ଜାଣିବାକୁ ପାଇଲେ ଯେ ମୋର ଭଉଣୀ ନାମ କିରଣବାଳା। ତା'ପର ଠାରୁ କିରଣଙ୍କ ଭାଇ ଭାଉଜ ହିସାବରେ ଆମେ ଗଣ୍ୟ ହେଲୁ। ତାଙ୍କ ଘରେ ବା ଆମଘରେ ଯେତେ ଯାହା ଶୁଭକାର୍ଯ୍ୟ ହେଲେ ଆମେ ସମସ୍ତେ ଏକାଠି ସେହି କାର୍ଯ୍ୟ ତୁଲାଇ ଥାଉ।

ସେ ଅତ୍ୟନ୍ତ ଲୋକ ପ୍ରିୟ ଥିଲେ। ସହକର୍ମୀ ମାନଙ୍କ ଅନୁରୋଧରୁ ସେ ପିପିଲି, ନିମାପଡ଼ାର ଆସେମ୍ଳିର ପ୍ରତିନିଧ ଭାବରେ ଦୁଇ ଥର ନିର୍ବାଚିତ

ହୋଇଥିଲେ। ଏମ.ଏଲ୍.ଏ. ଥାଇ ସେ ସେହି ଅଞ୍ଚଳର ବହୁତ ଉନ୍ନତି କରିଅଛନ୍ତି। ତାଙ୍କର ଆଦର୍ଶ, ସ୍ନେହଶ୍ରଦ୍ଧା ଓ ଆନ୍ତରିକତା, ସେବା ମନୋଭାବ ଥିବାରୁ ସେ କୋରାପୁଟ ଆଦିବାସୀ ଅଞ୍ଚଳରେ ବହୁ ଲୋକ ହିତକର କାର୍ଯ୍ୟ କରି ଏବେବବି ସେଠା ଲୋକଙ୍କ ମଧ୍ୟରେ ସ୍ମରଣୀୟ ହୋଇ ରହିଛନ୍ତି। ସେ ଜଣେ ବିଶିଷ୍ଟ ସମାଜସେବୀ ଓ ସତ୍ୟନିଷ୍ଠ ବ୍ୟକ୍ତି ଥିଲେ। ସେ ସବୁବେଳେ ସ୍ଫୁର୍ତ୍ତି ଓ ଆନନ୍ଦ ଉତ୍ସାହ ସମୟ କଟାଉଥିଲେ।

ତାଙ୍କର ନିରଳସ ଜୀବନ ଯାପନ ଦେଖିଲେ ବେଶ୍ ଖୁସି ଲାଗେ। ଯେତେବେଳେ ଦେଖିଲେ ତାଙ୍କ ଖଟ ଉପରେ ଟେଲିଫୋନଟିଏ ଥାଏ। ସେ ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତା ଥିବାରୁ ଆନୁସଙ୍ଗିକ କାଗଜପତ୍ର ରଖି ପତ୍ରାଳାପ ଏବଂ ଲେଖା ଲେଖି କରିବାରେ ବ୍ୟସ୍ତ ଥାଆନ୍ତି। ଯେତେବେଳେ ଯିଏ ତାଙ୍କ ଘରେ ପହଞ୍ଚିଲେ ଖୁବ୍ ଆଗ୍ରହରେ ତାଙ୍କୁ ପାଛୋଟି ନେଇ ଖୁସିରେ କଥାବାର୍ତ୍ତା ହୁଅନ୍ତି। ଅନ୍ୟ ସମୟରେ ବଗିଚା କାମରେ ବ୍ୟସ୍ତ ଥାଆନ୍ତି। ତାଙ୍କ ଘର ଓ ବଗିଚା ସବୁବେଳେ ପରିଷ୍କାର ପରିଚ୍ଛନ୍ନ ଥାଏ।

ବାର୍ଦ୍ଧକ୍ୟରେ ସେ ଏକାଧିକ ଥର ଦୁର୍ଘଟଣାରେ ପଡ଼ିଥିଲେ ମଧ୍ୟ ତାଙ୍କର ଦୃଢ଼ ମନୋବଳ ଯୋଗୁ ଖୁବ୍ ଶୀଘ୍ର ଆରୋଗ୍ୟ ଲାଭ କରୁଥିଲେ। ସେ ଶେଷ ଅବସ୍ଥାରେ ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଥିବା ବେଳେ ଆମ କଥା ମନେ ପକାଉଥିଲେ। ତାଙ୍କର ସେହି ସ୍ନେହ ଆମେ କେବେ ଭୁଲି ପାରିବୁନି। ତାଙ୍କ ଭଳି ସ୍ନେହୀ, ଦରଦୀ ମଣିଷ ଆଉ ଖୋଜି ପାଇବା ସମ୍ଭବ ନୁହେଁ। ସେ ଆମର ଅତି ପ୍ରିୟ ଓ ଚିରସ୍ମରଣୀୟ ହୋଇ ରହିବେ।

**ପଣ୍ଡିଚ୍ଚେରୀ।**
**୨୪.୦୭.୨୦୦୯**

••

**ମାନବ ଜୀବନ ନୁହଁଇ କେବଳ**
**ବର୍ଷ ମାସ ଦିନ ଦଣ୍ଡ**
**କର୍ମେ ଜିଏଁ ନର କର୍ମ ଏକାଚାର**
**ଜୀବନର ମାନଦଣ୍ଡ।**

**- ଉତ୍କଳମଣି ଗୋପବନ୍ଧୁ ଦାସ**

# ଜନସେବକ ଜୟକୃଷ୍ଣ

ଅନ୍ନପୂର୍ଣ୍ଣା ମହାରଣା

ସ୍ୱର୍ଗତଃ ଜୟକୃଷ୍ଣ ମହାନ୍ତିଙ୍କୁ ମୁଁ ଜଣେ କଲେଜ ଛାତ୍ର ହିସାବରେ କଟକରେ ଦେଖିଲି। ଜୟକୃଷ୍ଣବାବୁ ୧୯୩୮ ମସିହାରେ ରେଭେନ୍ସା କଲେଜରେ ଅଧ୍ୟୟନ କଲାବେଳେ ଆମର ବାଖରାବାଦସ୍ଥିତ ଘରେ ବୁବୁ ଓ କାଲୁଙ୍କୁ ପାଠ ପଢ଼ାରେ ସାହାଯ୍ୟ କରୁଥିଲେ। ମୋ ସାଆନ୍ତ ମା'ଙ୍କ ଭାଇଙ୍କ ନାମ ଜୟକୃଷ୍ଣ ହୋଇଥିବାରୁ ସେ ଜୟକୃଷ୍ଣ ବାବୁଙ୍କୁ ଭାଇ ବୋଲି କହି ଖୁବ୍ ଭଲ ପାଉଥିଲେ। ସେହି ହିସାବରେ ସ୍ୱର୍ଗତଃ ମହାନ୍ତି ମୋର ଜେଜେ ଅଜା ହେଲେ।

ଭାରତ ଛାଡ଼ ଆନ୍ଦୋଳନ ପରେ ମୋ ବୋଉ ରମାଦେବୀଙ୍କ ପାଖରେ ବରୀ ଆଶ୍ରମରେ ପ୍ରାୟ ଛଅବର୍ଷ ଓ କଟକ ଜେଲ୍‌ରେ ପ୍ରାୟ ଏକବର୍ଷ ସହବନ୍ଦୀ ଜୀବନ କଟାଇଥିବା ତାଙ୍କର ମାନସ କନ୍ୟା କୁମାରୀ କିରଣ ଲେଖା ରାୟଙ୍କୁ ୧୯୪୭ ମସିହାରେ ଜୟକୃଷ୍ଣ ବାବୁ ବିବାହ କରି ହୋଇଗଲେ ମୋର ଭଉଣୀ ଜ୍ୱାଇଁ।

ତାଙ୍କର ବଡ଼ ଝିଅ ଡ଼ଲି (ଡ଼ାକ୍ତର ସବିତା ମହାନ୍ତି) ମୋର ସମ୍ପର୍କୀୟ ଭଉଣୀ ସରସ୍ୱତୀ ଅପାଙ୍କର ପୁତ୍ର ବଧୂ (ଡ଼ାକ୍ତର ଅଖିଳ ମୋହନ ପଟ୍ଟନାୟକଙ୍କ ପତ୍ନୀ) ହେଲେ। ସେ ହିସାବରେ ଜୟକୃଷ୍ଣବାବୁ ହେଲେ ମୋର ସମୁଦୀ।

ଏହି ତିନିଶ୍ରେଣୀର ସମ୍ପର୍କୀୟ ମାନଙ୍କ ସହିତ ଯେଉଁ ପ୍ରକାର ଆଚରଣ କରିବାର ସାମାଜିକ ରୀତିନୀତି ଓଡ଼ିଶାରେ ଚଳେ ମୁଁ ସେ ସବୁଥିରୁ କୌଣସି ଗୋଟିଏ ହେଲେ ତାଙ୍କ ସହ ପାଳନ କରିପାରିଲି ନାହିଁ, କାରଣ ସେ ଆମମାନଙ୍କ ପାଇଁ ଥିଲେ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ତାଙ୍କର ଅପରିସୀମ ଧୈର୍ଯ୍ୟ, ନିଃସ୍ୱାର୍ଥପର ସେବା ମନୋଭାବ, ଗଭୀର ଜ୍ଞାନ ଏବଂ ବିଚକ୍ଷଣ ସ୍ମୃତିଶକ୍ତି ପ୍ରତି ମୋର ଅଶେଷ ସମ୍ମାନ ରହିଥିଲା। ସେ ସମ୍ପୃକ୍ତ ଥିବା ଅନେକ ସର୍ବସାଧାରଣ ଅନୁଷ୍ଠାନରେ ଆର୍ଥିକ ସ୍ୱଚ୍ଛତା, କାର୍ଯ୍ୟ ପ୍ରଣାଳୀରେ ନୀତି ନିୟମର ସଠିକ୍ ପ୍ରୟୋଗ ଏବଂ ସମ୍ବିଧାନ ପ୍ରସ୍ତୁତି ପ୍ରଭୃତି ପ୍ରତି ସେ ସର୍ବଦା ଯତ୍ନଶୀଳ ଥିଲେ। ଉପରୋକ୍ତ ବିଷୟ ପ୍ରତି ସେ ଖୁବ୍ କଡ଼ା ନଜର ଦେଉଥିଲେ। ସେଥିପାଇଁ ମୋ ମନେ ମନେ ରବିନ୍ଦ୍ର ସାହିତ୍ୟରୁ ଗୋଟିଏ ନାମ ତାଙ୍କ ପାଇଁ ବାଛିଥିଲି। ତାହା ହେଉଛି "ଇନ୍‌ଷ୍ଟିଚ୍ୟୁସନ୍ ନିୟମ ବିଧାୟକ ଓ ସେ ସବୁର ଯଥାର୍ଥ ରକ୍ଷକ"। ତାଙ୍କୁ ମୁହଁ ଫିଟାଇ ଶେଷ ପର୍ଯ୍ୟନ୍ତ ଏ ନାମ ସମ୍ବନ୍ଧରେ କହି ପାରିଲି ନାହିଁ। ମୋର ବିଶ୍ୱାସ ତାଙ୍କର ସ୍ୱର୍ଗୀୟ ଆତ୍ମା ମୋର ଏହି ନାମ କରଣକୁ ଯଦି ଶୁଣିବେ ତେବେ ତାଙ୍କର ସ୍ୱଭାବ ସୁଲଭ ଉଚ୍ଚହାସ୍ୟରେ ଉଡ଼ାଇ ଦେବେ ଓ ମତେ କ୍ଷମା କରି ଦେବେ।

ଜୟକୃଷ୍ଣ ବାବୁ ଆଜୀବନ ଜଣେ ନିଃସ୍ୱାର୍ଥପର, କର୍ମଠ ବ୍ୟକ୍ତି ଥିଲେ। ତାଙ୍କର ଦୃଢ଼ ଆତ୍ମବିଶ୍ୱାସ ତାଙ୍କୁ ସବୁ କାର୍ଯ୍ୟରେ ସଫଳତା ଆଣି ଦେଉଥିଲା। ମହାତ୍ମାଗାନ୍ଧିଙ୍କ ପ୍ରଦର୍ଶିତ ଜୀବନ ଧାରଣ ପ୍ରଣାଳୀରେ ସେ ନିଜକୁ ପରିଚାଳିତ କରୁଥିଲେ। ଶରୀର ଶ୍ରମରେ ସେ ସମ୍ପୂର୍ଣ୍ଣ ବିଶ୍ୱାସୀ ଥିଲେ।

୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ଜୋର୍ ଧରିଲା। ବ୍ରିଟିଶ୍ ସରକାରଙ୍କୁ ଅଚଳ କରିଦେଇ ଏକ ସମାନ୍ତରାଳ ସରକାର ଗଠନ କରିବା ପାଇଁ ହେଉଥିବା ଆନ୍ଦୋଳନରେ ଜୟକୃଷ୍ଣ

ବାବୁ ସକ୍ରୀୟ ସମ୍ପୃକ୍ତ ହୋଇଗଲେ। ପୁରୀରେ ଆନ୍ଦୋଳନ କରି ଗିରଫ ହୋଇ ସେ ୩ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ପୁରୀ ଓ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ହୋଇ ରହିଲେ। ଜେଲ୍‌ରେ ମନୋବଳକୁ ବଜାୟ ରଖିବା ପାଇଁ ମୁରବୀମାନେ ନାନା ଉପାୟ ପାଞ୍ଚନ୍ତି। ରବିନ୍ଦ୍ର ସଂଗୀତ, ଗଣିତ, ଇତିହାସ, ହିନ୍ଦୀ, ବଙ୍ଗଳା, ଇଂରାଜୀ ଶିକ୍ଷାଠାରୁ ଖେଳ କସରତ୍ ଦିନସାରା ବିଭିନ୍ନ କାର୍ଯ୍ୟକ୍ରମ ଜେଲ୍ ଭିତରେ ଚାଲିଥାଏ। ମଝିରେ ମଝିରେ ଚିଠିପତ୍ର ଓ ମୁଲାକାତରୁ ବହିର୍ଜଗତର ଖବର ମିଳେ। ଜେଲ୍‌ରେ ଆମେ ଖବର ପାଇଲୁ ବୈଷ୍ଣବ ପଟ୍ଟନାୟକଙ୍କ ହାତରେ ଗୁଳି ବାଜିଲା, ପୁରୀରେ ତୋଫାନ୍ ହେଲା, ଜେଲ୍ ଭିତରୁ ରାଜବନ୍ଦୀ ଖସି ପଳାଇଲେ ଏବଂ ଜୟପ୍ରକାଶ ନାରାୟଣ ହଜାରିବାଗ୍ ଜେଲ୍‌ରୁ ମେଘନାଦ ପାଚେରୀ ଡେଇଁ ପଳାତକ ଘୋଷଣା ହେଲେ ଇତ୍ୟାଦି ଇତ୍ୟାଦି। ପୁଣି ଖବର ଆସିଲା ଗଡ଼ଜାତ ପ୍ରଜାମଣ୍ଡଳ ଗୁଡ଼ିକର କର୍ମୀମାନଙ୍କର ଦୁର୍ଦ୍ଦଶାର କରୁଣ ବିବରଣୀ। ମାଳତୀ ଦେବୀ ବ୍ୟସ୍ତ ହେଲେ। ଆମେ ତ ଏଠି ତିନି ବକତଖାଇ ଆରାମରେ ରହିଛୁ। ହେଲେ ସେହି କର୍ମୀ ମାନଙ୍କ ତପସ୍ୟାହିଁ ଯଥାର୍ଥ ତପସ୍ୟା। ବିଚାର ପଡ଼ିଲା ସେମାନଙ୍କ ପିଲାମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଆଦିର ବ୍ୟବସ୍ଥା କରିବାକୁ ହେବ। ବାକି ରାଉତ ଛାତ୍ରାବାସର ଛାଞ୍ଚ ତିଆରି ହେଲା ବାର ନମ୍ବର ୱାର୍ଡରେ। କିରଣ ଜେଲ୍‌ରେ ଥାଇ ବଚନବଦ୍ଧ ହେଲା ଏଠାରୁ ଖଲାସ ହେଲେ ସେ ଏ ଦାୟିତ୍ୱ ତୁଲାଇବ। କାରାମୁକ୍ତ ହୋଇ ମାଳତୀ ଦେବୀ, କିରଣ, ଉତ୍ତରା ଓ ପାର୍ବତୀ ଗିରି ଏହି କାମରେ ଲାଗି ପଡ଼ିଲେ। ମାଳତୀ ଚୌଧୁରୀ ସେତେବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଅଧ୍ୟକ୍ଷା। ସେହି ଅନୁଗୁଳରେ ଥିବାବେଳେ ମାଳତୀ ଦେବୀ, ଜୟକୃଷ୍ଣ ବାବୁଙ୍କର ବିଭାଘର କିରଣ ସହିତ ଠିକ୍ କଲେ। ସେମାନଙ୍କ ବିଭାଘରରେ ବରକର୍ତ୍ତା ମୁଖ୍ୟମନ୍ତ୍ରୀ ମହତାବ ବାବୁ, କନ୍ୟାକର୍ତ୍ତା ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ପୁରୋହିତ ଉତ୍କଳମଣିଙ୍କର ସହଯୋଗୀ ଆଚାର୍ଯ୍ୟ ହରିହର ଦାଶ। ଜୟକୃଷ୍ଣ ବାବୁ ସେତେବେଳେ ବିଧାନସଭାର ସଭ୍ୟ, ପରେ ଗାନ୍ଧୀ ସ୍ମାରକନିଧିର ସମ୍ପାଦକ, ଉତ୍କଳ ନବଜୀବନ ମଣ୍ଡଳର ସଭାପତି, ରାଜ୍ୟ ଖଦୀ ଓ ଗ୍ରାମଦ୍ୟୋଗ ବୋର୍ଡ ଅଧ୍ୟକ୍ଷ ତଥା ଅନ୍ୟ ଅନେକ ସଂସ୍ଥାର ପୃଷ୍ଠପୋଷକ ହେଲେ।

ଜୟକୃଷ୍ଣ ବାବୁ ସକ୍ରୀୟ ରାଜନୀତିରେ ରହି କିଛି ବର୍ଷ ପାଇଁ କଂଗ୍ରେସ ଦଳ ତରଫରୁ ରାଜ୍ୟ ବିଧାନସଭାକୁ ପ୍ରତିନିଧିତ୍ୱ କରିଥିଲେ। ହେଲେ କଳୁଷିତ ରାଜନୀତି ପ୍ରତି ତାଙ୍କର ବିତୃଷ୍ଣା ଯୋଗୁ ସେ ରାଜନୀତିରୁ ସନ୍ନ୍ୟାସ ନେଇ ବିଭିନ୍ନ ଗାନ୍ଧିବାଦୀ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କଲେ। ୧୯୭୫ ମସିହାରେ ସେତେବେଳର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଦ୍ୱାରା ଜାରି କରାଯାଇଥିବା ଜରୁରୀକାଳୀନ ଅବସ୍ଥାର ପ୍ରତିବାଦ ପାଇଁ ଯେଉଁ ସଂଗ୍ରାମ ଚାଲିଲା ସେଥିରେ ଜୟକୃଷ୍ଣ ବାବୁ ପ୍ରମୁଖ ଭୂମିକା ଗ୍ରହଣ କରି ତତ୍କାଳୀନ ସରକାରଙ୍କ ଦ୍ୱାରା ଗିରଫ ହୋଇ ପୁରୀ ଜେଲ୍‌ରେ ବର୍ଷାଧିକ ସମୟ ବନ୍ଦୀ ଜୀବନ କଟାଇଲେ।

କିରଣର ମେ ୧୧ ତାରିଖ ୧୯୯୭ ମସିହାରେ ତିରୋଧାନ ପରେ ଜୟକୃଷ୍ଣ ବାବୁ ଭୁବନେଶ୍ୱରରେ ତାଙ୍କ ବାସଭବନରେ ରହି ତାଙ୍କର ଅବଶିଷ୍ଟ ଜୀବନ ବିଭିନ୍ନ ସର୍ବସାଧାରଣ କାର୍ଯ୍ୟରେ ନିୟୋଜିତ କଲେ। ସେ ଅତି ଅସୁସ୍ଥ ହୋଇ ତାଙ୍କ ଝିଅ କ୍ୱାଇଁଙ୍କ ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଥିବା ବେଳେ ଭାଉଜବୋଉଙ୍କ ସହ ମୁଁ ତାଙ୍କୁ ଦେଖିବାକୁ ଯାଇଥିଲି। ସେ ଦିନ ମଧ୍ୟ ତାଙ୍କ ମୁହଁରେ ଚିରାଚରିତ ଧାରେ ହସ ଦେଖିଲି।

**ବାଖରାବାଦ, କଟକ**

# ତୁମେ ରତ୍ନଗର୍ଭା ସମୁଦ୍ର ଯେପରି

ଶ୍ରୀମତୀ ଅନୀତା ମହାନ୍ତି

ଅବର୍ତ୍ତମାନରେ ମନେ ପଡ଼େ ତୁମ
ଦରଦୀ ହୃଦୟର ବିଶାଳତା,
ତୁମ ବିନା ଶୂନ୍ୟ ଏ କୁଟୀରେ
ଆଜି କେତେ ନିରବତା।

ଶୁଭୁନାହିଁ ମନଖୋଲା ହସଧ୍ୱନୀ
ମିଳୁନି ମମତା ପରଶ,
ଆସୁ ନାହାନ୍ତି ସଂଗ୍ରାମୀ ବଂଧୁମାନେ
ବିଜଡ଼ିତ ସ୍ମୃତି ଯେ ଅଜସ୍ର।

ପ୍ରିୟ ସାଥୀ ଫୋନ୍‌ଟି ତୁମ
ଅଭିମାନେ ଥରେ ବି ବାଜୁନି,
ଝରକାରେ ବୁଢ଼ିଆଣି ବସା,
କ୍ୟାଲେଣ୍ଡର ପୃଷ୍ଠା ଓଲଟିନି।

ଖାଁ, ଖାଁ ଗୋଡାଉଛି ସବୁ
ପଡ଼ିଛ ବୋଧେ ଶୋଇ
ଅଧୁରା ସ୍ୱପ୍ନ ତୁମର
ଏ ଯାଏଁ ତ ପୁରି ନାହିଁ।

କନ୍ଧମାଳେ ଜଳୁଛି ନିଆଁ
ଅବୁଝା ନକ୍ସଲ ଆଜି।
ଡ଼ିନାମାଇଟ୍, ବନ୍ଧୁକ ଗୁଳି
ଭାଇଚାରା ଗଲାଣି ତ ହଜି।

ଆଜି ଯଦି ଏ ବେଳରେ
ପଡ଼ିବ ତୁମେ ଶୋଇ,
ବେଦାନ୍ତ, ପୋସ୍କୋ, ମିତ୍ତଲ
ଏ ମାଟିରେ ପଶିବେ ଧସାଇ।

ଶୋଇଥିଲେ ଉଠାଇବୁ
ହଜିଥିଲେ ଖୋଜି ଦେବୁ।
ତୁମ ବିନା ଏକା ସବୁ
ମୁକାବିଲା କରି କି ପାରିବୁ ?

ତୁମେ ସର୍ବ ବିଦ୍ୟମାନ
ହଜିବ କିପରି ?
ତୁମେ ଚିର ଜାଜ୍ୱଲ୍ୟମାନ
ଲିଭିବ କିପରି ?

ତୁମେ ହିଁ ତ ରତ୍ନଗର୍ଭା
ପ୍ରଶାନ୍ତ ସାଗର ପରି,
ଯାଇଥିଲେ ଲେଉଟିବ
ଲହଡ଼ୀ ଯେପରି।

ଋତୁପରେ ଋତୁ ଏଠି
ଆସିବେ ଫେରିବେ।
ଫୁଲ, ଫଳ ତୁମ ବଗିଚାରେ
ଫୁଟିବେ, ଝଡ଼ିବେ।

ସେମାନେ ବି ତୁମପଥ
ଚାହିଁ ବସିଥିବେ।
ତୁମ ବିନା ନିରବରେ
ଅଶ୍ରୁ ଗଡ଼ାଇବେ।

୩୭, ବୁଦ୍ଧନଗର, ଭୁବନେଶ୍ୱର

# ଦିହେଁ ମନେପଡ଼ ବନ୍ଧୁ ଆମେ

**ଗିରିଜା ଭୂଷଣ ପଟ୍ଟନାୟକ**

୰ ଜୟକୃଷ୍ଣ ମହାନ୍ତି ଓ ୰କିରଣ ଲେଖା ଦେବୀ ଦୁହେଁ ମନେ ପଡ଼ନ୍ତି, ଏବଂ ମନେ ପଡ଼ିବେ ଜୀବନ ସାରା। ଜୟୀବାବୁ ବଡ଼, ସେ ଆଗ ଆସିଥିଲେ କିନ୍ତୁ ଗଲେ (୨୫.୦୮.୨୦୦୮) ପଛରେ। କିରଣ ଲେଖା ଦେବୀ ବୟସରେ ସାନ, ସେ ଆସିଥିଲେ ପଛେ କିନ୍ତୁ ଗଲେ ଆଗ (୧୧.୦୫.୧୯୯୭)। କିନ୍ତୁ ସେମାନେ ମନେ ପଡ଼ିବେ ଚିରକାଳ ତାଙ୍କର ବନ୍ଧୁ ଗୋଷ୍ଠୀରେ, ଯେଉଁମାନଙ୍କ ମନରେ ସବୁ ଦଳ, ସବୁ ମତ, ସବୁ ଗୋଷ୍ଠୀର ଲୋକ ଅନ୍ତର୍ଭୁକ୍ତ।

କାହିଁକି ?

କାରଣ ପ୍ରଥମ ହେଉଛି ଜୀବନ ଶୈଳୀ। ଦୁହେଁ ବିଧାନସଭାର ସଭ୍ୟ ଥିଲେ। ବିଧାନସଭାର ସଭ୍ୟ ଥରେ ହେଲେ ଚେହେରା ବଦଳି ଯାଉଛି। ଦେହରେ ମେଦବୃଦ୍ଧି ହେଉଛି, କୋଠାବାଡ଼ି, ବ୍ୟାଙ୍କ ବାଲାନ୍ସ ସବୁ ବଢ଼ିଯାଉଛି କିନ୍ତୁ ସେମାନେ ତ ସେପରି ନଥିଲେ। ଦେହରେ ସେଇ ମୋଟା ଖଦଡ଼ ଶାଢ଼ି, ବ୍ଲାଉଜ, ପଞ୍ଜାବୀ, ଧୋତି ଏବଂ ପାଦରେ ସେଇ ଚଟି। କିଛି ପରିବର୍ତ୍ତନ ହୋଇ ନାହିଁ ସେଥିରେ। ଜୟୀ ବାବୁଙ୍କ ଗାଁକୁ ଯାଇଛି ମୁଁ। ଜୀବନଟା ଯେପରି ଏକ ଖୋଲା ଖାତା। ଉଭୟଙ୍କର କିଛି ଲୁଚାଇବାକୁ ନାଇଁ ବା ଢ଼ାଙ୍କିବାକୁ ନାହିଁ। ଯାହାର ମନ ପଢ଼ି ପାରିବ ବା ଯାହାର ମନ ଦେଖିପାରିବ, ଲୁଚାଇବାର କିଛି ନାହିଁ। ବୁଦ୍ଧନଗର (ଭୁବନେଶ୍ୱର)ରେ ତାଙ୍କର ଆଶ୍ରୟସ୍ଥଳ ମୁଁ ଦେଖିଛି। ଆଶ୍ରୟସ୍ଥଳ ତ ନୁହେଁ କର୍ମସ୍ଥଳ, ଏକ ଆଶ୍ରମ। ସେଇଠି ଆଖି ବୁଜିଲେ ଦୁହେଁ। ଗାଁ ତା'ର କିନ୍ତୁ ସେମିତି ଥିଲା। ଟିକେ ବି ପରିବର୍ତ୍ତନ ହୋଇ ନାହିଁ। ବ୍ୟାଙ୍କ ବାଲାନ୍ସ, ମୋଟର କାର୍ ହୋଇ ନାହିଁ। ଯେପରି ଆସିଥିଲେ, ସେପରି ଫେରି ଗଲେ।

ମୂଲ୍ୟବୋଧ ଥିଲା ସେଇପରି। ଦୁହେଁ ଗାନ୍ଧିଜୀଙ୍କ ଆଦର୍ଶରେ ଆସିଥିଲେ ଅନୁପ୍ରାଣିତ ହୋଇ। ଏକ ନୂଆ ଭାରତ ବର୍ଷ ଗଢ଼ିଯିବା ତାଙ୍କର ସ୍ୱପ୍ନ। ସେ ଲକ୍ଷ୍ୟ ଥିଲା ସୁଦୂର ପ୍ରସାରି। ବିଧାୟକ ପଦ, କିଛି ପଦବୀ ସବୁଥିଲା ମାଧ୍ୟମ ମାତ୍ର ସେ ଲକ୍ଷ୍ୟ ଅପରିବର୍ତ୍ତିତ ରହିଲା ମୃତ୍ୟୁ ପର୍ଯ୍ୟନ୍ତ।

ଏଇମିତି ଲୋକ କ୍ୱଚିତ୍ ମିଳିବେ। ମୋର ଟିକେ ଟିକେ ହେତୁ ହେଉଛି ସେମାନଙ୍କର କର୍ମ, ବିବାହ, ମୃତ୍ୟୁ ସବୁଥିଲା ସାଧାରଣରେ ଅସାଧାରଣ। ଏଭଳି ଲୋକ ବର୍ତ୍ତମାନ ଆଙ୍ଗୁଠି ଅଗରେ ଗଣି ହୋଇଯିବେ କିନ୍ତୁ ସବୁଦିନେ ସେମିତି ନଥିଲା। ପିପିଲି ନଥିଲା ଏପରି ଅପରାଧ ପ୍ରବଣ। ସ୍ୱାଧୀନତାର ସ୍ୱାର୍ଥକୁ ଚରିତାର୍ଥ କରିବା ପାଇଁ ମହାତ୍ମାଗାନ୍ଧିଙ୍କ ଠାରୁ ଜୟପ୍ରକାଶ ନାରାୟଣଙ୍କ ପର୍ଯ୍ୟନ୍ତ ଅନେକ ସେନାପତି ଯେପରି ଥିଲେ, ସେମିତି ଥିଲେ ଅନେକ ସେନାନୀ। ସେମାନଙ୍କ ମଧ୍ୟରେ ଜୟକୃଷ୍ଣ ମହାନ୍ତି, କିରଣ ଲେଖା ଦେବୀ ଅନ୍ୟତମ। ଲେଖିବାକୁ ଅନେକ କଥା ଅଛି କିନ୍ତୁ ଲେଖିବାକୁ ଏବଂ ଭାବିବାକୁ ଆଉ ଶକ୍ତି ନାହିଁ। ତାରି ଭିତରେ ବନ୍ଧୁ କଣ୍ଠରେ ଏତକ ଡ଼ାକି ଦେଉଛି।

ଉଭୟଙ୍କୁ ପ୍ରଣାମ।

ଦି' ୟୁନିଭର୍ସ, ମୈତ୍ରୀ ସରଣୀ, କଟକ-୧

# ବନ୍ଧୁ ଜୟକୃଷ୍ଣ ବାବୁଙ୍କ ବିୟୋଗରେ

**ରବି ରାୟ**

ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ବେଳେ କଂଗ୍ରେସ ଭିତରେ ସୋସାଲିଷ୍ଟ ପାର୍ଟି ଗଠିତ ହୋଇଥିଲା। ଓଡ଼ିଶାରୁ ଉଭୟ ସ୍ୱର୍ଗତ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓ ଶ୍ରୀଯୁକ୍ତା ମାଳତୀ ଦେବୀ ଏଥିରେ ଯେ କେବଳ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ତାହା ନୁହେଁ, ଏହାର ନେତୃତ୍ୱ ମଧ୍ୟ ନେଇଥିଲେ। ପରେ ସେ ଦୁହେଁ ଗାନ୍ଧିଜୀଙ୍କ ସର୍ବୋଦୟ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ। ସ୍ୱର୍ଗତ ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି ଉଭୟ ନବବାବୁ ଓ ମାଳତୀ ଦେବୀଙ୍କ ସହ ଏହି ଆନ୍ଦୋଳନରେ ସାମିଲ୍ ହୋଇଥିଲେ। ଓଡ଼ିଶାରେ ଆଦିବାସୀ ଓ ଅନୁନ୍ନତ ଅଞ୍ଚଳରେ ବିଭିନ୍ନ ଗଠନମୂଳକ କାର୍ଯ୍ୟରେ ଜୟକୃଷ୍ଣ ବାବୁ ସମ୍ପୃକ୍ତ ରହିଥିଲେ।

ଇନ୍ଦିରାଗାନ୍ଧିଙ୍କ ମନମୁଖୀ ଶାସନ ବିରୁଦ୍ଧରେ ଜୟପ୍ରକାଶ ନାରାୟଣ ସମଗ୍ରଦେଶରେ ସମ୍ପୂର୍ଣ୍ଣ କ୍ରାନ୍ତି ଆରମ୍ଭ କଲେ। ଓଡ଼ିଶାରୁ ନବବାବୁ ଓ ମାଳତୀ ଦେବୀ ଏହାର ଅଗ୍ରଭାଗରେ ଥିଲେ। ଏ ପରିପ୍ରେକ୍ଷୀରେ ସେ ଦୁହିଁଙ୍କ ସହିତ ଘନିଷ୍ଠତା ହେବା ମୋ ପାଇଁ ସ୍ୱାଭାବିକ ଥିଲା। ଜୟକୃଷ୍ଣ ବାବୁ ମଧ୍ୟ ଜରୁରୀ କାଳୀନ ପରିସ୍ଥିତିର ବିରୋଧ କରି କାରାବରଣ କରିଥିଲେ।

ଜୟକୃଷ୍ଣ ବାବୁଙ୍କ ସହିତ ମୋର ବନ୍ଧୁତ୍ୱ ବହୁ ଦିନରୁ। ଯେତେବେଳେ ତାଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ହେଲା ମୁଁ ଜାଣିବାକୁ ପାଇଲି ଯେ ସେ ନବବାବୁଙ୍କ ଘନିଷ୍ଠ ସହଯୋଗୀ ଭାବେ ତାଙ୍କ ଆଦର୍ଶରେ ବେଶ୍ ଅନୁପ୍ରାଣିତ ହୋଇଥିଲେ। ନବବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ଭୂସଂସ୍କାର ଭଳି ଅନେକ ପ୍ରଗତିଶୀଳ ପଦକ୍ଷେପ ନେଇଥିଲେ। ଜୟୀବାବୁ ଯେତେବେଳେ ଓଡ଼ିଶା ବିଧାନସଭାର ଜଣେ ଟାଣୁଆ ସଭ୍ୟ ଭାବେ ଏ ସମସ୍ତ ପ୍ରଗତଶୀଳ ବିଧେୟକ ପ୍ରଣୟନରେ ତାଙ୍କୁ ସମ୍ପୂର୍ଣ୍ଣ ସମର୍ଥନ ଓ ସହଯୋଗ କରିଥିଲେ। ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ସେ ଜଣେ ଅତି ପ୍ରଗତିଶୀଳ ବ୍ୟକ୍ତିଥିଲେ। ଆଜୀବନରେ ସମାଜର ଅବହେଳିତ ଦରିଦ୍ର ଲୋକଙ୍କ ପାଇଁ କାର୍ଯ୍ୟରତ ଥିଲେ।

ଅନ୍ୟାୟ ବିରୁଦ୍ଧରେ ସେ ସର୍ବଦା ସ୍ୱର ଉତ୍ତୋଳନ କରୁଥିଲେ। ନିଜ ବିଚାରରେ ସେ ଅଟଳ ଥିଲେ। ଆଜି ଜୟୀବାବୁ ଆମ ଭିତରେ ନାହାନ୍ତି ସତ, କିନ୍ତୁ ଦେଶର ଗରିବଗୁରୁବା ଲୋକଙ୍କ ପାଇଁ ତାଙ୍କର ଯେଉଁ ଦରଦ ଥିଲା। ଆଜିକାଲି ଯୁବାପିଢ଼ୀଙ୍କ ପାଇଁ ସେ ଯେ ବେଶ୍ ଅନୁକରଣୀୟ ହେବେ ଏହା ନିଃସନ୍ଦେହରେ କୁହାଯାଇପାରେ।

**ପୂର୍ବତନ ବାଚସ୍ପତି, ଲୋକସଭା**
**କଲ୍ୟାଣୀ ନଗର, କଟକ।**

# ଶାନ୍ତ-ସଂଗ୍ରାମୀର ସ୍ୱରୂପ - ଜୟୀଭାଇ

**ପଞ୍ଚାନନ କାନୁନ୍‌ଗୋ**

ଜୟୀ ଭାଇ । ଏଇ ଡ଼ାକଟି ଆପଣାର ଭାବଟିଏ ସୃଷ୍ଟିକରେ। ସଂଗ୍ରାମୀମାନଙ୍କ ଭିତରେ ତ ପାରିବାରିକ ସଂପର୍କ ରହୁଥିଲା । ସେଇଥିରୁ ହିଁ ଭାଇ, ଅପା ଡ଼ାକ। ସେ ବରି ଆଶ୍ରମବାସୀ, ଅଳକା ଆଶ୍ରମବାସୀ ହୁଅନ୍ତୁ ବା ନ ହୁଅନ୍ତୁ, ଭାଇ-ଅପାର ଡ଼ାକଟା ସମସ୍ତଙ୍କୁ ଆପଣେଇ ନେଉଥିଲା । ନିଜର କରି ଦେଉଥିଲା। ଆମେ ସବୁ ପିଲାମାନେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଅଭ୍ୟାସବଶତଃ ଏଇ ଡ଼ାକ ନିଜର କରି ଦେଇଥିଲୁ । ସେଇ ଡ଼ାକ ଭିତରେ ଥିଲେ ଜୟୀ ଭାଇ ଆଉ କିରଣ ଅପା । ଜୟୀ ଭାଇ ବହୁ ଆଗରୁ ବିଧାୟକ ଥିଲେ। କିରଣ ଅପା ୧୯୭୭ର ବିଧାୟିକା। ମୁଁ ସେଇ ସମୟରେ ବିଧାନସଭାକୁ ପ୍ରଥମ କରି ନିର୍ବାଚିତ ହୋଇଥାଏ। ଗୋରା ତକତକ ଚେ଼ହେରାର ଏଇ ଦୁଇ ମଣିଷ, ସ୍ୱାଧୀନତା ସଂଗ୍ରାମୀଙ୍କ ମିଳନ, ବିଧିର ସୁନ୍ଦର କଳ୍ପନା ନିଶ୍ଚୟ। ହସ ହସ ମୁହଁ, ଅମାପ ଆତ୍ମବିଶ୍ୱାସ ଓ ଆଖିରେ ଅନେକ ସ୍ୱପ୍ନ।

ପୁରୀ ଜିଲ୍ଲାର ସଂଗ୍ରାମୀ ପଦଭାଇ (ପଦ୍ମ ଚ଼ରଣ ସାମନ୍ତସିଂହାର)ଙ୍କ ସାଂଗରେ କଟକ ଜେଲ୍‌ରେ ଏମର୍‌ଜେନ୍‌ସି ସମୟରେ ମିଶାରେ ବଂଦୀ ଥିବା ବେଳେ ସଂଗ୍ରାମୀ ମାନଙ୍କ କାହାଣୀ ଶୁଣିବା ବେଳେ ଜୟୀ ଭାଇଙ୍କ ବିଷୟରେ ଶୁଣି ଥିଲି। ପୁରୀ ଜେଲ୍‌ରେ ଥିବା ବେଳେ ସେ ତାଙ୍କର ଶାନ୍ତଶିଷ୍ଟ ସ୍ୱଭାବ ପାଇଁ ସମସ୍ତଙ୍କ ଆଦରର ଥିଲେ। ନବକୃଷ୍ଣ ଚୌ଼ଧୁରୀଙ୍କର ଅତି ପ୍ରିୟ ଥିଲେ।

ଏବେ ତାଙ୍କୁ ଦେଖିଲା ପରେ ତାଙ୍କର ସୌମ୍ୟ ମୂର୍ତ୍ତୀ ଶାନ୍ତ ସରଳ ସ୍ୱଭାବ ସବୁ କିଛି ଆହ୍ଲାଦିତ କରୁଥିଲା। ତାଙ୍କ କାର୍ଯ୍ୟାବଳୀ-ସଂଗ୍ରାମୀ ଭାବେ ଲୋକ ସେବକ ଭାବେ, ଲୋକ-ପ୍ରତିନିଧି ଭାବେ ଆକଳନ କରିବାର ସୁଯୋଗ ନଥିଲା। ଖାଲି ଶୁଣିବାରୁ ଯାହାକିଚି ଆହରଣ କରିଥିଲି। "ବାଚ଼ନିକ ଇତିହାସ"କୁ ଭରସା କରି ବେଶୀ କିଛି କହି ହୁଏ ନାହିଁ। ଦେଖିଲେ, ସଂପର୍କରେ ଆସିଲେ ଅନୁଭବର ଶିକ୍ଷା ଅନେକ। ଯେଉଁ ଆଭାଟି ପ୍ରକଟିତ ହୁଏ ତହିଁରୁ କଣିଚ଼ାଏ ପାଉଁଟି ଆଣୁଥିବା ମଣିଷ ପ୍ରଭାବିତ ହୁଏ।

ସେ ସମୟର ମଣିଷ ଜୟୀ ଭାଇ। ଭଲ ପାଠ ପଢୁଥିବା କଥା ପଦ ଭଇଙ୍କଠାରୁ ଶୁଣିଥିଲି। ସେତେବଳେ ଭଲ ପାଠ ପଢୁଥିବା ବେଶୀ ଲୋକ ରାଜନିତୀରେ ଯୋଗ ଦେଉଥିଲେ। ସ୍ୱାଧୀନତା ସଂଗ୍ରାମରେ ଝାସ ଦେଉଥିଲେ। ତାହାହିଁ ଥିଲା ସେମାନଙ୍କର ତ୍ୟାଗର ନିଦର୍ଶନ।

ତାଙ୍କ ସହିତ ଗୋଟିଏ ସାମଞ୍ଜସ୍ୟ ଖୋଜି ବାହାର କରିଛି। ଏମ୍.ଏଲ୍.ଏ. ଭାବେ ନିଜ ନିର୍ବାଚ଼ନ ମଣ୍ଡଳୀ ପିପିଲି-ଡ଼େଲାଙ୍ଗର ସେ ବହୁତ କାମ କରିଥିଲେ। ତାହାହିଁ ଥିଲା କୁଆଡ଼େ ପରବର୍ତ୍ତୀ ନିର୍ବାଚ଼ନରେ ତାଙ୍କର ହାରିବାର କାରଣ। ତାହା ଯଦି ସତ୍ୟ ହୋଇଥାଏ- ମୋ କପାଳରେ ଅନୁରୂପ ଲିଖନ। ତାଙ୍କ ବିଷୟରେ କହିବା ପାଇଁ ତାଙ୍କ ସହପାଠୀ, ସାଥୀଙ୍କ ମଧ୍ୟରୁ ସରି ସରି ଆସିଲେଣି।

ଆମେ ଉତ୍ତର ପୁରୁଷ ! ଯେଉଁ ବୟସରେ ଦେଖିଲୁ ଦୂରରୁ...। ସବୁକିଛି ଝାପସା ତଥାପି ପ୍ରକଟିତ ଆଭାରେ ଆଲୋକିତ ହେବାର ସୌଭାଗ୍ୟ ଥିବାରୁ ଦି ପଦ ଲେଖି ରଖୁଛି ।

ରାଜ୍ୟରେ ମନ୍ତ୍ରୀ ହେବାର ଅଳ୍ପ ଦଳ ମଧ୍ୟରେ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀଙ୍କ ଭିତରୁ କେତେକଙ୍କୁ ଦିଲ୍ଲୀ ରାଷ୍ଟ୍ରପତି ଭବନକୁ ପଠାଇବା ନିମନ୍ତେ ବାଛିବାକୁ ହେଲା । ବୋଧହୁଏ ରାଜ୍ୟରେ ଏହାର ଶୁଭାରମ୍ଭ ଏଇଠୁ ହିଁ ହୋଇଥିଲା । ଅନ୍ୟମାନଙ୍କ ମଧ୍ୟରେ ଜୟୀ ଭାଇ ଯାଇଥିଲେ । ଏହି ବୟସ୍କ ବୟସ୍କମାନଙ୍କ ହେପାକତ ପାଇଁ ଜଣେ ଜଣେ ଡ଼ାକ୍ତର ସାଥିରେ ପଠାଇବାର ଆବଶ୍ୟକତା ମଣୁଥିଲି । ଜୟୀଭାଇଙ୍କର ଝିଅ ସବିତା ଜଣେ ଡ଼ାକ୍ତର । ସେ ସାଥିରେ ଗଲେ ସୁବିଧା ହେବ ବୋଲି ଭାବିଲି, ସେ ଯାଇଥିଲେ । ଏତେ ଯତ୍ନ ଏବଂ ସବୁଦିଗକୁ ପରଖା ପରଖି କରି ରେଳ ଷ୍ଟେସନରେ ସେମାନଙ୍କୁ ବିଦାୟ ଦେଇଥିଲି ହେଲେ ଭଗବାନଙ୍କର ନିଷ୍ପତ୍ତି ଅନ୍ୟ ପ୍ରକାର । ଏହି ଦଳରେ ଯାଇଥିବା ନାରୀ ସ୍ୱାଧୀନତା ସଂଗ୍ରାମୀ ହାରାମଣି କାନୁନ୍‌ଗୋଙ୍କର ଦିଲ୍ଲୀରେ ଦେହାନ୍ତ ହୋଇଗଲା । ଅନ୍ୟମାନେ ଦୁଃଖରେ ଫେରିଥିଲେ ।

ଏହି ସ୍ୱାଧୀନତା ସଂଗ୍ରାମୀମାନଙ୍କର ସଂପର୍କରେ ଆସିଥିବା ପ୍ରତ୍ୟେକ ବ୍ୟକ୍ତି ନିଜକୁ ଧନ୍ୟ ମନେ କରିବା ଉଚିତ ।

●●

**ନୁହେଁ ବନ୍ଧୁ ନୁହେଁ ଏହା ଚିତା**
**ଏ ଦେଶ ତିମିର ତଳେ**
**ଏ ଅଳିଭା ମୁକତି ସଳିତା**
**ନୁହେଁ ଏହା ଜଳି ଯିବା ପାଇଁ**
**ଏହାର ଜନମ ଏଥି, ଜାଳିପୋଡ଼ି**
**ଦେବାକୁ ଧସାଇ ।**

**- କବି ସଚି ରାଉତରାୟ**

# ବନ୍ଧୁ ବିଚ୍ଛେଦ

ଶ୍ରୀ ଲକ୍ଷ୍ମଣ ମଲ୍ଲିକ

ସ୍ୱର୍ଗତଃ ଜୟକୃଷ୍ଣ ମହାନ୍ତିଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ମୁଁ ତାଙ୍କ ପ୍ରତି ମୋର ଆନ୍ତରିକ ଶ୍ରଦ୍ଧାଞ୍ଜଳି ଜଣାଉଛି। ଚାହୁଁ ଚାହୁଁ ଜୟୀବାବୁ ଆମକୁ ଛାଡ଼ିଯିବାର ଗୋଟିଏ ବର୍ଷ ପୂରଣ ହେବାକୁ ଯାଉଛି। ଭାବିଲେ କାଲି ଭଳି ଲାଗୁଛି। ଆମେ ଦୁହେଁ ବିଗତ ୪୦ ବର୍ଷରୁ ଊର୍ଦ୍ଧ ପଡ଼ୋଶୀ ଭାବେ ଭୁବନେଶ୍ୱରସ୍ଥିତ ବୁଦ୍ଧନଗରରେ ରହିଥିଲୁ। ଗତ କିଛି ବର୍ଷ ହେବ ପ୍ରାୟ ପ୍ରତିଦିନ ପ୍ରାତଃଭ୍ରମଣ ସମୟରେ ମୋର ତାଙ୍କ ସହ ସାକ୍ଷାତ ହୁଏ। ରାସ୍ତାରେ କିଛି ସମୟ ଆମେ ଭଲମନ୍ଦ କଥାହେଉ। ଏବେ କିନ୍ତୁ ଏକବର୍ଷ ଧରି ମୁଁ ତାଙ୍କ ଘର ପାଖ ରାସ୍ତାରେ ସକାଳେ ଚାଲିବାକୁ ଯିବାବେଳେ ତାଙ୍କ ଘରକୁ ଅନାଏ। ତାଙ୍କର ଘର ଓ ଗଛପତ୍ର ସମସ୍ତେ ଅଛନ୍ତି ହେଲେ ବାରି ହୋଇପଡେ ଜୟୀବାବୁଙ୍କ ଅନୁପସ୍ଥିତି।

ଜୟକୃଷ୍ଣ ବାବୁ ମୋର ଜଣେ ପରମ ବଂଧୁ ଥିଲେ। ଦେଶର ସ୍ୱାଧୀନତା ପାଇଁ ସତ୍ୟାଗ୍ରହ ଆନ୍ଦୋଳନରେ ତାଙ୍କର ଭୂମିକା ଚିରସ୍ମରଣୀୟ। ସେ ଛାତ୍ରାବସ୍ଥାରୁ ଜଣେ ସ୍ୱାଧୀନଚେତା, ସଚ୍ଚା ଦେଶପ୍ରେମୀ ଥିଲେ। ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀଙ୍କର ସିଏ ପଟ୍ଟଶିଷ୍ୟ ଥିଲେ। ସ୍ୱାଧୀନତା ସଂଗ୍ରାମ ବେଳରୁ ଆରମ୍ଭ କରି ଶେଷଯାଏ ସିଏ ନବବାବୁ ଓ ମାଳତୀ ଦେବୀଙ୍କର ବିଭିନ୍ନ ଗଠନମୂଳକ ସମାଜ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ ରଖିଥିଲେ। ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ଶରତ ମହାରଣା ଓ ଅନ୍ନପୂର୍ଣ୍ଣା ମହାରଣା ପ୍ରମୁଖଙ୍କ ସହ ଜୟୀବାବୁ ଓଡ଼ିଶାରେ ଗାଁ ଗାଁରେ ବୁଲି ବିନୋବାଜୀଙ୍କ ବାର୍ତ୍ତା ପ୍ରଚାର କରୁଥିଲେ ଓ ଅନେକ ଭୂମିହୀନ ଗରିବ ଲୋକଙ୍କୁ ସାହାଯ୍ୟ କରୁଥିଲେ। ତାଙ୍କର ଧର୍ମପତ୍ନୀ ଶ୍ରୀମତୀ କିରଣ ଲେଖା ମହାନ୍ତି ମଧ୍ୟ ଜଣେ ସଂଗ୍ରାମୀ ଥିଲେ। ସେ ମଧ୍ୟ ଜୟୀବାବୁଙ୍କ ସହ ପାଦକୁ ପାଦ ମିଳାଇ ଜୀବନର ଶେଷ ପର୍ଯ୍ୟନ୍ତ ଦେଶ ସେବାରେ ବ୍ରତୀ ଥିଲେ। ଯେଉଁ ବ୍ୟକ୍ତି ଯେତେବେଳେ ସେମାନଙ୍କ ନିକଟରେ ପହଞ୍ଚନ୍ତି ସେମାନେ ତାଙ୍କୁ ଅକୁଣ୍ଠିତ ସାହାଯ୍ୟ କରିବାକୁ ଆଗେଇ ଆସିଥାନ୍ତି। ସେମାନଙ୍କ ପରି ପରୋପକାରୀ ଦମ୍ପତ୍ତି ଆଜିର ଦୁନିଆରେ ବିରଳ।

ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳ ଯେତେବେଳେ ଜମିଦାରୀ ଉଚ୍ଛେଦ ଓ ଭୂସଂସ୍କାର ଆଇନ୍ ଆଦି ଅନେକ ପ୍ରଗତିଶୀଳ ଆଇନ ପ୍ରଣୟନ କରିଥିଲେ। କଂଗ୍ରେସ ଦଳର ଜଣେ ଟାଣୁଆ ସଭ୍ୟଭାବେ ଜୟୀବାବୁ ରାଜ୍ୟ ବିଧାନସଭାରେ ଏ ସମସ୍ତ ଆଇନ ପ୍ରଣୟନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସେ ଦୁଇ ଥର ରାଜ୍ୟ ବିଧାନସଭାକୁ ପ୍ରତିନିଧିତ୍ୱ କରିଥିଲେ। ହେଲେ ୧୯୫୭ ମସିହା ପରଠାରୁ ସେ ପ୍ରାୟ ସକ୍ରୀୟ ରାଜନୀତିରୁ ନିଜକୁ ଦୂରେଇ

ରଖିଥିଲେ। ତାଙ୍କର ଧର୍ମପତ୍ନୀ କିରଣଲେଖା ମହାନ୍ତି ମଧ୍ୟ ରାଜ୍ୟ ବିଧାନସଭାକୁ ପ୍ରତିନିଧିତ୍ୱ କରିଥିଲେ ଓ ସେତେବେଳେ ବିଧାନସଭାରେ ଜଣେ ଆଗ ଧାଡ଼ିର ବିଧାୟିକା ଭାବେ ପରିଚିତା ଥିଲେ।

ଜୟକୃଷ୍ଣ ବାବୁଙ୍କ ତିରୋଧାନ ଏ ପ୍ରଦେଶ ପାଇଁ ନିଶ୍ଚିତ ଭାବେ ଏକ ଅପୂରଣୀୟ ସ୍ଥାନ ସୃଷ୍ଟି କରିବ ଏଥିରେ ସନ୍ଦେହ ନାହିଁ। ତାଙ୍କ ପରି ଜଣେ ନୀତିବାଦୀ, ନିଷ୍ଠାପର ଦେଶ ସେବୀ ଆଜିର ଦୁନିଆରେ ଖୋଜିପାଇବା କଷ୍ଟକର। ଜୟୀବାବୁଙ୍କ ଅବର୍ତ୍ତମାନରେ ସିଏ ଗରିବ ଲୋକଙ୍କର ଉନ୍ନତି ପାଇଁ ଆରମ୍ଭ କରିଥିବା ବିଭିନ୍ନ କାର୍ଯ୍ୟକ୍ରମ ମାନ ଆଗେଇ ଚାଲୁ ଏହାହିଁ ହେବ ତାଙ୍କ ପାଇଁ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳୀ। ତଙ୍କର ମୃତ୍ୟୁପରେ ତାଙ୍କର ପୁତ୍ର ତପନ ତାଙ୍କର ଦାୟାଦ ଭାବେ ଆମ ମାନଙ୍କର ପ୍ରୀୟ ପାତ୍ର ହୋଇ ପାରିଛନ୍ତି। ମୁଁ ତାଙ୍କ ପରିବାରକୁ ସମବେଦନା ଜଣାଉଛି।

**ପୂର୍ବତନ ପରିବହନ ମନ୍ତ୍ରୀ,**
**୫୧, ବୁଦ୍ଧନଗର, ଭୁବନେଶ୍ୱର -୬**

●●

**ଦେଶ ପାଇଁ ଦଶ ପାଇଁ କରି କାମ**
**ମିଳେ ଯଦି କାହାଭାଗ୍ୟେ କାରାବାସ**
**କାରାନୁହଁଇ ସେ ପବିତ୍ର ପ୍ରଭାସ।**

**- ଉତ୍କଳମଣି ଗୋପବନ୍ଧୁ ଦାସ**

# ଏକ ବିରଳ ଦମ୍ପତି

**ଶ୍ରୀ ରବିନ୍ଦ୍ର ମୋହନ ଦାସ**

କେବଳ ବର୍ତ୍ତମାନ ପିଢ଼ି ନୁହେଁ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଜନ୍ମଗ୍ରହଣ କରିଥିବା ପିଢ଼ି ମାନେ ମଧ୍ୟ ଜାଣନ୍ତି ନାହିଁ ଏବଂ ଅନୁଭବ କରି ପାରିବେ ନାହିଁ ଯେ ୧୯୨୧ ସାଲ୍ ପୂର୍ବରୁ ଏ ଦେଶରେ ବିଭିନ୍ନ ଶ୍ରେଣୀର ଲୋକମାନେ କିପରି ଦୁଃଖ କଷ୍ଟ ଭୋଗି ବିଦେଶୀ ଶାସନରେ ଭୀତତ୍ରସ୍ତ ହୋଇ ରହୁଥିଲେ। ସେହିପରି ଭାରତୀୟ ରାଜନୀତି କ୍ଷେତ୍ରରେ ମହାତ୍ମାଗାନ୍ଧିଙ୍କ ଆବିର୍ଭାବରେ ସମଗ୍ର ଦେଶ ଲୋକେ ଏକତ୍ର ହୋଇ ଅଦମ୍ୟ ସାହସର ସହିତ ବ୍ରିଟିଶ ସରକାର ବିରୋଧରେ ସଂଗ୍ରାମ କରି ଆତ୍ମବଳୀ ଦେଉଥିଲେ ଓ ଅସଂଖ୍ୟ ବ୍ୟକ୍ତି ଜେଲ୍ ବରଣ କରିଥିଲେ ତଥା ଆନନ୍ଦର ସହିତ ଅମାପ ଦୁଃଖକଷ୍ଟ ବରଣ କରିଥିଲେ।

ସ୍ୱାଧୀନତା ସଂଗ୍ରାମର ଏହି ସନ୍ଧିସନ୍ଧି ମୁହୂର୍ତ୍ତରେ ମୋର ଅନୁକାପ୍ରତିମ କିରଣ ବାଳା ଏବଂ ଘନିଷ୍ଠ ବନ୍ଧୁ ଓ ସହଯୋଗୀ ଜୟକୃଷ୍ଣ ଘରଦ୍ୱାର, ବନ୍ଧୁ ପରିଜନ ତ୍ୟାଗ କରି ଅତ୍ୟନ୍ତ ସାହସର ସହିତ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ। କିରଣବାଳା ଅତି କମ୍ ବୟସରେ ସେତେବେଳର ସାମାଜିକ କଟକଣାକୁ ଭ୍ରୂକ୍ଷେପ ନ କରି ମା' ରମାଦେବୀ ଓ ଗୋପବନ୍ଧୁ ଚୌଧୁରୀ ସହିତ ମିଶି ଦେଶର ସ୍ୱାଧୀନତା ଲଢ଼େଇରେ ଲମ୍ଫ ଦେଇଥିବା ବେଳେ ଅପର ପକ୍ଷରେ ଜୟକୃଷ୍ଣ ନିଜର ଉଚ୍ଚଶିକ୍ଷା ଓ ଉଜ୍ଜଳ ଭବିଷ୍ୟତକୁ ପାଦରେ ଦଳି ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କ ଆଦର୍ଶ ଏବଂ ପ୍ରେରଣାରେ ଅନୁପ୍ରାଣିତ ହୋଇ ଇଂରେଜ ଶାସନକୁ ଏ ଦେଶରୁ ହଟାଇବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ। ସ୍ୱର୍ଗତଃ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ତତ୍ତ୍ୱାବଧାନରେ ରହି କିରଣ ଦେବୀ ବରୀ ଓ ନିକଟବର୍ତ୍ତୀ ଗ୍ରାମାଞ୍ଚଳରେ ହରିଜନ ବସ୍ତିରେ ବିଦ୍ୟାଳୟକୁ ନ ଯାଉଥିବା ପୁଅଝିଅଙ୍କୁ ପାଠ ପଢ଼ାଇବା, ଗ୍ରାମକୁ ସଫା ସୁତୁରା ରଖିବା, ସୂତା କାଟିବା ଏବଂ ଅନ୍ୟାନ୍ୟ କୁସଂସ୍କାର ବିରୁଦ୍ଧରେ ନିଷ୍ଠାର ସହିତ ନିରବଚ୍ଛିନ୍ନ ଭାବେ ଗ୍ରାମ ସଂଗଠନ କାର୍ଯ୍ୟରେ ଲାଗି ରହିଲେ। ୧୯୪୨ ସାଲ ଅଗଷ୍ଟ ମାସ ୮ ତାରିଖ ଭାରତଛାଡ଼ ଆନ୍ଦୋଳନର ଡ଼ାକରା ଆସିଲା। ସେଥିରେ ଯୋଗଦେଇ ଦୀର୍ଘକାଳ କଟକ ଜେଲ୍‌ରେ ରହିଲେ। କଟକ ଜେଲ୍‌ରେ ରମାଦେବୀ ଓ ମାଳତୀ ଚୌଧୁରୀଙ୍କ ସହିତ ରହି ସେ ଦୁହିଁଙ୍କର ତ୍ୟାଗପୂତ ଜୀବନ କାହାଣୀରେ ଗଭୀର ଭାବେ ପ୍ରଭାବିତ ହୋଇଥିଲେ। ଅପର ପକ୍ଷରେ ଜୟକୃଷ୍ଣ କଟକ ରେଭେନ୍‌ସା କଲେଜରେ ବି.ଏସ୍.ସି. ପଢୁଥିବା ବେଳେ ନିଜର ପାଠପଢ଼ା ଖର୍ଚ୍ଚ ତୁଲାଇବା ପାଇଁ ନବବାବୁ ଓ ମାଳତୀ ଦେବୀଙ୍କ ପୁଅ କାଳୁର ଗୃହ ଶିକ୍ଷକ ହୋଇ ସେମାନଙ୍କ ଘରେ ରହି ସେ ଦୁଇ କଣଙ୍କର ଆଦର୍ଶରେ ପ୍ରଭାବିତ ହୋଇଥିଲେ। ଛୋଟବେଳୁ ସେ ଆଚାର୍ଯ୍ୟ ହରିହର, ଉତ୍କଳ ମଣି ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଇଂରେଜ ଶାସନ ବିରୁଦ୍ଧରେ ମହାତ୍ମାଗାନ୍ଧିଙ୍କ ଡ଼ାକରାରେ ଅସହଯୋଗ ଆନ୍ଦୋଳନରେ ଅଂଶ

ଗ୍ରହଣ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନରେ ସକ୍ରୀୟ ଅଂଶ ଗ୍ରହଣ କରି ସେ ୧୯୪୨ ମସିହାରେ ଗିରଫ ହୋଇ ପୁରୀ ଏବଂ ବ୍ରହ୍ମପୁର ଜେଲ୍‌ରେ ୩ ବର୍ଷରୁ ଊର୍ଦ୍ଧ କାରାରୁଦ୍ଧ ହୋଇଥିଲେ ।

ଭାରତ ସ୍ୱାଧୀନତା ହେବା ପୂର୍ବରୁ ୧୯୪୬ ମସିହାରେ ୬୦ ସଦସ୍ୟ ବିଶିଷ୍ଟ ପ୍ରଥମ ବିଧାନସଭାର ଜୟକୃଷ୍ଣ ସଭ୍ୟ ହୋଇ ୫ ବର୍ଷ ଏବଂ ପରବର୍ତ୍ତୀ ନିର୍ବାଚନରେ ୧୯୫୨ ମସିହାରେ ପୁନର୍ବାର ୫ ବର୍ଷ ପାଇଁ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ । ବିଧାନସଭାରେ ସିଏ ଜଣେ ସାଧାରଣ ସଦସ୍ୟ ନଥିଲେ । ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଧେୟକ ପ୍ରଣୟନରେ ତାଙ୍କର ସକ୍ରୀୟ ଭୂମିକା ଥିଲା । ମନ୍ତ୍ରୀପଦ କିମ୍ବା ଅନ୍ୟାନ୍ୟ କ୍ଷମତାର ମୋହ ତାଙ୍କୁ କେବେ ମଧ୍ୟ ସ୍ପର୍ଶ କରି ପାରିନଥିଲା । ସେ କଂଗ୍ରେସ ଦଳର ସଭ୍ୟ ଭାବେ ୨ ଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ ମଧ୍ୟ ସବୁ ବିରୋଧୀଦଳ ସଭ୍ୟଙ୍କ ସହିତ ତାଙ୍କର ପ୍ରଗାଢ଼ ବନ୍ଧୁତ୍ୱ ଥିଲା । ସେହିପରି କିରଣ ଦେବୀ ମଧ୍ୟ ବିଧାୟିକା ଭାବେ ନିର୍ବାଚିତା ହୋଇ ବିଧାନସଭାରେ ନିଜର ଦକ୍ଷତାର ପରିଚୟ ଦେଇ ପାରିଥିଲେ । ଉଭୟ ନିଜ ନିର୍ବାଚନ ମଣ୍ଡଳୀର ଉନ୍ନତି ପାଇଁ ଅନେକ ଉନ୍ନୟନ କାର୍ଯ୍ୟ କରି ନିର୍ବାଚନ ମଣ୍ଡଳୀ ଲୋକମାନଙ୍କର ଅତି ପ୍ରିୟ ଥିଲେ । ଉଭୟ ନିଜର ରାଜନୈତିକ ଜୀବନରେ ସ୍ୱଚ୍ଛତା ଓ ଆଦର୍ଶବାଦକୁ ପ୍ରାଧାନ୍ୟ ଦେଉଥିଲେ । ନିଜର ସ୍ୱାର୍ଥକୁ ପଛରେ ପକାଇ ଦୁଇ ଜଣ ଯାକ ନିଜର ସାମାଜିକ ଜୀବନରେ ବରାବର ଉଚ୍ଚ ମୂଲ୍ୟବୋଧର ପରିଚୟ ଦେଉଥିଲେ ।

ସକ୍ରୀୟ ରାଜନୀତିରୁ ସନ୍ୟାସ ଗ୍ରହଣ କରି ଉଭୟ ଦମ୍ପତ୍ତି ମାଳତୀ ଦେବୀଙ୍କ ପ୍ରତିଷ୍ଠିତ ଉତ୍କଳ ନବଜୀବନ ମଣ୍ଡଳର ସକ୍ରୀୟ ଦାୟିତ୍ୱ ନେଇ ଓଡ଼ିଶାର ଦୁର୍ଗମ ଆଦିବାସୀ ଅଞ୍ଚଳରେ ନାନାଦି ଗଠନ ମୂଳକ କାର୍ଯ୍ୟରେ ସମ୍ପୃକ୍ତ ରହିଥିଲେ । ନିର୍ବାଚନ ରାଜନୀତିକୁ ଫେରିବାପାଇଁ ତାଙ୍କର ବଂଧୁ ବିଜୁ ପଟ୍ଟନାୟକ, ବିରେନ୍ ମିତ୍ର, ସଦାଶିବ ତ୍ରିପାଠୀ ପ୍ରମୁଖଙ୍କ ଅନେକ ଅନୁରୋଧକୁ ସେ ନମ୍ରତାର ସହ ଏଡ଼ାଇ ଯାଇଥିଲେ । ଓଡ଼ିଶାରେ ଖଦୀ ଓ ଗ୍ରାମୋଦ୍ୟୋଗର ବିକାଶ, ଭୂଦାନ ଆନ୍ଦୋଳନ ତଥା ସର୍ବୋଦୟ ଏବଂ ଗାନ୍ଧୀ ବିଚାରର ପ୍ରସାର ପାଇଁ ଉଭୟ ଏକ ମନ ଏକ ପ୍ରାଣ ହୋଇ କାର୍ଯ୍ୟ କରିବାରେ ଅସୀମ ଆନନ୍ଦ ଲାଭ କରୁଥିଲେ. ଉଭୟ ଅତ୍ୟନ୍ତ ସ୍ପଷ୍ଟବାଦୀ, ବଂଧୁବତ୍ସଳ ତଥା ଅତିଥି ପରାୟଣ ଥିଲେ । ସମାଜର ନିମ୍ନବର୍ଗ ପ୍ରତି ଉଭୟଙ୍କର ମର୍ମ ବେଦନା ସବୁ ସମୟରେ ରହିଥିଲା । ନିଜର ଚଳିବା ପାଇଁ ଯେତିକି ସର୍ବନିମ୍ନ ଆବଶ୍ୟକତା ତାରି ମଧ୍ୟରେ ନିଜକୁ ସୀମିତ ରଖି ଏମ୍.ଏଲ୍.ଏ. ପେନସନ୍‌କୁ ପ୍ରତ୍ୟାଖ୍ୟାନ କରିଥିବାର ଆଦର୍ଶ ବୋଧେ ଏ ରାଜ୍ୟରେ ବିରଳ । ଜୀବନର ଶେଷ ସମୟ ଯାଏ ସମାଜରେ ଅବହେଳିତ ଅଭାବଗ୍ରସ୍ତ ଦୁଃଖୀ ଲୋକଙ୍କ ସାହାଯ୍ୟ ପାଇଁ ସେମାନଙ୍କ ଅନୁକମ୍ପା ଅତୁଳନୀୟ । ଏ ପ୍ରକାର ଦମ୍ପତ୍ତି ବର୍ତ୍ତମାନର ସମାଜରେ ବିରଳ ।

ପୂର୍ବତନ ବିଧାୟକ
ଏଲ୍.ଏନ୍. ଦାସ ଷ୍ଟ୍ରିଟ୍, ବାଲେଶ୍ୱର ।

••

# ଜୟକୃଷ୍ଣ ମହାନ୍ତି : ଏକ ନିଆରା ବ୍ୟକ୍ତିତ୍ୱ

ଡକ୍ଟର ବୀରେନ୍ଦ୍ର ନାୟକ

ସଂଗଠନ ଭିତରେ ନେତୃତ୍ୱ ପାଇଁ ସମସ୍ତଙ୍କ ଦ୍ୱାରା ସ୍ୱତଃପ୍ରବୃତ୍ତ ଭାବେ ଗ୍ରହଣୀୟ ହୋଇ ପାରୁଥିବା ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ସ୍ୱର୍ଗତ ଜୟକୃଷ୍ଣ ମହାନ୍ତି। ଅଥଚ ସେ ସମସ୍ତଙ୍କ ସହ ଏକମତ ହେବେ-ଏପରି କେହି ତାଙ୍କଠାରୁ ଆଶା କରୁ ନଥିଲେ। ତାଙ୍କ ସହ ମତ ପାର୍ଥକ୍ୟ କୌଣସି ତିକ୍ତତା ସୃଷ୍ଟି କରୁନଥିଲା। କଦାପି କୌଣସି ଉତ୍ତେଜନାର ବଶବର୍ତ୍ତୀ ହୋଇ ନିଜର ମତ ଉପସ୍ଥାପନ କରିବା-ତାଙ୍କୁ କେହି ଦେଖିନାହିଁ। କିନ୍ତୁ ନିଜ ଯୁକ୍ତିରୁ ସେ ଯେ ସହଜରେ ଓହରି ଯାଆନ୍ତି ନାହିଁ- ଏହା ମଧ୍ୟ ତାଙ୍କ ସହକର୍ମୀ ମାନଙ୍କର ଅଭିଜ୍ଞତା। ତାଙ୍କ ପରିଚାଳନାରେ ସଭା ପରିବେଶ ଯେ ସୌହାର୍ଦ୍ଦ୍ୟପୂର୍ଣ୍ଣ ରହିଥାଏ-ଏହାହିଁ ତାଙ୍କ ବ୍ୟକ୍ତିତ୍ୱର ଏକ ବିରାଟ ବୈଶିଷ୍ଟ୍ୟ।

ସେ ମେଧାବୀ ଛାତ୍ର ଥିଲେ। ଉଚ୍ଚତର ଶିକ୍ଷାପାଇ ଏକ ନିଶ୍ଚିତ ବୃତ୍ତିଗତ ଜୀବନ ଯାପନ କରି ପାରିଥାନ୍ତେ। କିନ୍ତୁ ଦେଶସେବାକୁ ବ୍ରତ ବୋଲି ଗ୍ରହଣ କରି ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ ଓ ଏକ ଅନିଶ୍ଚିତ ଭବିଷ୍ୟତକୁ ସ୍ୱୀକାର କରିନେଲେ। ତା'ପରେ ସେ ପଛକୁ ଫେରିକି ଚାହିଁ ନାହାନ୍ତି। ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମାଦେବୀ, ମାଳତୀ ଦେବୀଙ୍କର ଅତ୍ୟନ୍ତ ବିଶ୍ୱସ୍ତ ହୋଇ ପଡ଼ିଲେ ତାଙ୍କର ଦେଶସେବା ପାଇଁ ଉତ୍ସର୍ଗୀକୃତ ନିଷ୍ଠାପରତାର ଅବଲମ୍ବନରେ। ମୁଖ୍ୟଧାରାର ରାଜନୀତିରେ ସାମୟିକ ସାମିଲ ହୋଇ ବିଧାୟକ ହୋଇଥିଲେ ହେଁ ମୂଳତଃ କ୍ଷମତା ରାଜନୀତିରୁ ନିଜକୁ ଦୂରେଇ ରଖିଥିଲେ। ଏହି ଦୃଷ୍ଟିରୁ ସେ ଥିଲେ ନବକୃଷ୍ଣ ଚୌଧୁରୀଙ୍କର ପ୍ରକୃତ ଅନୁଗାମୀ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ଥିଲେ ବିଧାୟକ। ସେହି ସମୟରେ ହୋଇଥିବା ବିଭିନ୍ନ ପ୍ରଗତିଶୀଳ ବିଧେୟକ ପ୍ରସ୍ତୁତିରେ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହୁଥିଲା। ବିଧେୟକ ଗୁଡ଼ିକ ଗୃହୀତ ହେବା ପୂର୍ବରୁ ବିଧାନସଭାରେ ଯେଉଁ ଆଲୋଚନା ହେଉଥିଲା ସେଥିରେ ତାଙ୍କର ସକ୍ରିୟ ଯୋଗଦାନ ବିଧେୟକର ମୂଳ ଲକ୍ଷ୍ୟକୁ ଭ୍ରଷ୍ଟ କରିବାର ଉଦ୍ୟମକୁ ପ୍ରତିହତ କରିବାରେ ସଫଳ ହୋଇ ପାରିଥିଲା। ଯେଉଁମାନେ ତାଙ୍କ ସହ ପ୍ରତ୍ୟକ୍ଷ ସଂପର୍କରେ ଆସିଛନ୍ତି ଓ ବିଧେୟକ ଉପରେ ଆଲୋଚନାର ଗତି ସଂପର୍କରେ ତାଙ୍କଠାରୁ ଶୁଣିଛନ୍ତି ସେମାନେ ପ୍ରଗତିଶୀଳ ବିଧେୟକ ଗୁଡ଼ିକୁ ଖର୍ବ କରିବାର ଉଦ୍ୟମର ପୃଷ୍ଠଭୂମିରେ ଥିବା ତତ୍କାଳୀନ ସାମାଜିକ ଅର୍ଥନୈତିକ ବ୍ୟବସ୍ଥାର ଏକ ସ୍ପଷ୍ଟ ଚିତ୍ର ପାଇଛନ୍ତି ଓ ବିଭିନ୍ନ ଶ୍ରେଣୀ ସ୍ୱାର୍ଥକୁ ପ୍ରତିନିଧିତ୍ୱ କରୁଥିବା ବିଧାୟକ ମାନଙ୍କ ଭିତରେ ଏକ ପ୍ରଗତିଶୀଳ ବିଧେୟକକୁ ଗୃହୀତ କରାଇବାର ନବବାବୁଙ୍କର କୌଶଳ ବିଷୟରେ ମଧ୍ୟ ସୂଚନା ପାଇଛନ୍ତି।

କହିବା ବାହୁଲ୍ୟ ଯେ ବହୁ ବିବିଧ ଅଭିଜ୍ଞତାର ଗନ୍ତାଘର ଥିଲେ ଜୟକୃଷ୍ଣ ବାବୁ। ତାଙ୍କ ସହ ଆଳାପ ଆଲୋଚ଼ନା ବେଳେ ଏହି ଲେଖକର ସୌଭାଗ୍ୟ ହୋଇଛି ସ୍ୱାଧୀନୋତ୍ତର ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ ପରିସ୍ଥିତି ଓ ବିବର୍ତ୍ତନ ବିଷୟରେ ତାଙ୍କ ମୁହଁରୁ ଶୁଣିବାର। ଉତ୍କଳ ନବଜୀବନ ମଣ୍ଡଳ, ମାଳତୀ ଚ଼ୌଧୁରୀ, ନବକୃଷ୍ଣ ଚ଼ୌଧୁରୀ ଟ୍ରଷ୍ଟ ଆଦିର କାର୍ଯ୍ୟକ୍ରମରେ ମୋତେ ସାମିଲ କରାଇ ସେ ମୋର ସମାଜ- ସଂପର୍କରେ ଧାରଣାକୁ ପ୍ରସାରିତ କରିବା ପାଇଁ ସୁଯୋଗ ଦେଇଥିଲେ। ମୋର ତାଙ୍କ ସହ ସଂପର୍କକୁ ପଛେଇ ଦେଖିଲେ ଯାହା ମୋତେ ବାରମ୍ବାର ଦଂଶନ କରେ ତାହା ହେଉଛି ତାଙ୍କର ଅପେକ୍ଷା ଯେ ମୁଁ ନବକୃଷ୍ଣ ଚ଼ୌଧୁରୀଙ୍କର ଜୀବନୀଟିଏ ଲେଖିବି ତାଙ୍କର ଜୀବଦଶାରେ। ଏହା ମୋ ପକ୍ଷରେ ସମ୍ଭବପର ହେଲାନାହିଁ। ଏହାହିଁ ମୋର ସବୁଠାରୁ ବଡ଼ ଗ୍ଳାନି। ନବକୃଷ୍ଣ ଚ଼ୌଧୁରୀଙ୍କର ଚ଼ାରି ଚ଼ାରିଟି ଜୀବନୀ ଥାଉ ଥାଉ ମୋ ଭଳି ଜଣେ ବ୍ୟକ୍ତି ଯିଏ କି ନବକୃଷ୍ଣ ଚ଼ୌଧୁରୀଙ୍କ ସହ କଥାବାର୍ତ୍ତା ହେବାର ଥରେ ମାତ୍ର ସୁଯୋଗ ପାଇଛି। ତା'ଠାରୁ ନବକୃଷ୍ଣ ଚ଼ୌଧୁରୀଙ୍କର ଉପରେ ଜୀବନୀ ପୁସ୍ତକ ଆଶା କରିବା ମୋ ଉପରେ ତାଙ୍କର ବିଶ୍ୱାସର ନିଦର୍ଶନ ନିଶ୍ଚୟ ଯାହାର ଯୋଗ୍ୟ ମୁଁ ପ୍ରକୃତରେ କେବେ ନଥିଲି କି ବର୍ତ୍ତମାନ ମଧ୍ୟ ନୁହେଁ। ଏହି ଦୃଷ୍ଟିରୁ ମୁଁ ତାଙ୍କୁ ହତାଶ କରିଛି। କିନ୍ତୁ ଯାହା ମୋର ଗ୍ଳାନିକୁ ଆହୁରି ବଢ଼ାଇ ଦେଇଛି ତାହା ହେଉଛି ଅନୁଭୂତି ଯେ ସେ କଦାପି ଏହି ହତାଶ ଭାବକୁ ମୋତେ ଜଣାଇ ଦେଇ ନାହାନ୍ତି। ବରଂ ତାଙ୍କର ସେହି ସଂକ୍ରାମକ ହସ ଦେଇ ମୋର ଅସହାୟତାକୁ ମାନି ନେଇଛନ୍ତି ଓ ଆଗିରେ ଯେପରି କହିଛନ୍ତି ଯେ ଏବେ ନ ହେଲେ ମଧ୍ୟ ପରେ ଲେଖିବ, ନିଶ୍ଚୟ ଲେଖିବ। ଭାବୁଛି ତାଙ୍କର ଏହି ଅକୁହା ତାଗିଦ୍ ନିଶ୍ଚୟ ଫଳବତୀ ହେବ।

ଜୟକୃଷ୍ଣ ବାବୁଙ୍କର ଅବର୍ତ୍ତମାନ ନିଶ୍ଚିତ ଏକ ଶୂନ୍ୟତା ସୃଷ୍ଟି କରିଛି। ମୂଲ୍ୟବୋଧ ଭିତ୍ତିକ ସମାଜ ଗଠନରେ ବିଶ୍ୱାସୀଙ୍କ ସଂଖ୍ୟାରେ କେବଳ ହ୍ରାସ ଘଟିଛି ଏହା ନୁହେଁ। ଅବଶ୍ୟ ବିଶ୍ୱାସୀଙ୍କୁ ନେତୃତ୍ୱହୀନ କରି ଦେଇଛି। ଏହା କହିବା ବାହୁଲ୍ୟ ଯେ ଏହି ବିଶ୍ୱାସକୁ ଅଧିକ ବ୍ୟାପକ ଓ ଶକ୍ତିଶାଳୀ କରିବା ଦିଗରେ ନିଷ୍ଠାପର ପ୍ରଚ଼େଷ୍ଟା ହିଁ ଜୟକୃଷ୍ଣ ବାବୁଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳୀ।

**ଅଧ୍ୟାପକ, ଗଣିତ ବିଭାଗ,**
**ଉତ୍କଳ ବିଶ୍ୱବିଦ୍ୟାଳୟ।**
**ସରସ୍ୱତୀ କୁଞ୍ଜ, ଜାଗମରା**

●●

# ସେ ଥିଲେ ଆମ ଜୟୀଭାଇ

ଶ୍ରୀମତୀ ପାର୍ବତୀ ସ୍ୱାଇଁ

ଜୟୀଭାଇ ଯାହାଙ୍କର ଭିତର ବାହାର ମମତାରେ ପୂର୍ଣ୍ଣ। କେତେ ଗୁଣୀ, ଦୟାବନ୍ତ, ବିଚାରବନ୍ତ, ଶ୍ରଦ୍ଧାଳୁ। ତାଙ୍କୁ ଜାଣିଥିବା ଲୋକ ଏ କଥା ଜାଣନ୍ତି। ଆମ ମାନଙ୍କୁ ନିଜର ପରିବାର ସଦସ୍ୟ ଭାବେ ବ୍ୟବହାର କରନ୍ତି।

୧୯୫୭ ମସିହାରେ ମା କେଉଁଝର ଜିଲ୍ଲା ଭୂଦାନ ନିବେଦିକା ଦାୟିତ୍ୱ ଗ୍ରହଣ କଲେ। ଗ୍ରାମଦାନ କାମକୁ ଆଗେଇ ନେବାକୁ ସବୁକର୍ମୀ ତତ୍ପର ହୋଇ ଲାଗି ପଡ଼ିଲେ। ସେ ସମୟରେ କସ୍ତୁରବା ଟ୍ରଷ୍ଟ ଓ ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନେ ମିଶି ୨ଟି କେନ୍ଦ୍ରରେ କାମ କରୁଥିଲେ। ଜୟୀଭାଇ କେନ୍ଦ୍ରମାନଙ୍କୁ ଆସୁଥିଲେ। ମୁଁ ପ୍ରଥମେ ତାଙ୍କୁ ବିଶ୍ୱନାଥପୁରରେ ଦେଖିଲି। ତାଙ୍କର ହସ ହସ ମୁହଁ, କର୍ମ ତତ୍ପରତା ଓ ମାର୍ଗ ଦର୍ଶନରେ ଗ୍ରାମବାସୀ ମାନେ ପ୍ରଭାବିତ ହୋଇଥିଲେ। ଜୟୀଭାଇ ସନ୍ଥ ବିନୋବାଙ୍କ ଓଡ଼ିଶା ରହଣୀ ସମ୍ବନ୍ଧରେ, ସ୍ୱାଧୀନ ଭାରତରେ ଆମ୍ଭମାନଙ୍କ କର୍ତ୍ତବ୍ୟ ବିଷୟରେ ତଥା ନବଜୀବନ ମଣ୍ଡଳ ଅନୁଷ୍ଠାନର ଲକ୍ଷ୍ୟ ସମ୍ବନ୍ଧରେ ପ୍ରାଞ୍ଜଳଭାବେ ବୁଝାଇ କହିଥିଲେ। ଗାଁର ଦ୍ୱନ୍ଦ ଗ୍ରାମ ସଭା ମାଧ୍ୟମରେ ନିଷ୍ପତ୍ତି ହେବ। ଗାଁରେ ମଦ ଗଞ୍ଜେଇ ପଶିବ ନାହିଁ, ଲୋକେ କୋର୍ଟ କଚେରୀକୁ ଯିବେ ନାହିଁ ଏହା ଉପରେ ଜୟୀଭାଇ ଗାଁ ଗାଁରେ ବୁଲି ଲୋକଙ୍କୁ ବୁଝାଉଥିଲେ।

ସେତେବେଳେ ଏକ ମଜା ଘଟଣା ଏବେ ବି ମୋର ମନେ ଅଛି। ବିଶ୍ୱନାଥପୁରର ଲୋକମାନେ ଆମ କେନ୍ଦ୍ର ପାଖରେ କିଛି ଜାଗା ଆମକୁ ବଗିଚା ଓ ପନିପରିବା ଚାଷ ପାଇଁ ଛାଡ଼ି ଦେଇଥିଲେ। କିନ୍ତୁ ଆମେ ସେଠି କିଛି ଲଗାଇନଥିଲୁ ଓ ଏ ଜାଗା ଜଙ୍ଗଲିଆ ହୋଇ ପଡ଼ିଥିଲା। ସେ ସମୟରେ ଜୟୀଭାଇ ଆମକେନ୍ଦ୍ରକୁ ଆସିଥାନ୍ତି। ସେ ମତେ ଡ଼ାକି କହିଲେ ତୁମର ବଗିଚାର ମଞ୍ଜି ସଂଗ୍ରହ କରି ମତେ ଦେବ ମୁଁ ଅନୁଗୁଳରେ ନୁମାଙ୍କ ବଗିଚାରେ ଲଗାଇବି। ମୁଁ ଏଥିରେ ଖୁବ୍ ଲଜ୍ଜିତ ହେଲି। ତା'ପରଦିନ ବାଡ଼ି ସଫା କରି ସେଠାରେ ପନିପରିବା ଗଛ ଲଗାଇଲୁ।

୧୯୭୨ ମସିହାରେ ମୁଁ ସେଠାରୁ ଢ଼େଙ୍କାନାଳର ବେରବୋଇକୁ ଆସିଲି। ସେତେବେଳେ ଜୟୀଭାଇ ସେ ଅଞ୍ଚଳର ପୂର୍ବତନ ଲୋକପ୍ରତିନିଧି ଓ ୧୯୭୬ ମସିହାରେ କିରଣ ଅପା ସେଠାର ବିଧାୟିକା। ସେମାନେ ବେରବୋଇକୁ ବହୁଥର ଆସନ୍ତି। ସେମାନଙ୍କୁ ସ୍ଥାନୀୟ ଲୋକମାନେ ଖୁବ୍ ଶ୍ରଦ୍ଧା କରନ୍ତି। ଜୟୀଭାଇଙ୍କ ଉଦ୍ୟମରେ ବେରବୋଇ କେନ୍ଦ୍ରଘର ଯାହାକି ଚାଳ ଓ ଦଦରା ଘର ଥିଲା, ଭଙ୍ଗାହୋଇ କୋଠାଘର ହୋଇ ପାରିଥିଲା।

କସ୍ତୁରବା ଟ୍ରଷ୍ଟ ନିର୍ଦ୍ଦେଶରେ ଥରେ ଅକ୍ଟୋବର ୨ ତାରିଖକୁ ଆଖି ଆଗରେ ରଖି ଏକ ମହିଳା ପଦଯାତ୍ରା ସାରା ଭାରତବର୍ଷରେ ଚାଲିବା ସ୍ଥିର ହେଲା। ମୁଁ ଚିଠିପାଇ ଜୟୀଭାଇ ଓ ଅପାଙ୍କୁ ଜଣାଇଲି। ସେମାନେ ଆମ କେନ୍ଦ୍ରକୁ ଆସିବା ପରେ ସମସ୍ତ କାର୍ଯ୍ୟକ୍ରମ ସ୍ଥିର ହେଲା। ଚୂନି ଅପା ମଧ୍ୟ

ଏଥିରେ ଯୋଗ ଦେଇଥିଲେ । ରହଣୀ ଜାଗା, ବିଭିନ୍ନ ଦାୟିତ୍ୱ ବଣ୍ଟା ହେଲା । ଗାଁରୁ ଆଳସ୍ୟ, ନିଶା ହଟିବ, କଳିତକରାଳ ସମାଧାନ ହେବ, ସ୍ତ୍ରୀ ଲୋକଙ୍କୁ ଯଥାର୍ଥ ନିରାପତ୍ତା ଦିଆଯିବା ପ୍ରଭୃତି ବିଷୟରେ ଲୋକଙ୍କ ଭିତରେ ଏ ପଦଯାତ୍ରାରେ ସଚ୍ଚେତନତା ସୃଷ୍ଟି କରାଇବା ଲକ୍ଷ୍ୟ ରଖାଗଲା । ସ୍ୱାଧୀନ ଭାରତରେ ସର୍ବନିମ୍ନ ୫ଟି ଅଧିକାର ସମସ୍ତଙ୍କର ରହିବ ବୋଲି ମହାତ୍ମାଗାନ୍ଧୀ କହିଥିଲେ । ସମସ୍ତଙ୍କୁ ଖାଦ୍ୟ, ଘର, ବସ୍ତ୍ର, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ମିଳିବା ନିତାନ୍ତ ପ୍ରୟୋଜନୀୟ । ଏ ସମସ୍ତ ସାଙ୍ଗକୁ ସଫେଇ, ପ୍ରାର୍ଥନା, ଗାଁ ପରିକ୍ରମା ଓ ଆଲୋଚନା ସଭା ବ୍ୟବସ୍ଥା ପାଇଁ ଠିକ୍ ହେଲା । ରହଣୀ ଜାଗାକୁ କସ୍ତୁରୀ ଭାଇ ଯିବେ । ବାଟ ଦେଖାଇବାକୁ ଋଷିଭାଇ ଓ ରଘୁଭାଇ ଦାୟିତ୍ୱରେ ରହିଲେ । କିରଣ ଅପା, ମାଳଅପା, କୁନ୍ତଳା ଅପା, ଶଶୀରେଖା ଅପା ଇତ୍ୟାଦିଙ୍କୁ ନେଇ ଆମେ କୁମାର ପୂର୍ଣ୍ଣମୀଦିନ ପଦଯାତ୍ରା ଆରମ୍ଭ କଲୁ । ବାଟ ଖର୍ଚ୍ଚପାଇଁ କର୍ପୂରୀଭାଇ ପଇସା ବ୍ୟବସ୍ଥା କରି ଦେଲେ । ସେମାନଙ୍କ ଉଦ୍ୟମରୁ ଏ ପଦଯାତ୍ରା ଖୁବ୍ ସୁରୁଖୁରୁରେ ସଫଳତାର ସହିତ ଶେଷ ହୋଇ ପାରିଲା ।

ମୁଁ ଡ଼େଲାଙ୍ଗରେ ଥିବା ସମୟରେ କର୍ପୂରୀଭାଇ ଓ କିରଣ ଅପା ମତେ ବହୁତ ସାହାଯ୍ୟ କରିଛନ୍ତି । ତାଙ୍କ ମାର୍ଗ ଦର୍ଶନ ମୋପାଇଁ ଜୀବନସାରା ଶ୍ରେଷ୍ଠ ସମ୍ପଦ ହୋଇ ରହିବ । କର୍ପୂରୀଭାଇଙ୍କ ଶେଷ ଅବସ୍ଥାରେ ମୁଁ ଖବର ପାଇ ତାଙ୍କୁ ଦେଖିବାକୁ ଯାଇଥିଲି । ମୋତେ ଚିହ୍ନି ପାରିଲେ ନାହିଁ । କଅଣ କହିଲେ କିଛି ବୁଝି ପାରିଲି ନାହିଁ । କାନ୍ଦି କାନ୍ଦି ନର୍ସିଂହୋମ୍‌ରୁ ଫେରି ଆସିଲି । ପାଖରେ ଗୌରୀଥିଲା, ତାକୁ ପଚାରିଲି ବାପା କଅଣ କହିଲେ । ସେ କହିଲା ତାଙ୍କ କଥା କିଛି ବୁଝି ହେଉନାହିଁ । ମୁଁ ହତାଶ ହୋଇ ଫେରିଲି । କେବଳ ପ୍ରଣାମ କରି । ଭଗବାନ ତାଙ୍କୁ ଶାନ୍ତିରେ ରଖନ୍ତୁ । ତାଙ୍କ ପରି ଆଦର୍ଶ ଦେଶ ସେବକ ଏ ମାଟିରେ ଅଧିକରୁ ଅଧିକ ଜନ୍ମ ନେଇ ଏ ଦେଶକୁ ଧନ୍ୟ କରନ୍ତୁ ।

କରିଲୋପାଟଣା, କେନ୍ଦ୍ରାପଡ଼ା ।

●●

ଉପକାର କର ପ୍ରତି ଉପକାର
ସାଧନେ ମହତ ବ୍ୟସ୍ତ
ଘନ ଜଳେ ପୂର୍ଣ୍ଣ ଜଳାଶୟ ବାଷ୍ପ
ପ୍ରତିଦାନେ ଚିରାଭ୍ୟସ୍ତ ।

– ଗଙ୍ଗାଧର ମେହେର

# ଜୟୀଭାଇଙ୍କୁ ମୁଁ ଯେପରି ଜାଣେ

**ରମାକାନ୍ତ ମଣ୍ଡଳ**

ବ୍ରିଟିଶ ଶାସନକୁ ବିରୋଧ କରି ଯେଉଁ କେତେକଣ ସାହସୀ, ଉତ୍ସାହୀ ଯୁବକ ଦେଶ ମାତୃକାର ସେବା ପାଇଁ ଅଧାରୁ ଛିଡ଼ା ହୋଇଥିଲେ, ସେମାନଙ୍କ ମଧ୍ୟରୁ ଜୟକୃଷ୍ଣ ମହାନ୍ତି ଅନ୍ୟତମ। କେବେ ସେ ପଛକୁ ଅନାଇନାହାନ୍ତି। ସଦାସର୍ବଦା ଆଗକୁ ଆଗକୁ ମାଡ଼ି ଚାଲିଥିଲେ। ତାଙ୍କ ମନ କେବେ ମଳିନ ପଡ଼ିନଥାଏ। ସବୁବେଳ ପାଇଁ ହସ ହସ ମୁଖ। ସମସ୍ତଙ୍କୁ ସାହସ ଯୋଗାଉଥିବା ବ୍ୟକ୍ତି। ସମାଜ ସେବାରେ ବ୍ରତୀ ଥିବା ବିଭିନ୍ନ ଅନୁଷ୍ଠାନର ଭାଇ ଭଉଣୀମାନଙ୍କୁ ସେ ବହୁତ ଭଲ ପାଆନ୍ତି। ତାଙ୍କ ମନ ଭିତରେ କିଛି ବାଛ ବିଚାର ନଥାଏ।

ଜୟୀଭାଇଙ୍କ ସହ ସଂପର୍କ ୧୯୯୧ ମସିହାଠାରୁ। ଆମ୍ଭେ ଯେତେବେଳେ କିଛି ବନ୍ଧୁମାନେ ମିଶି "ଚିଲିକା ବଞ୍ଚାଅ" ଆନ୍ଦୋଳନ କରୁଥିଲୁ ସେହି ସମୟରେ କେତେକଣ ଆସିଥିଲୁ ସର୍ବୋଦୟ ମଣ୍ଡଳର ଏକ ସାଧାରଣ ସଭାରେ ଯୋଗଦେଇ ଆମ ଆନ୍ଦୋଳନ ବିଷୟରେ ସୂଚନା ଦେବାପାଇଁ। ସେହି ସମୟରେ ଜୟୀଭାଇଙ୍କୁ ପାଖରୁ ଦେଖିବାର ସୁଯୋଗ ପାଇଥିଲି। ସମୟକ୍ରମେ ତାଙ୍କ ଘରକୁ ଯିବା ଆସିବା ହେଲା। ଏହା ମଧ୍ୟରେ ଚିଲିକା ଆନ୍ଦୋଳନର ଏକ ପ୍ରକାର ପରିସମାପ୍ତି ଘଟିଲା। ଏହି ପରିପ୍ରେକ୍ଷୀରେ ସେ ମୋତେ ସର୍ବୋଦୟ କାମ କରିବା ପାଇଁ ଉତ୍ସାହିତ କରୁଥାନ୍ତି। ସେହି ଦିନଠାରୁ ସର୍ବୋଦୟରେ ପୂରା ସମୟ ଦେଇ କାମ କଲି। ବିଶେଷ କରି ୧୯୯୭ ମସିହାଠାରୁ ତାଙ୍କ ସହ ଘନିଷ୍ଠ ସଂପର୍କ ହେଲା। ପ୍ରାୟ ସମୟରେ ତାଙ୍କ ପାଖକୁ ଯିବା ଆସିବା ହେଉଥାଏ।

ତାଙ୍କ ପାଖରେ ମୁଁ ଦେଖିଛି କୌଣସି କାମ ଆରମ୍ଭ କଲେ ସେ କେବେ ଛାଡ଼ନ୍ତି ନାହିଁ। କାମ ନ ସରିବା ପର୍ଯ୍ୟନ୍ତ ଲାଗିଥାନ୍ତି। ପ୍ରାୟ ସମୟରେ ତାଙ୍କ ସହ ବିବିଧ କଥା ଆଲୋଚନା ହୁଏ। କେତେବେଳେ ନବଜୀବନ ମଣ୍ଡଳ ସମସ୍ୟା ତ କେତେବେଳେ ସର୍ବୋଦୟ କିମ୍ବା ଖଦୀ ମଣ୍ଡଳର ସମସ୍ୟା। ସେ କୌଣସି ବିଷୟରେ ଶୁଣିଲେ ତା'ର ମୂଳ ପର୍ଯ୍ୟନ୍ତ ଯାଆନ୍ତି। ବହୁବାର ଦେଖିଛି ସର୍ବୋଦୟ ସଂଗଠନ ସହ ଜଡ଼ିତ କୌଣସି କର୍ମୀ ଅସନ୍ତୁଷ୍ଟ ହେଲେ ତାଙ୍କ ପାଖରେ ପହଞ୍ଚନ୍ତି। ଜୟୀଭାଇ ତାଙ୍କଠାରୁ ପ୍ରଥମେ ଶୁଣନ୍ତି ଏବଂ ତାହାର ସମାଧାନ ପନ୍ଥା ବାହାର କରିଥାନ୍ତି। କୌଣସି ସମସ୍ୟା ଦେଖିଲେ ସେ ନୀରବ ହୋଇ ରହିପାରନ୍ତି ନାହିଁ। ଗଜପତି ଜିଲ୍ଲାର ଆର ଉଦୟଗିରି ଅଞ୍ଚଳରେ ୧୯୯୮ ମସିହାରେ ପାଣ ଖ୍ରୀଷ୍ଟିୟାନ ଏବଂ ଆଦିବାସୀମାନଙ୍କ ଭିତରେ ଏକ ସଂଘର୍ଷମୟ ଘଟଣା ଘଟିଥିଲା। ପାଣ ଖ୍ରୀଷ୍ଟିୟାନ ମାନେ ଆଦିବାସୀମାନଙ୍କୁ ଭୟଭୀତ କରାଉଥିଲେ ଏବଂ ସେମାନଙ୍କ ଉପରେ ନାନା ଭାବରେ ଅତ୍ୟାଚାର କରୁଥିଲେ। ଏଥିରେ ପ୍ରତିଶୋଧାତ୍ମକ ହୋଇ ଆଦିବାସୀମାନେ ଜେଲ୍ ଯାଇଥିବା ଦୁଇ ଜଣ କଏଦୀଙ୍କୁ ଜେଲ୍ ଗେଟ୍ ଭାଙ୍ଗି ବାହାରକୁ ଟାଣି ଆଣି ପୋଲିସ୍ ଥାନା ଆଗରେ ପୋଡ଼ି ମାରି ଦେଲେ ଏହା

ଫଳରେ ଏ ଅଞ୍ଚଳରେ ପ୍ରବଳ ଉତ୍ତେଜନା ଲାଗି ରହିଥିଲା। ଘଟଣା ଘଟିବା ପରେ ପରେ ଜୟୀଭାଇ ମୋ ସହ ଆଲୋଚନା କରି ବହୁ ଅଞ୍ଚଳରେ ଉତ୍କଳ ସର୍ବୋଦୟ ମଣ୍ଡଳ ଏବଂ ଉତ୍କଳ ନବଜୀବନ ମଣ୍ଡଳ ତରଫରୁ ପଦଯାତ୍ରା ମାଧ୍ୟମରେ ଶାନ୍ତି ଫେରାଇ ଆଣିବାକୁ ପରାମର୍ଶ ଦେଇଥିଲେ। ତତ୍‌ପରେ ସେ ଅଞ୍ଚଳରେ ୭ ଦିନ ବ୍ୟାପି ଉଭୟ ସଂଗଠନର ସାଥିମାନେ ମିଶି ବିଭିନ୍ନ ଗାଁରେ ପଦଯାତ୍ରା କରି ଶାନ୍ତିର ବାର୍ତ୍ତା ପ୍ରଚାର କଲୁ।

ଜୟୀଭାଇଙ୍କର ବଡ଼ ବିଶେଷତ୍ୱ ହେଉଛି ଯେ ସେ ଦୈବୀ ଦୁର୍ବିପାକ ସମୟରେ ରମାଦେବୀ, ଚୁନୀ ଅପା, ବୁଲୁଭାଇଙ୍କ ଭଳି ବ୍ୟସ୍ତ ହୋଇପଡ଼ନ୍ତି। ସର୍ବୋଦୟ ରିଲିଫ୍ କମିଟୀର ବୈଠକ ଡ଼କାଇ ଆଗ କର୍ମୀମାନେ ତୁରନ୍ତ ସେ ଅଞ୍ଚଳକୁ ଯିବାପାଇଁ ସେ ବ୍ୟବସ୍ଥା କରୁଥିଲେ। ୧୯୯୯ ମସିହାର ମହାବାତ୍ୟା ହେଉ, ସୁନାମୀ ହେଉ ଅଥବା ମହାବନ୍ୟା ଯେ କୌଣସି ବିପତ୍ତିରେ ଲୋକମାନଙ୍କ ପାଇଁ ସେ ବ୍ୟଥିତ ହୋଇପଡନ୍ତି। ଗତବର୍ଷ ଜୁନ ମାସରେ ଉତ୍ତର ଓଡ଼ିଶାର ଜଳେଶ୍ୱର ଓ ବାଲିଆପାଳ ଅଞ୍ଚଳରେ ବନ୍ୟା ସମୟରେ କିଭଳି ବ୍ୟସ୍ତ ହୋଇପଡୁଥାନ୍ତି ତାହା ମୁଁ ଅନୁଭବ କରିଛି।

୨୦୦୩ ମସିହାରେ ଓଡ଼ିଶାରେ ସର୍ବୋଦୟ ସମାଜ ସମ୍ମିଳନୀ ଡ଼କାଯାଇଥାଏ। ଏ ସମ୍ମିଳନୀ କିପରି ସୁଚାରୁ ରୂପେ ଶେଷ ହେବ ସେଥିପାଇଁ ଜୟୀଭାଇ ସର୍ବଦା ଚିନ୍ତିତ ଥିଲେ। ସେ ମଧ୍ୟ କେତେ ଜଣ ବିଶିଷ୍ଟ ବ୍ୟକ୍ତି ମାନଙ୍କ ପାଖକୁ ନିଜେ ଯାଇ ଚାନ୍ଦା ସଂଗ୍ରହ କରିଥିଲେ। ସମ୍ମିଳନୀ ଡ଼ିସେମ୍ବର ୧୯ ତାରିଖ ଠାରୁ ଆରମ୍ଭ ହୋଇ ୨୩ ତାରିଖରେ ଶେଷ ହେଲା। ସମ୍ମିଳନୀର ଠିକ୍ କିଛି ଦିନ ପୂର୍ବରୁ ସେ ଖଟ ଉପରୁ ପଡ଼ିଗଲେ ଏବଂ ଅସୁସ୍ଥ ହୋଇ ପଡ଼ିଲେ। ସେ ଆଉ ସମ୍ମିଳନୀକୁ ଆସି ପାରିଲେ ନାହିଁ। ଏଇଥିପାଇଁ ତାଙ୍କ ମନ ମଧ୍ୟରେ ଖୁବ୍ ଅବଶୋଷ ରହିଗଲା।

ଜୟୀଭାଇଙ୍କର ଆଉ ଗୋଟିଏ ବଡ଼ ଗୁଣ ହେଉଛି ସର୍ବସାଧାରଣ ପାଣ୍ଠି ପରିଚାଳନାରେ ତାଙ୍କର ସ୍ୱଚ୍ଛତା। ପଇସା ପଇସା କରି ସଠିକ୍ ହିସାବ ରଖିବେ। ତାଙ୍କ ମୃତ୍ୟୁର ଅଳ୍ପଦିନ ପୂର୍ବ ପର୍ଯ୍ୟନ୍ତ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟର ହିସାବ ନିର୍ଭୁଲ ଭାବରେ ରଖୁଥିଲେ। ମୋତେ ପ୍ରାୟ ସମୟରେ କହିଛନ୍ତି ଯେ ସର୍ବସାଧାରଣ ଅନୁଷ୍ଠାନର ପଇସାର ହିସାବ ଗୋଟି ଗୋଟି କରି ରଖିବା ଉଚିତ୍। ଜୟୀଭାଇଙ୍କ ଜୀବନରେ ବଡ଼ ବିଶେଷତଃ ହେଉଛି ତାଙ୍କ ପାଖକୁ ଆସୁଥିବା କୌଣସି ଚିଠି କିମ୍ବା ରିପୋର୍ଟକୁ ତନ୍ନ ତନ୍ନ କରି ପଢ଼ନ୍ତି ଓ ସେଥିରେ କିଛି ଭୁଲ ଦେଖିଲେ ସେ ମୌଖିକ ଭାବରେ କିମ୍ବା ଚିଠି ଆକାରରେ ସଂପୃକ୍ତ ବ୍ୟକ୍ତିଙ୍କୁ ଲେଖି ଜଣାନ୍ତି। ଆଇନ ବିଷୟରେ ନ ପଢ଼ି ମଧ୍ୟ ସବୁ ବ୍ୟକ୍ତି ବିଶେଷ ଏବଂ ଅନୁଷ୍ଠାନ ମାନଙ୍କୁ ଆଇନ ବିଷୟରେ ପରାମର୍ଶ ଦିଅନ୍ତି। ମୁଁ ପ୍ରାୟ ସମୟରେ ଜୟୀଭାଇଙ୍କ ବାସ ଭବନକୁ ଆସେ। ବହୁ ସମୟ ଧରି ଭିନ୍ନ ଭିନ୍ନ ବିଷୟରେ ଆଲୋଚନା ହୁଏ। ପ୍ରାୟ ରାତି ୯ଟା ହୋଇଗଲେ ମୁଁ ଯେତେବେଳେ ଉଠିବାକୁ ବସେ ସେତେବେଳେ ସେ "ଆଉ ଟିକିଏ ବସ କହି" ବସାନ୍ତି। କେବେ ସେ ନ ଖୁଆଇ ଛାଡ଼ିଛନ୍ତି ମୋର ମନେ ପଡୁନାହିଁ। ମୋ ପାଇଁ ସେ ପ୍ରେରଣାର ଉତ୍ସ ଥିଲେ। ଆଜିର ପବିତ୍ର ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ତାଙ୍କୁ ମୋର ଭକ୍ତିପୂତ ପ୍ରଣାମ ଜଣାଉଛି।

**ସଂପାଦକ, ଉତ୍କଳ ସର୍ବୋଦୟ ମଣ୍ଡଳ।**



ଋଷିପ୍ରାଣ ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ଚୌଧୁରୀ ସମ୍ମାନ ପ୍ରଦାନ କରୁଛନ୍ତି
ବିଶିଷ୍ଟ ସର୍ବୋଦୟ ନେତା ଶ୍ରୀ ଅନୀଲ କୁମାର ଘୋଷ ।




ବନବାସୀ ସେବାସମିତିର ଚତୁର୍ବିଂଶତମ ଜନ୍ମୋତ୍ସବ ଉପଲକ୍ଷେ ବିଶିଷ୍ଟ ସର୍ବୋଦୟ ନେତା
ଶ୍ରୀ ଶରତଚନ୍ଦ୍ର ମହାରଣାଙ୍କ ସହ -



ଶ୍ରୀମତୀ ମାଳତୀ ଚୌଧୁରୀ ଜନ୍ମଶତବାର୍ଷିକୀ ଉଦ୍‌ଯାପନ ସମାରୋହରେ ଉଦ୍‌ବୋଧନ ଦେଉଛନ୍ତି । ମଞ୍ଚାସୀନ - ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର, ବିଶିଷ୍ଟ ସର୍ବୋଦୟ ନେତା ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଡ: ସରସ୍ୱତୀ ସ୍ୱାଇଁ ।



କେନ୍ଦ୍ର ଇସ୍ପାତ ମନ୍ତ୍ରୀ ଶ୍ରୀ ବ୍ରଜକିଶୋର ତ୍ରିପାଠୀ ନୂଆ ଦିଲ୍ଲୀସ୍ଥ ଓଡ଼ିଶା ଭବନରେ ସ୍ୱାଧୀନତା ସଂଗ୍ରାମୀ ଅନ୍ନପୂର୍ଣ୍ଣା ମହାରଣା ଓ ଜୟକୃଷ୍ଣ ମହାନ୍ତିଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।

# ଜୟୀଭାଇଙ୍କ ସ୍ମରଣେ

ଶିବ ପ୍ରସାଦ ଜେନା

ସମ୍ମାନାସ୍ପଦ ଜୟୀଭାଇଙ୍କୁ ବହୁ ପୂର୍ବରୁ ଜାଣିଥିଲି। ସେ ଓଡ଼ିଶା ଖଦୀ ଗ୍ରାମୋଦ୍ୟୋଗ ବୋର୍ଡର ସଭାପତି ହେବା ପୂର୍ବରୁ ମୁଁ ଖଦୀ ବୋର୍ଡ ଅଧୀନରେ I.D.P. Schemes (ଇଣ୍ଟିଗ୍ରେଟେଡ୍ ଡ଼େଭ୍ଲୋପ୍‌ମେଣ୍ଟ ପ୍ରୋଗ୍ରାମ)ରେ ଜଣେ କର୍ମୀ ଭାବରେ କାମ କରୁଥିଲି।

ଜୟୀଭାଇ ପ୍ରଥମରୁ କଂଗ୍ରେସ ଦଳରେ ଥାଇ ନିମାପଡ଼ା, ଗୋପ ଓ ପୁରୀ ଅଞ୍ଚଳରେ ଜଣେ ସଚ୍ଚୋଟ ନିଷ୍ଠାପର ନିର୍ଭୀକ କର୍ମୀ ହିସାବରେ ବହୁ ଲୋକ ତାଙ୍କୁ ଜାଣିଥିଲେ। ଗାନ୍ଧିଜୀଙ୍କର ୧୯୪୨ କର ବା ମର ଆହ୍ବାନରେ ଝାସ ଦେଇ ଜେଲ୍ ଯାଇଥିଲେ।

ସେ ରେଭେନ୍‌ସା କଲେଜରେ ପଢୁଥିବା ବେଳେ ପୁଣ୍ୟଶ୍ଲୋକ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ନବକୃଷ୍ଣ ଚୌଧୁରୀଙ୍କ ପରିବାର ସହିତ ତାଙ୍କର ବେଶ୍ ଜଣା ଶୁଣାଥିଲା। ୧୯୪୭ ସ୍ୱାଧୀନତା ପ୍ରାପ୍ତି ପରେ ୧୯୫୨ରେ ଯେଉଁ ସାଧାରଣ ନିର୍ବାଚନ ହେଲା, ସେହି ନିର୍ବାଚନରେ କଂଗ୍ରେସ ତରଫରୁ ରାଜ୍ୟ ଭିତରେ ଯେଉଁ କର୍ମୀ ନିର୍ବାଚନ ପାଇଁ ମନୋନୀତ ହୋଇଥିଲେ, ତନ୍ମଧ୍ୟରୁ କ୍ରମାନ୍ୱୟରେ ବିଧାୟକ ପାଇଁ ନିମାପଡ଼ା ନିର୍ବାଚନ ମଣ୍ଡଳୀ ପାଇଁ ଜୟୀବାବୁଙ୍କୁ ମନୋନୀତ କରାଯାଇ କଂଗ୍ରେସରୁ ଟିକେଟ ଦିଆଯାଇଥିଲା। ସେ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାକୁ ବିଧାୟକ ହୋଇ ଆସିଲେ। ସର୍ବ ସମ୍ମତ ମନ୍ତ୍ରୀମଣ୍ଡଳ ଗଠନ ପରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ, ବାଚ୍‌ସ୍ପତି ଭାବେ ଶ୍ରୀ ନନ୍ଦ କିଶୋର ଦାସ ଓ ଉପ ବାଚ୍‌ସ୍ପତି ଭାବେ ମହମ୍ମଦ ହନିଫ୍ ନିର୍ବାଚିତ ହେଲେ। କିନ୍ତୁ ବେଶିଦିନ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଭାବେ ରହି ପାରିଲେ ନାହିଁ। ଆମ ଓଡ଼ିଆଙ୍କର ଗୋଟିଏ ଦୁର୍ଗୁଣ ହେଉଛି ପଛରୁ କଛା ଟାଣିବା ଓ ଭଲ ଲୋକଙ୍କୁ ତାଙ୍କ କାର୍ଯ୍ୟ ନ କରାଇ ଦେବା। ସେହି ନ୍ୟାୟରେ ଡ଼କ୍ଟର ହରେକୃଷ୍ଣ ମହତାବ, ନୀଳମଣି ରାଉତରାୟ ଓ ଅନ୍ୟ ପ୍ରମୁଖ ମାନଙ୍କର ଷଡ଼ଯନ୍ତ୍ରରେ ଶିକାର ଏବଂ ଅତିଷ୍ଠ ହୋଇ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦ ତ୍ୟାଗ କରି ତାଙ୍କ ହାତ ଗଢ଼ା ଅନୁଷ୍ଠାନ ନବଜୀବନ ମଣ୍ଡଳ ଅନଗୁଳକୁ ଚାଲିଗଲେ।

ଗୁଣ ଚିହ୍ନେ ଗୁଣିଆ ଓ ସୁନା ଚିହ୍ନେ ବଣିଆ ନ୍ୟାୟରେ ନବବାବୁ ଜୟୀବାବୁଙ୍କୁ ଜଣେ ଦକ୍ଷ କର୍ମୀ ଭାବେ ଜାଣିଥିଲେ। ତେଣୁ ମାଳତୀ ଦେବୀ, ନବବାବୁଙ୍କ ପ୍ରେରଣାରେ ସେ ନବଜୀବନ ମଣ୍ଡଳରେ ସାଧାରଣ ସଂପାଦକ ଭାବେ ଯୋଗଦେଇ କାର୍ଯ୍ୟ ତୁଲାଇଲେ। ମାଳତୀ ଦେବୀ ଓ ନବବାବୁଙ୍କର ଅତି ଆପଣାର ମଣିଷ ଥିଲେ ଜୟୀବାବୁ। ଏହାପରେ ସେ ନବଜୀବନ ମଣ୍ଡଳର ସଭାପତି ହୋଇ ବହୁ ଉନ୍ନତି ମୂଳକ କାର୍ଯ୍ୟ କରିଥିଲେ। ଅନୁଷ୍ଠାନରେ ଥିବା

ସମୟରେ ଆଚାର୍ଯ୍ୟ ବିନୋବାଙ୍କ ଭୂଦାନଯଜ୍ଞ ଆନ୍ଦୋଳନ ସାରାଦେଶରେ ପ୍ରକମ୍ପିତ ହେଲା । ଓଡ଼ିଶାର ଦାୟିତ୍ୱ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ ଓ ମାଳତୀ ଦେବୀ, ମନମୋହନ ଚୌଧୁରୀ, ଅର୍ଣ୍ଣପୂର୍ଣ୍ଣା ମହାରଣା ଓ ଶରତ ଚନ୍ଦ୍ର ମହାରଣା ପ୍ରମୁଖ ନେତୃସ୍ଥାନୀୟ ବ୍ୟକ୍ତିମାନେ ନେଲେ ।

ଏ ଆନ୍ଦୋଳନକୁ ନବଜୀବନ ମଣ୍ଡଳ, ଉତ୍କଳ ସର୍ବୋଦୟ ମଣ୍ଡଳ, ଖଦୀ ମଣ୍ଡଳ, କସ୍ତୁରବା ଗାନ୍ଧି ମେମୋରିଆଲ୍ ଟ୍ରଷ୍ଟ, ସତ୍ୟଭାମାପୁର ଆଶ୍ରମ ଓ ଭାଇଚାରା ଅନୁଷ୍ଠାନ ମାନେ ଭାଗ ନେଇ କାମ କଲେ ।

ନବଜୀବନ ମଣ୍ଡଳ ତରଫରୁ ପୁରୋଭାଗରେ କର୍ମୀବାବୁ ରହି ଭୂଦାନ, ଗ୍ରାମଦାନ, ଭୂମି ସଂଗ୍ରହ, ଏସବୁର ପୁନର୍ଗଠନ, ଗ୍ରାମସଭା ଗଠନ ଓ ଗ୍ରାମସଭା ପ୍ରତିଷ୍ଠା ଇତ୍ୟାଦି କାର୍ଯ୍ୟ କରାଇ ପାରିଥିଲେ ।

ପୁଣ୍ୟଶ୍ଳୋକ ନବବାବୁଙ୍କ ପରଲୋକ ପରେ ସେ ନବକୃଷ୍ଣ-ମାଳତୀ ଦେବୀ ଫାଉଣ୍ଡେସନ ଗଠନ କରି ବହୁକାର୍ଯ୍ୟ ତାଙ୍କ ପରଲୋକ ପର୍ଯ୍ୟନ୍ତ କରାଇ ପାରିଥିଲେ । ସେ ଫାଉଣ୍ଡେସନ୍‌ରେ ଦଶଲକ୍ଷରୁ ଅଧିକ ଟଙ୍କା ବ୍ୟାଙ୍କରେ ରଖାଇ ଯାଇଛନ୍ତି । ତହିଁର ସୁଧରୁ ନବଜୀବନ ମଣ୍ଡଳ କର୍ମୀମାନଙ୍କୁ ପାରିଶ୍ରମିକ ଦିଆଯାଇଛି । ସେ ଜଣେ ପାରିବାର, ବିଚକ୍ଷଣ ବ୍ୟକ୍ତି ଥିଲେ । ସେହି ଅନୁଷ୍ଠାନରେ ରହି ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି ଭାବେ ନିର୍ବାଚିତ ହୋଇ ଥିଲେ । ଏ ଲେଖକ ତାଙ୍କ ଅଧୀନରେ ସଂପାଦକ ଭାବେ କାର୍ଯ୍ୟ କରିଛନ୍ତି । ସେ ସଭାପତି ଥିବା ସମୟରେ ବହୁ ଜନ ହିତକର କାର୍ଯ୍ୟ କରି ଯାଇଛନ୍ତି । ଜଣେ ସ୍ନେହୀ, ବନ୍ଧୁ ବତ୍ସଳ, ସାହାଯ୍ୟକାରୀ ବ୍ୟକ୍ତି ଭାବେ ତାଙ୍କୁ ବହୁ ବ୍ୟକ୍ତି ଓ ଅନୁଷ୍ଠାନ ଜାଣନ୍ତି ।

ସେ ଜଣେ ବିଶିଷ୍ଟ ଗାନ୍ଧିବାଦୀ, ସର୍ବୋଦୟପ୍ରେମୀ, ମାନବବାଦୀ, ନିର୍ଭୀକ ନୀତିନିଷ୍ଠ, ଦୃଢ଼ମନା, ସଚ୍ଚୋଟ, ସ୍ପଷ୍ଟବାଦୀ ଓ ବିପ୍ଳବୀ ସ୍ୱାଧୀନତା ସଂଗ୍ରାମୀ ଥିଲେ ।

ଏପରି ଜଣେ ବିରଳ ବ୍ୟକ୍ତି ଆମ ରାଜ୍ୟରେ ମିଳିବା କଷ୍ଟକର । ତାଙ୍କର ଏହି ପୁଣ୍ୟତିଥି ଶ୍ରାଦ୍ଧବାସରେ ମୋର ବିନମ୍ର ପ୍ରଣାମ ।

ଜୟଜଗତ

ଉତ୍କଳ ସର୍ବୋଦୟ ମଣ୍ଡଳ
ଗୁଣନିଧି ଭବନ
ଯୋଗିଆ ସାହି, କଟକ - ୧

●●

# ଜୟ ହୁ ଜୟ କୃଷ୍ଣ

**ରବି ଦାସ**

ଡିସେମ୍ବର ୧୦ ତାରିଖ ୧୯୯୧ ମସିହା। ଭୋର ୬ଟା ପାଖାପାଖି ଆମ ଘର ପାଖରେ ଏକ କାର୍ ଲାଗିଲା। ହର୍ଣ୍ଣ ଶବ୍ଦ ଶୁଣି ମୁଁ ଖବର କାଗଜ ପଢ଼ା ବନ୍ଦକରି କାର୍ ପାଖକୁ ଯାଇ ଦେଖିଲି ଓଡ଼ିଶା ଖଦୀବୋର୍ଡ ଅଧ୍ୟକ୍ଷ ଶ୍ରୀ ପଦ୍ମଚରଣ ସାମନ୍ତସିଂହାର କାର୍‌ରେ ବସିଛନ୍ତି। ନମସ୍କାର ଜଣାଇ ପଚାରିଲି ଏତେ ଭୋର୍‌ରୁ କୁଆଡୁ ଆସିଲେ ? ପାରାଦୀପରୁ, ତପନ ପାଖରୁ ? ସେ କହିଲେ ଭୁବନେଶ୍ୱରରୁ ସିଧା ଆସି ପହଞ୍ଚିଲି। ଆରେ ! ତୁମକୁ କର୍ଯ୍ୟୀଭାଇ (ଜୟକୃଷ୍ଣ ମହାନ୍ତି) ଦୁଇ ଦିନ ହେଲା ବାରମ୍ବାର ଫୋନ୍ କରି ଓ ଖବର ପରେ ଖବର ଦେଇ ଯୋଗାଯୋଗ କରିବାରେ ବିଫଳ ହେବାରୁ ମୁଁ କର୍ଯ୍ୟୀଭାଇଙ୍କ ଦୂତ ହିସାବରେ ବାଧ୍ୟ ହୋଇ ଆସିଲି।

ଖଦୀ କମିଶନ ଅଧ୍ୟକ୍ଷ ଡ଼କ୍ଟର ଯଶ୍‌ବୀର ଭୁବନେଶ୍ୱରରେ ବସିଛନ୍ତି। ବିଜୁବାବୁଙ୍କ ସହ ତୁହାକୁ ତୁହା ଆଲୋଚନା ଚାଲିଛି। ଅନାହାରଗ୍ରସ୍ତ କଳାହାଣ୍ଡିରେ ସ୍ୱତନ୍ତ୍ର କର୍ମନିଯୁକ୍ତି କାର୍ଯ୍ୟକ୍ରମରେ କେନ୍ଦ୍ର ସରକାର କଳାହାଣ୍ଡିର ଦଶହଜାର ଗରିବ ସୀମା ରେଖା ତଳେ ଥିବା ଲୋକଙ୍କୁ କାମ ଯୋଗାଇ ଦେବେ ବୋଲି ସୁପ୍ରିମ କୋର୍ଟରେ ସତ୍ୟ ପାଠ କରିଛନ୍ତି।

ସାରା ସଂସାରରେ ଚହଳ ପଡ଼ିଛି କଳାହାଣ୍ଡିର ଉତ୍କଟ ଅନାହାର ସମସ୍ୟା। ମୁକାବିଲା କରିବା ପାଇଁ ଖଦୀ ଓ ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ ପ୍ରକୃଷ୍ଟ ପନ୍ଥା ହୋଇଥିବାରୁ କେନ୍ଦ୍ର ସରକାର ଖଦୀ କମିଶନକୁ କାର୍ଯ୍ୟକାରୀ ସଂସ୍ଥାରୂପେ ବାଛିଛନ୍ତି। ଏହି ପରିପ୍ରେକ୍ଷୀରେ ଓଡ଼ିଶା ଖଦୀବୋର୍ଡ ଓ ରାଜ୍ୟର ଖଦୀ ସଂସ୍ଥା ଗୁଡ଼ିକ କଳାହାଣ୍ଡି ସ୍ୱତନ୍ତ୍ର କର୍ମନିଯୁକ୍ତି କାର୍ଯ୍ୟକ୍ରମରେ ସକ୍ରୀୟ ହେବା ଅତି ଜରୁରୀ। ଓଡ଼ିଶାରେ ଖଦୀ କମିଶନ ପୂର୍ବରୁ କେବେହେଲେ ସ୍ୱତନ୍ତ୍ର କର୍ମନିଯୁକ୍ତି କାର୍ଯ୍ୟକ୍ରମ S.E.P. ଯୋଜନା କାର୍ଯ୍ୟକାରୀ କରିନାହିଁ। ସୁପ୍ରିମକୋର୍ଟ ଚାପରେ ଏବେ ବାହାରିଛନ୍ତି। ଆମ ସମସ୍ତଙ୍କର ବିଶେଷ କରି କର୍ଯ୍ୟୀଭାଇଙ୍କ ଇଚ୍ଛା ଯେ ଏହି ଯୋଜନାଟି କଳାହାଣ୍ଡିରେ ତୁରନ୍ତ କାର୍ଯ୍ୟକାରୀ ହେଉ। ସେଥିପାଇଁ ବିଜୁବାବୁ କର୍ଯ୍ୟୀଭାଇଙ୍କୁ ଓ ମୋତେ ଦାୟିତ୍ୱ ଦେଇଛନ୍ତି।

ସର୍ବୋଦୟ ରିଲିଫ୍ କମିଟି ଦୀର୍ଘ ୪ ବର୍ଷ ଧରି କଳାହାଣ୍ଡିରେ ରିଲିଫ୍ କାମ କରୁଛି। କିଶାନ ପଟ୍ଟନାୟକ କଳାହାଣ୍ଡିର ଅନାହାର ମୃତ୍ୟୁ ପ୍ରସଙ୍ଗକୁ ସୁପ୍ରିମକୋର୍ଟରେ ଆଗତ କରିଛନ୍ତି। ତୁମେ ଗାନ୍ଧିସ୍ମାରକ ନିଧି ପକ୍ଷରୁ ସରଜମିନ ତଦନ୍ତ କରି ସୁପ୍ରିମକୋର୍ଟକୁ ରିପୋର୍ଟ ଦେଇଥିଲ ବୋଲି ଶୁଣିଲି। ସୁପ୍ରିମକୋର୍ଟଙ୍କ ତାଗିଦ୍ ଅନୁସାରେ ଅନାହାର ମୃତ୍ୟୁକେଶ୍ ପ୍ରମାଣ ହୋଇ ଯାଇଥିବାରୁ ଭାରତ ସରକାରଙ୍କୁ ବାଧିଛି। କୋର୍ଟଙ୍କ ତାଗିଦ୍ ଅନୁସାରେ କଳାହାଣ୍ଡି ସ୍ୱତନ୍ତ୍ର କର୍ମନିଯୁକ୍ତି ଯୋଜନା ଭାରତ ସରକାର ପ୍ରସ୍ତୁତ କରିଛନ୍ତି। ଓଡ଼ିଶା ଖଦୀବୋର୍ଡରେ କର୍ଯ୍ୟୀଭାଇ ଓ ଅଲେଖଭାଇ ସଭ୍ୟ ଅଛନ୍ତି। ଏହି

କାମକୁ ହାତ ଛଡ଼ା କରିବା ଠିକ୍ ହେବନାହିଁ । ତୁମେ କଳାହାଣ୍ଡିରେ କାମ କରୁଛ ଓ ସେଠାର ଉତ୍କଟ ପରିସ୍ଥିତି ସବୁ ଜାଣିଛ । ତୁମ ଅପେକ୍ଷାରେ କର୍ପୂରୀଭାଇ, ଖଦୀ କମିଶନ ଅଧ୍ୟକ୍ଷ ଓ ମୁଖ୍ୟମନ୍ତ୍ରୀ ବିଜୁବାବୁ ସମସ୍ତେ । ଆଜି ୧୧ଟା ବେଳେ ରାଜ୍ୟ ସରକାର ଏକ ବୈଠକ ଭୁବନେଶ୍ୱରରେ ଡ଼ାକିଛନ୍ତି । ତୁମେ ଶୀଘ୍ର ବାହାର । ଆମେ ସକାଳ ୭ଟା ବେଳେ ଚାରପୁରରୁ ବାହାରି ସାଢ଼େ ୯ଟାରେ କର୍ପୂରୀଭାଇଙ୍କ ଘରେ ପହଞ୍ଚିଲୁ । କର୍ପୂରୀଭାଇ ବ୍ୟକ୍ତିଗତ ଭାବେ ଖଦୀ ଓ ଗ୍ରାମୋଦ୍ୟୋଗ କାମ ପାଇଁ ବିଶେଷ ଆଗ୍ରହୀ । ବରଂ କୁହାଯାଇପାରେ ଯେ ଉତ୍ସର୍ଗୀକୃତ । କର୍ପୂରୀଭାଇ ସରକାରଙ୍କ ଅନୁଦାନ ବିନା କଳାହାଣ୍ଡିର ଉତ୍କଟ ଭୋକ ଓ ଦାରିଦ୍ର ସମସ୍ୟାକୁ ସର୍ବୋଦୟ ରିଲିଫ କମିଟି କିପରି ମୁକାବିଲା କରିବ ସେ ନେଇ ସନ୍ଦିହାନ ଥିଲେ । ରିଲିଫ୍ କମିଟି ଖଦୀ ଓ ଗ୍ରାମଦ୍ୟୋଗ କାମକୁ ହାତକୁ ନେବାପାଇଁ କର୍ପୂରୀଭାଇ ପ୍ରସ୍ତାବ ଦେଲେ । ସେ ପୁଣି କହିଲେ ଓଡ଼ିଶାର ଖଦୀ ସଂସ୍ଥାମାନେ ଦୁର୍ବଳ ଏବଂ ସେମାନେ କଳାହାଣ୍ଡି ସ୍ୱତନ୍ତ୍ର କର୍ମ ନିଯୁକ୍ତି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଆଗ୍ରହୀ ନୁହନ୍ତି । ନିର୍ଦ୍ଦିଷ୍ଟ ସମାଧାନର ବାଟ ବାହାର କରିବା ପାଇଁ କର୍ପୂରୀଭାଇ ଖୁବ୍ ଚିନ୍ତିତ ହୋଇ ପଡ଼ିଲେ ।

କର୍ପୂରୀଭାଇ ଓ ପଦ୍ମଚରଣ ସାମନ୍ତସିଂହାରଙ୍କ ସହିତ ମୁଁ ରାଜ୍ୟ ସଚିବାଳୟଠାରେ ଏକ ବୈଠକରେ ତତ୍କାଳୀନ ଖଦୀ କମିଶନ ଅଧ୍ୟକ୍ଷ ଯଶ୍‌ବୀର ସିଂ ଓ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ଭେଟିଲୁ । ଖଦୀ କମିଶନ ଅଧ୍ୟକ୍ଷ ବୈଠକରେ କଳାହାଣ୍ଡି ଅନାହାର ମୃତ୍ୟୁ ପ୍ରସଙ୍ଗରେ ସୁପ୍ରିମକୋର୍ଟ ଓ ଭାରତ ସରକାରଙ୍କ ଉଦ୍‌ବେଗ ବିଷୟ ପ୍ରକାଶ କଲେ । ମୁଖ୍ୟମନ୍ତ୍ରୀ ବିଜୁବାବୁ କହିଲେ ଯେ ପ୍ରଧାନମନ୍ତ୍ରୀ ପି.ଭି. ନରସିଂହ ରାଓ ତାଙ୍କ ସହିତ ଆଲୋଚନା କରିଛନ୍ତି ଏବଂ ଏହି ଯୋଜନାଟି କଳାହାଣ୍ଡିରେ ତୁରନ୍ତ ଆରମ୍ଭ କରିବାକୁ ପରାମର୍ଶ ଦେଇଛନ୍ତି । ଏଥିପାଇଁ ପାଣ୍ଠିର କୌଣସି ଅଭାବ ପଡ଼ିବ ନାହିଁ । ବିଜୁବାବୁ ଆହୁରି ମଧ୍ୟ ପ୍ରକାଶ କଲେ ଯେ ସିଏ କର୍ପୂରୀବାବୁଙ୍କ ସହ ଆଲୋଚନା କରି ଜାଣିବାକୁ ପାଇଛନ୍ତି ଯେ ଓଡ଼ିଶା ଖଦୀବୋର୍ଡର କଳାହାଣ୍ଡି ପାଇଁ ଉଦ୍ଦିଷ୍ଟ ୬୨ ଲକ୍ଷ ଟଙ୍କାର ଅନୁଦାନ ରାଶି ଦୀର୍ଘ ୪ ବର୍ଷ ହେଲା ଖର୍ଚ୍ଚ ନ ହୋଇ ପଡ଼ି ରହିଛି । ତେଣୁ ଏହି ଟଙ୍କାରେ ତୁରନ୍ତ ଏ କାମ ଆରମ୍ଭ କରିବାକୁ ବିଜୁବାବୁ ପରାମର୍ଶ ଦେଲେ । ପରବର୍ତ୍ତୀ ଅବସ୍ଥାରେ କେନ୍ଦ୍ର ଅନୁଦାନ ମିଳିଯିବ ।

ଏ ନେଇ ଭବାନୀପାଟଣାଠାରେ ଏକ ଜରୁରୀ ବୈଠକରେ ଯୋଗ ଦେବାକୁ ତତ୍କାଳୀନ ରାଜସ୍ୱମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ, ଶ୍ରୀ ଜୟକୃଷ୍ଣ ମହାନ୍ତି, ଶ୍ରୀ ପଦ୍ମ ଚରଣ ସାମନ୍ତସିଂହାର, ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଓ ଓଡ଼ିଶା ସରକାରଙ୍କର ଉଚ୍ଚପଦସ୍ଥ ଅଫିସରମାନେ ଏବଂ କଳାହାଣ୍ଡିର ଜିଲ୍ଲାପାଳ ଶ୍ରୀ ଅଶୋକ ଦଲୱାଇ ପ୍ରମୁଖ ଏକାଠି ମିଳିତ ହେଲେ । ଏହି ପରିପ୍ରେକ୍ଷୀରେ କଳାହାଣ୍ଡିରେ ଏକ ନୂତନ ଖଦୀ ସଂସ୍ଥା ଗଠନ କରିବାକୁ ଜୟକୃଷ୍ଣ ମହାନ୍ତି ପ୍ରସ୍ତାବ ଦେଲେ ଏବଂ ଏହା ସର୍ବସମ୍ମତି କ୍ରମେ ଗୃହୀତ ହେଲା । ଏହି ଯୋଜନା ପାଇଁ କେନ୍ଦ୍ର ସରକାର ଖଦୀ କମିଶନ ଜରିଆରେ ତୁରନ୍ତ ୫୦ କୋଟି ଟଙ୍କା ଅନୁଦାନ ଯୋଗାଇ ଦେବାର ଘୋଷଣା କଲେ । କଳାହାଣ୍ଡିର ଦୁର୍ଗତ ଅଞ୍ଚଳରେ କାମ କରୁଥିବା ରିଲିଫ୍ କମିଟି ମାନଙ୍କରୁ ସକ୍ରୀୟ ସହଯୋଗୀ ସହକର୍ମୀ ଓ ନେତୃସ୍ଥାନୀୟ ବ୍ୟକ୍ତି ବିଶେଷଙ୍କୁ ନେଇ ପୁନର୍ବାର ଜିଲ୍ଲାପାଳଙ୍କ ସମ୍ମିଳନୀ କକ୍ଷରେ ଏକ ବୈଠକ ଅନୁଷ୍ଠିତ ହେଲା । ସେଥିରେ ଶ୍ରୀ ଜୟକୃଷ୍ଣ

ମହାନ୍ତି ପ୍ରସ୍ତାବ ରଖିଲେ ଯେ ଓଡ଼ିଶାର ଅନ୍ୟ କିଲ୍ଲାମାନଙ୍କରେ କାମ କରୁଥିବା ଖଦୀ ସଂସ୍ଥାମାନେ କଳାହାଣ୍ଡି ସ୍ୱତନ୍ତ୍ର କର୍ମ ନିଯୁକ୍ତି ଯୋଜନା ପ୍ରତି ଆଗ୍ରହ ପ୍ରକାଶ କରୁ ନ ଥିବାରୁ ଏହି ଯୋଜନା କାର୍ଯ୍ୟକାରୀ କରିବାପାଇଁ "କଳାହାଣ୍ଡି ବିକାଶ ପରିଷଦ" ଗଠନ କରାଯାଉ। ଏହାକୁ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ପ୍ରମୁଖ ସମର୍ଥନ କଲେ ଏବଂ ଏହା ସର୍ବ ସମ୍ମତ କ୍ରମେ ଗୃହୀତ ହେଲା। ଏଥିପାଇଁ ଏକ କାର୍ଯ୍ୟକାରୀ କମିଟି ଗଠନ କରାଗଲା। ୨ ଦିନ ମଧ୍ୟରେ ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କ ବ୍ୟକ୍ତିଗତ ଅକ୍ଳାନ୍ତ ଉଦ୍ୟମରେ ଏ ସଂସ୍ଥାର ବାଇ ଲ' ପ୍ରସ୍ତୁତ ହୋଇ ପାରିଲା। ଡ଼ିସେମ୍ବର ୩୦ ତାରିଖ ୧୯୯୧ ମସିହାରେ ଏହି ସଂସ୍ଥା ଜୟଭାଇଙ୍କ ବିଚକ୍ଷଣ ବୁଦ୍ଧି ଓ ଉଦ୍ୟମ ଦ୍ୱାରା ଏକ ରେଜେଷ୍ଟ୍ରୀଭୁକ୍ତ ଅନୁଷ୍ଠାନରେ ପରିଣତ ହୋଇ ପାରିଲା। ଏହାର ମୁଖ୍ୟ ଅଫିସ ଅବିଭକ୍ତ କଳାହାଣ୍ଡି ଜିଲ୍ଲାର ସୁନବାହାଲି ଗ୍ରାମରେ ଖୋଲିଲା। ନୂତନ ଉତ୍ସାହ ଓ ଉଦ୍ଦୀପନ ସହ କଳାହାଣ୍ଡି ବିକାଶ ପରିଷଦ ସ୍ୱତନ୍ତ୍ର କର୍ମ ନିଯୁକ୍ତି କାର୍ଯ୍ୟକ୍ରମକୁ କିପରି ସଫଳ କରାଯାଇ ପାରିବ ସେ ଦିଗରେ ଅଣ୍ଟାଭିଡ଼ି କାମ ଆରମ୍ଭ କରିଦେଲା।

ଏହାର ଠିକ୍ ୨ ମାସ ପରେ ଫେବୃୟାରୀ ୧୯୯୨ ମସିହାରେ ଭବାନୀପାଟଣା ଠାରେ ଖଦୀ କମିଶନ କଳାହାଣ୍ଡି ସ୍ୱତନ୍ତ୍ର କର୍ମ ନିଯୁକ୍ତ କାର୍ଯ୍ୟକ୍ରମ ପ୍ରୋଜେକ୍ଟ ଅଫିସ୍ ଖୋଲିଲେ କିଲ୍ଲାପାଳଙ୍କ କକ୍ଷରେ ବାରମ୍ବାର ବୈଠକ ହେଉଥାଏ। ମାତ୍ର କ୍ରମଶଃ କଳାହାଣ୍ଡିର ଦଶ ହଜାର ଦୁର୍ଦ୍ଦଶାଗ୍ରସ୍ତ ଗରିବ ସୀମାରେଖା ତଳେ ଥିବା, ଅର୍ଦ୍ଧାହାରୀ ଲୋକଙ୍କ ହାତକୁ କାମ ଦେବା ଲକ୍ଷ୍ୟ ଗୌଣ ହୋଇଗଲା। ଅମଲାତନ୍ତ୍ର ତା'ର ସାଧ୍ୟମତେ ଉପରୋକ୍ତ କାର୍ଯ୍ୟକ୍ରମକୁ ସମ୍ପୂର୍ଣ୍ଣ ରୂପେ ଭଣ୍ଡୁର କରିବା ପାଇଁ ଗୋଟିକ ପରେ ଗୋଟିଏ ଅଭିସନ୍ଧି ମୂଳକ ପ୍ରତିବନ୍ଧକ ସୃଷ୍ଟି କରି ଚାଲିଲେ। ଖଦୀ କମିଶନ ପରିଷଦକୁ ଗୋଟିଏ ଟଙ୍କା ମଧ୍ୟ ସେମାନଙ୍କ ଗୃହୀତ ବଜେଟ୍ ଓ ସାଙ୍କସନ୍ ହୋଇଥିବା ଅର୍ଡର ବାବାଦକୁ ଦେଲେ ନାହିଁ। କଳାହାଣ୍ଡି ସ୍ୱତନ୍ତ୍ର କର୍ମ ନିଯୁକ୍ତି କାର୍ଯ୍ୟକ୍ରମ ଘୋଷଣା ହେବାର ୨ ବର୍ଷ ଯାଏ କୁହାଗଲା ଏହା କେନ୍ଦ୍ର ସରକାରଙ୍କ କାର୍ଯ୍ୟକ୍ରମ। କେନ୍ଦ୍ରରୁ ଅନୁଦାନ ନ ଆସିବା ଯାଏ ଏହି କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେବା କଠିନ।

ଶେଷରେ ଆମେମାନେ ସମ୍ପୂର୍ଣ୍ଣ ନିରାଶ ହୋଇ ତତ୍କାଳୀନ ଖଦୀ କମିଶନ ଅଧ୍ୟକ୍ଷ ଶ୍ରୀ ନୱଲ୍ କିଶୋର ଶର୍ମାଙ୍କ ଦୃଷ୍ଟି ଆକର୍ଷଣ କରିବାରୁ ସେ ତତ୍କାଳୀନ ଅର୍ଥମନ୍ତ୍ରୀ ଶ୍ରୀ ମନମୋହନ ସିଂହଙ୍କ ସହିତ ଯୋଗାଯୋଗ କରି ଖଦୀ କମିଶନକୁ ୧୯୯୪ ମସିହାରେ ସମଗ୍ର ୫୦ କୋଟି ଟଙ୍କାର ଅନୁଦାନ ଆଣିପାରିଲେ। ଏହାପରେ ଖଦୀ କମିଶନ ବିଚାରିଲେ ଯେ ସଂପୃକ୍ତ ଯୋଜନା ହେଉଛି ଖଦୀ କମିଶନର। କେନ୍ଦ୍ର ଯୋଜନାକୁ ମାର୍ ଗୁଲି। ଏହାପରେ କେନ୍ଦ୍ରରେ ସରକାର ମଧ୍ୟ ବଦଳିଗଲା। କଂଗ୍ରେସରୁ ଅଣକଂଗ୍ରେସ ସରକାର ହେଲା। ପ୍ରଧାନମନ୍ତ୍ରୀ ବଦଳିବା ମାତ୍ରେ ଖଦୀ କମିଶନ ଅଧ୍ୟକ୍ଷ ମଧ୍ୟ ବଦଳିଲେ। ମାତ୍ର ତତ୍କାଳୀନ ଖଦୀ କମିଶନ ଉଦ୍ଦେଶ୍ୟମୂଳକ ଭାବେ କଳାହାଣ୍ଡି ସ୍ୱତନ୍ତ୍ର କର୍ମ ନିଯୁକ୍ତି କାର୍ଯ୍ୟକ୍ରମ (S.E.P.) ପରିବର୍ତ୍ତିତ ଶାସନ କାଳରେ ମଞ୍ଜୁର କରି ଦେଲେ ଏବଂ ଏହି ଯୋଜନାର ସମୟ ସୀମା ପାଞ୍ଚବର୍ଷ ଆଳ ଦେଖାଇ ଅଟଳ ବିହାରୀ ବାଜପେୟୀଙ୍କ ଏନ୍.ଡ଼ି.ଏ. ସରକାର ଦ୍ୱାରା ନିଯୁକ୍ତ ଖଦୀ କମିଶନର ୧୯୯୯ ମସିହା ମାର୍ଚ୍ଚ ମାସ ଶେଷରେ ଏହି ଯୋଜନାକୁ ସମ୍ପୂର୍ଣ୍ଣ ବନ୍ଦ କରିଦେଲେ। ଉପରୋକ୍ତ କାର୍ଯ୍ୟକ୍ରମ

ପାଇଁ ମିଳିଥିବା ୫୦ କୋଟି ଟଙ୍କାର ଅନୁଦାନରୁ ମାତ୍ର ୬୨ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ଅବଶିଷ୍ଟ ଅନୁଦାନକୁ ଅନ୍ୟତ୍ର ଖର୍ଚ୍ଚ କରାଗଲା । ଅନ୍ୟ ଅର୍ଥରେ ଏକ ପ୍ରକାର ହଡ଼ପ୍ କରାଗଲା । ଏହାର ହିସାବ କି କୈଫିୟତ୍ ଜନସାଧାରଣଙ୍କୁ ଏ ଯାଏଁ ଜଣାନାହିଁ । କଳାହାଣ୍ଡି ବିକାଶ ପରିଷଦ ଓ ଜିଲ୍ଲାର ଶହ ଶହ ସୂତାକଟାଳୀ ଓ ବୁଣାକାର ମାନେ ଏ ପର୍ଯ୍ୟନ୍ତ ସେମାନଙ୍କ ହକ୍ ପାଇ ପାରିନାହାନ୍ତି । ସବୁଠାରୁ ଉଦ୍‌ବେଗର ବିଷୟ ୬୦୦ ସୂତାକଟାଳୀଙ୍କର ୮ ଟାକୁଡ଼ିଆ ନୂଆ ମଡ଼େଲ ଚରଖାପାଇଁ ବ୍ୟାଙ୍କରୁ ସେମାନେ ଋଣ କରିଥିବା ଅଗ୍ରୀମ ୧୨ ଲକ୍ଷ ଟଙ୍କାର ରସିଦ ସେମାନେ କମିଶନଙ୍କୁ ଦେଇଥିଲେ ମଧ୍ୟ ସେ ଟଙ୍କା ଏ ଯାଏଁ ପାରି ପାରିନାହାନ୍ତି । ରାଜ୍ୟର ଦଶହଜାର ପରିବାର କଥା ଛାଡ଼ନ୍ତୁ ଏହି ଛ' ଶହ ପରିବାର ମଧ୍ୟ ଦାରିଦ୍ର ଦୂରୀକରଣ ଯୋଜନାର ଶରବ୍ୟ ହୋଇ ଅଧିକ ଦାରିଦ୍ର୍ୟର କଷାଘାତରେ ସଢ଼ୁଛନ୍ତି ।

ସୁପ୍ରିମ୍‌କୋର୍ଟରେ ସତ୍ୟପାଠ, ସଂସଦରେ ବିବୃତି, ଲାଲକିଲ୍ଲାରେ ସ୍ୱାଧୀନତା ଦିବସ ଦିନ ପ୍ରଧାନମନ୍ତ୍ରୀଙ୍କ ବଜ୍ରନିର୍ଘୋଷ ଘୋଷଣା ଏ ସମସ୍ତ ଧପାବାଜୀରେ ପରିଣତ ହୋଇଯାଇଛି । କଳାହାଣ୍ଡିର ଦୁର୍ଗତି ସୁଧିରିବା ତ ଦୂର କଥା ବଢ଼ି ବଢ଼ି ଚାଲିଛି । ବିକାଶ ପରିଷଦ ମାଧ୍ୟମରେ କଳାହାଣ୍ଡିର ବିକାଶ ସ୍ୱପ୍ନ ଦେଖିଥିବା ଜୟକୃଷ୍ଣ ବାବୁଙ୍କ ସେଦିନର ସ୍ୱପ୍ନ ସିନା ଫଳପ୍ରସୂ ହୋଇ ପାରିଲା ନାହିଁ ହେଲେ ଏ ଜିଲ୍ଲାର ହଜାର ହଜାର ଗରିବ ଆଦିବାସୀଙ୍କ ଉନ୍ନତି ପାଇଁ ଆଜୀବନ ଭାବୁଥିବା ସେଇ ଲୋକଟିର ଅବର୍ତ୍ତମାନରେ ତାଙ୍କ ଗଠିତ ଏଇ ବିକାଶ ପରିଷଦ ଆଗାମୀ ଦିନରେ ନିଶ୍ଚୟ ଆତ୍ମନିର୍ଭରଶୀଳ ଏବଂ ସୁଦୃଢ଼ ହେବ । ଆଉ ଏହାହିଁ ହେବ ତାଙ୍କ ପ୍ରତି ଆମର ଯଥାର୍ଥ ଶ୍ରଦ୍ଧାଞ୍ଜଳି ।

**କଳାହାଣ୍ଡି ବିକାଶ ପରିଷଦ ।**

●●

**ମାନବ ସଭ୍ୟତା ଓ ବିଜ୍ଞାନ କେବଳ ଅହିଂସାର ବାତାବରଣରେ ହିଁ ତିଷ୍ଠି ପାରିବ ।**

**- ଆଚାର୍ଯ୍ୟ ବିନୋବା**

# ଅତୀତ ସ୍ମୃତିର ଖିଏ

**ଜୟକୃଷ୍ଣ ମହାନ୍ତି**
**ପୂର୍ବତନ ବିଧାୟକ**

୧୯୧୮ ମସିହାରେ ମୋର ଜନ୍ମ ନିମାପଡ଼ା ଥାନାର ଧନୁଆ ନଈକୂଳ ଗଡ଼ତୋରିହଁ ଗ୍ରାମରେ ଆମ ଅଞ୍ଚଳଟି ଭାର୍ଗବୀ ଓ କୁଶଭଦ୍ରା ନଦୀର ମଧ୍ୟବର୍ତ୍ତୀ ଏକ ନିପଟ ଧୋଇଆ ଅଞ୍ଚଳରେ, କୁଶଭଦ୍ରା ନଈର ଡ଼ାହାଣ ପାଖ ବଇଁଚୁଆ ଏବଂ ଭାର୍ଗବୀ ନଦୀର ବାମପାର୍ଶ୍ୱରେ ଥିବା ଅଚ୍ୟୁତପୁର କାକର ପାଣି ମିଶି ଧନୁଆ ନଦୀର ସୃଷ୍ଟି। ବାଲିପାଟଣା, ନିମାପଡ଼ା ଓ ଗୋପଥାନାର କିଛି ଅଞ୍ଚଳରେ ପ୍ରବାହିତ ହେବାପରେ "ଗୋପ ଥାନାର ଷୋଳପୁର ଠାରେ ପୁନର୍ବାର କୁଶଭଦ୍ରାରେ ମିଶିଯାଇଛି। ମିଶ୍ରଣ ସ୍ଥାନରେ କୁଶଭଦ୍ରାର ଜଳପତନ ଉଚ୍ଚ ଥିବାରୁ ଧନୁଆ ପାଣି ଉପକୂଳବର୍ତ୍ତୀ ଖାଲୁଆ ଅଞ୍ଚଳକୁ ବହୁଦିନ ଧରି ଜଳପ୍ଲାବିତ କରିଥାଏ। ୧୯୧୯ ଓ ୧୯୨୦ ଦୁଇବର୍ଷ ଧରି ପ୍ରବଳ ବନ୍ୟା ଓ ତା' ପଛେ ପଛେ ମରୁଡ଼ି ହେତୁ ଏ ଅଞ୍ଚଳରେ ଦୁର୍ଭିକ୍ଷ ପରିସ୍ଥିତି ସୃଷ୍ଟି ହୋଇଥାଏ। ଖାଇବାକୁ ନପାଇ ଲୋକେ ପୋକମାଛି ପରି ମରୁଥାନ୍ତି। ନିଜର ପ୍ରାଣ ବଞ୍ଚାଇବା ପାଇଁ ବାପମାଆ ପିଲାକୁ ଛାଡ଼ି ଅନ୍ୟ ସ୍ଥାନରେ ଭିକ୍ଷା ମାଗି ବୁଲୁଥାନ୍ତି। ଗୋପଥାନା ଡ଼ଭାର ଅଞ୍ଚଳରେ ଦୁର୍ଭିକ୍ଷର ଦୃଶ୍ୟ ସର୍ବାଧିକ ହୋଇଥିବା ଯୋଗୁ ଏହି ଦୁର୍ଭିକ୍ଷକୁ 'ଡ଼ଭାର ଦୁର୍ଭିକ୍ଷ' ଆଖ୍ୟା ଦିଆଯାଇଥିଲା। ୧୮୬୬ ମସିହାରୁ ଲୋମହର୍ଷଣକାରୀ ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାର ଅନ୍ୟ କୌଣସିଠାରେ ଏଭଳି ଭୟାବହ ପରିସ୍ଥିତି ସୃଷ୍ଟି ହୋଇନାହିଁ। ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ ମହାତ୍ମାଗାନ୍ଧି ରଚନାବଳିର ୧୬ଶ ସଂଖ୍ୟା ୩୯୭-୩୯୮ ପୃଷ୍ଠା ମାନଙ୍କରେ ଏ ସଂପର୍କରେ ବିସ୍ତୃତ ବିବରଣୀ ଦିଆଯାଇଛି। ଏଥିରୁ ଜଣାଯାଏ ଯେ ଏହି ଡ଼ଭାର ଗାଁରୁ ଖାଦ୍ୟ ଅଭାବରୁ ୫୮ ଲୋକ ପ୍ରାଣ ହରାଇଥିଲେ। ଏ ଗାଁର ଲୋକସଂଖ୍ୟା ଥିଲା ୪୧୧। ୧୧ଜଣ ଯାକ ଶିଶୁ ଖାଇବାକୁ ନପାଇ ଶୁଖି ଶୁଖି ମରିଯାଇଥିଲେ।

ଯେତେବେଳକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇନଥାଏ। ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ଡ଼ିଭିଜନ ବିହାର ଓଡ଼ିଶା ପ୍ରଦେଶରେ ଅଂଗୀଭୂତ ଥାଏ। ଗୋପବନ୍ଧୁ ଦାଶ ଥାନ୍ତି ବିହାର ଓଡ଼ିଶା କାଉନ୍‌ସିଲର ସଦ୍ୟ ସଦସ୍ୟ। ଦୁର୍ଭିକ୍ଷ ଅଞ୍ଚଳର କରୁଣ ଦୃଶ୍ୟ ତାଙ୍କୁ ବ୍ୟଥିତ କରିଥାଏ। ଏହି ଅଞ୍ଚଳର ଲୋକେ ଖାଉଥିବା ମୁଠିଶାଗକୁ କାଉନ୍‌ସିଲ୍‌ରେ ଦେଖାଇ କୋହ ସମ୍ଭାଳି ନ ପାରି କାନ୍ଦି ପକାଇଥିଲେ ଏବଂ ଏହି ଅଞ୍ଚଳକୁ ଦୁର୍ଭିକ୍ଷ ଅଞ୍ଚଳ ବୋଲି ଘୋଷଣା କରି ସବୁ ପ୍ରକାର ସାହାଯ୍ୟ ଦେବାପାଇଁ ସରକାରଙ୍କ ଠାରେ ଦାବି କରିଥିଲେ। ତାଙ୍କ ଦୃଢ଼ ଯୁକ୍ତିରେ ପ୍ରଭାବିତ ହୋଇ ବିହାର ଓଡିଶାର ତତ୍‌କାଳୀନ ଲାଟ ଏଡ୍‌ୱାର୍ଡ ଗେଟ, ୧୯୨୦ ଏପ୍ରିଲ ୬ ତାରିଖ ଦିନ ଦୁର୍ଭିକ୍ଷ ଅଞ୍ଚଳ ପରିଦର୍ଶନ କରିବାକୁ ଆସିଥିଲେ ଏବଂ ପରିସ୍ଥିତି ସଂଭାଳିବା ପାଇଁ ଯାହା କରିବା କଥା ସରକାର ତାହା କରି ନାହାନ୍ତି ବୋଲି ସ୍ୱୀକାର

କରିଥିଲେ। ମାତ୍ର ଏହାକୁ ଦୁର୍ଭିକ୍ଷ ଅଞ୍ଚଳ ବୋଲି ଘୋଷଣା ନକରି କେବଳ କେତେ ଖଣ୍ଡି ଗାଁରେ କିଛି ଚାଉଳ ରିଲିଫ୍ ଆକାରରେ ବାଣ୍ଟି ଦେଇ କର୍ତ୍ତବ୍ୟ ଶେଷ କରିଥିଲେ। ଏଥିରେ ଗୋପବନ୍ଧୁ ଏହି ହୃଦୟହୀନ ବିଦେଶୀ ସରକାର ଉପରୁ ସମସ୍ତ ଆସ୍ଥା ହରାଇଥିଲେ।

ଏହି ସମୟରେ ସମଗ୍ର ଭାରତରେ ଗାନ୍ଧିଜୀଙ୍କ ଖ୍ୟାତି ଗୁଞ୍ଜରି ଉଠୁଥାଏ। ବିହାରର ଚମ୍ପାରନ ଜିଲ୍ଲାରେ ନୀଳଚାଷୀମାନଙ୍କ ଉପରେ ମାଲିକ ମାନେ କରୁଥିବା ଅତ୍ୟାଚାର ବିରୋଧରେ ସତ୍ୟାଗ୍ରହ ସଂଗଠିତ କରି ଜୟଯୁକ୍ତ ହୋଇଥିବା କାରଣରୁ ଚାରିଆଡ଼େ ତାଙ୍କର ଖ୍ୟାତି ବ୍ୟାପି ଯାଇଥାଏ। ଡ଼ଭାର ସମସ୍ୟା ତାଙ୍କ କାନରେ ପକାଇଲେ ସେ ଏହାର କିଛି ପ୍ରତିକାର କରିପାରନ୍ତି। ଏଇ ଆଶାରେ ଗୋପବଂଧୁ ଦୁର୍ଭିକ୍ଷର ସମସ୍ତ ବିବରଣୀ ବିଷୟରେ ଗାନ୍ଧିଜୀଙ୍କୁ ଏକ ପତ୍ର ଲେଖିଥିଲେ। ତା' ପରବର୍ତ୍ତୀ ସମୟରେ ଗାନ୍ଧିଜୀ ଯେ ଓଡ଼ିଶା ପ୍ରତି ଏତେ ମାତ୍ରାରେ ଆକୃଷ୍ଟ ହୋଇପଡ଼ିଲେ- ଏହି ପତ୍ର ହିଁ ତା'ର ସୂତ୍ରପାତ କରିଥିଲା।

ଡ଼ଭାର ଦୁର୍ଭିକ୍ଷର କରୁଣ କାହାଣୀ ଗାନ୍ଧିଜୀଙ୍କ ଅନ୍ତରରେ ଗଭୀର ଉଦ୍‌ବେଳନ ସୃଷ୍ଟି କରିଥିଲା। ସେ ମୁହୂର୍ତ୍ତେମାତ୍ର ନଷ୍ଟ ନକରି ତାଙ୍କର ଜଣେ ଘନିଷ୍ଠ ସହଯୋଗୀ ଶ୍ରୀ ଅମୃତଲାଲ ଠକ୍କରଙ୍କୁ ଅବସ୍ଥା ଅନୁଧ୍ୟାନ କରି ଆବଶ୍ୟକ ବ୍ୟବସ୍ଥା କରିବା ପାଇଁ ପୁରୀ ଜିଲ୍ଲାର ଦୁର୍ଭିକ୍ଷ ଅଞ୍ଚଳକୁ ପଠାଇ ଦେଲେ। ଠକ୍କର ବାପା ଗାଁକୁ ଗାଁ ବୁଲି ଖୁଣ୍ଟିନାଣ୍ଟି ବିବରଣୀ ଗାନ୍ଧିଜୀଙ୍କୁ ପଠାଉଥାନ୍ତି ଏବଂ ଗାନ୍ଧିଜୀ ଏହି ବିବରଣୀ ମାନ ତାଙ୍କର "ନବଜୀବନ" ପତ୍ରିକା ମାନଙ୍କରେ ବିସ୍ତାରିତ ଭାବେ ପ୍ରକାଶ କରି ସାରା ଭାରତର ଦୃଷ୍ଟି ଓଡ଼ିଶା ପ୍ରତି ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ ଦୁର୍ଭିକ୍ଷ ସାହାଯ୍ୟ ପାଇଁ ପାଣ୍ଠି ସଂଗ୍ରହ କରି ଠକ୍କର ବାପାଙ୍କ ନିକଟକୁ ପଠାଉଥାନ୍ତି। ଏଇଭାବେ ବିପୁଳ ସାମ୍ରାଜ୍ୟର ଅଧିପତି ଇଂରେଜ ସରକାର ଯାହା କରି ପାରିନଥିଲେ ଜନଗଣଙ୍କ ହୃଦୟର ସମ୍ରାଟ ମହାତ୍ମାଗାନ୍ଧି ସେହି କାର୍ଯ୍ୟକୁ ଅନାୟାସରେ କରି ଦେଇଥିଲେ। ଏହି ଘଟଣାରେ ଗାନ୍ଧିଜୀଙ୍କର ସ୍ନେହ ଡ଼ୋରିରେ ଜନତା ଏପରି ବାନ୍ଧିହୋଇ ଯାଇଥିଲେ ଯେ ୧୯୨୧ ମାର୍ଚ୍ଚ ୨୬ ତାରିଖ ଦିନ ଗାନ୍ଧିଜୀଙ୍କର ପୁରୀ ଆଗମନ ବେଳେ ବିଶାଳ ଜନସମୁଦ୍ର ତାଙ୍କୁ ସ୍ୱାଗତ ସଂବର୍ଦ୍ଧନା ଜ୍ଞାପନ କରିଥିଲା। ଗାନ୍ଧିଜୀଙ୍କର ଦର୍ଶନ ପାଇଁ ପୁରୀ ସିଂହଦ୍ୱାର ଠାରୁ ଗୁଣ୍ଡିଚାଘର ଶରଧା ବାଲି ପର୍ଯ୍ୟନ୍ତ ଲୋକାରଣ୍ୟ ହୋଇ ଯାଇଥିଲା ବୋଲି ମାର୍ଚ୍ଚ ୨୯ ତାରିଖ "ଅମୃତବଜାର" ପତ୍ରିକାରେ ପ୍ରକାଶ ପାଇଥିଲା।

୧୯୩୪ ମସିହାରେ ନବକୃଷ୍ଣ ଚୌଧୁରୀ ଓ ତାଙ୍କର ପତ୍ନୀ ମାଳତୀ ଚୌଧୁରୀ ଓଡ଼ିଶା କଂଗ୍ରେସ ଦଳରେ ବାମପନ୍ଥୀ ଯୁବକର୍ମୀ ମାନଙ୍କୁ ସଂଗଠିତ କରି ଗଡ଼ଜାତର ରାଜା ଏବଂ ମୋଗଲବଂଦୀ ଅଞ୍ଚଳର ଜମିଦାର ଓ ମଠମହନ୍ତ ମାନଙ୍କର ଶୋଷଣ, ଅତ୍ୟାଚାର ଓ ଜୁଲମ ବିରୁଦ୍ଧରେ ଏକ ଶକ୍ତିଶାଳୀ ଜନ ଆନ୍ଦୋଳନ ଠିଆ କରାଇଥିଲେ। ପୁରୀ ଜିଲ୍ଲାର ନିମାପଡ଼ା, ଗୋପ, କାକଟପୁର ଅଞ୍ଚଳରେ ଏହି ଆନ୍ଦୋଳନ ବେଶ୍ ଜୋର୍ ଭାବେ ଗଡ଼ି ଉଠିଥିଲା। ତାରି ପ୍ରଭାବରେ ୧୯୩୬ ମସିହାରେ ସ୍ୱତନ୍ତ୍ର ପ୍ରଦେଶ ହେବାପରେ ୧୯୩୭ରେ ଯେଉଁ ନିର୍ବାଚନ ହେଲା ସେଥିରେ ଏହି ଯୁଗଗୋଷ୍ଠୀର ମୋହନ ଦାଶ କଂଗ୍ରେସ ଦଳରୁ ନିମାପଡ଼ା, ଗୋପ, କାକଟପୁର ନିର୍ବାଚନ ମଣ୍ଡଳୀରୁ ବିଧାନସଭା ସଦସ୍ୟ ଭାବେ ନିର୍ବାଚିତ ହୋଇଥିଲେ। ଓଡ଼ିଶାରେ ବିଶ୍ୱନାଥ

ଦାସଙ୍କ ନେତୃତ୍ୱରେ କଂଗ୍ରେସ ଦଳ ସରକାର ଗଢ଼ିଲେ । ନବକୃଷ୍ଣ ଚୌଧୁରୀ ବିଧାନସଭାର ସଦସ୍ୟ ଭାବେ ନିର୍ବାଚିତ ହୋଇଥିଲେ ମଧ୍ୟ ମନ୍ତ୍ରୀ ନ ହୋଇ ଓଡ଼ିଶା କଂଗ୍ରେସରେ ଯୁବ ଗୋଷ୍ଠୀର ନେତୃତ୍ୱ ନେଇଥିଲେ । ଶାସନ ଦାୟିତ୍ୱ ନେବା ପରେ ଏହି କଂଗ୍ରେସ ସରକାର ରାଜସ୍ୱ ଆଇନରେ କିଛି ସଂଶୋଧନ କରି ଦାଖଲ ଖାରଜ ଉଠାଇ ଦେଇଥିଲେ ଏବଂ ପ୍ରଜାଙ୍କ ଜମି ଉପରେ ଥିବା ଗଛର ଫଳ ଏବଂ ପ୍ରଜାଙ୍କ ପୋଖରୀରେ ଥିବା ମାଛ ଉପରେ ପ୍ରଜାମାନଙ୍କର ଅଧିକାର ସାବ୍ୟସ୍ତ କରିଥିଲେ । ପୂର୍ବରୁ ଏହା ଜମିଦାର ନେଇ ଯାଉଥିଲେ । ଦେବୋତ୍ତର ଆଇନ୍‌ର ସଂଶୋଧନ କରି ମହନ୍ତ ମାନଙ୍କର କୁଲମ ଓ ଅପକର୍ମ ବିରୁଦ୍ଧରେ ଆଙ୍କୁଶ ଲଗାଯାଇଥିଲା । ସାହୁକାର ମାନେ ଦେଉଥିବା ଋଣ ଉପରେ ଅତ୍ୟଧିକ ସୁଧ ନେଉଥିବାରୁ ମହାଜନୀ ଆଇନ୍‌ର ସଂଶୋଧନ କରି ସୁଧହାର କମାଇ ଦିଆଯାଇଥିଲା ଏବଂ ଏହାର ସର୍ବୋଚ୍ଚ ସୀମା ମଧ୍ୟ ନିର୍ଦ୍ଧାରଣ କରି ଦିଆଯାଇଥିଲା । ମୋର ଭାଇ ଅଭିରାମ ମହାନ୍ତି ଏବଂ ଦାଦା ଗଙ୍ଗାଧର ମହାନ୍ତି ସେତେବେଳେ କଂଗ୍ରେସ ଦଳରେ ଥାଆନ୍ତି । ଏମାନେ ଧନୁଆଁ ବନ୍ୟା ସମ୍ପର୍କରେ ଲୋକଙ୍କୁ ସଂଗଠିତ କରି ଆନ୍ଦୋଳନ କରିବା ଫଳରେ ସରକାର କୁଶଭଦ୍ରା ନଦୀର ମୁହାଣ ପାଖ ବଇଁଚୁଆ ଜାଜକୁ ଉଚ୍ଚ କରି ଦେଇଥିଲେ । ତା' ଫଳରେ ଧନୁଆଁ ବନ୍ୟାର ଦାଉ କିଛି ପରିମାଣରେ କମି ଯାଇଥିଲା ।

୧୯୪୨ ଅଗଷ୍ଟ ଆନ୍ଦୋଳନ ୪ ମାସ ପୂର୍ବରୁ ମୁଁ ଏବଂ ମୋର କିଛି ବନ୍ଧୁ କଲେଜ ପଢ଼ା ଛାଡ଼ି କଂଗ୍ରେସ ଦଳର ସଂଗଠନ କାର୍ଯ୍ୟରେ ଯୋଗ ଦେଇଥିଲୁ । ଅଗଷ୍ଟ ତା୯ରିଖରେ ସରକାର ସାରା ଭାରତରେ କଂଗ୍ରେସ ଦଳର ସାନ ବଡ଼ ସବୁ କର୍ମୀମାନଙ୍କୁ ବନ୍ଦୀ କରି ରଖିଥିଲେ । ୧୯୪୪ରେ ଇଂଲଣ୍ଡରେ ଶ୍ରମିକ ଦଳ ଶାସନ ଦାୟିତ୍ୱ ନେଲେ ଏବଂ ଭାରତ ନୀତି ବଦଳାଇ ଭାରତବାସୀଙ୍କୁ ସ୍ୱଶାସନର ଦାୟିତ୍ୱ ଦେବାକୁ ରାଜି ହେଲେ । ତଦନୁସାରେ କଂଗ୍ରେସ ଦଳର ନେତା ଓ କର୍ମୀ ମାନଙ୍କୁ ୧୯୪୫ ଶେଷ ଆଡ଼କୁ ଖଲାସ କରି ଦିଆଗଲା ଏବଂ ଶାସନ ବିଧାୟକ ସଭା ଗଠନ କରିବା ପାଇଁ ବିଧାନସଭାକୁ ନିର୍ବାଚନ ହେଲା । ଏହି ନିର୍ବାଚନରେ ନିମାପଡ଼ା, ଗୋପ, କାକଟପୁର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ପ୍ରତିନିଧିତ୍ୱ କରିବା ପାଇଁ କଂଗ୍ରେସ ଦଳ ମୋତେ ମନୋନୀତ କଲେ । ସେତେବେଳେ ପୁରୀ ଜିଲ୍ଲା ପାଞ୍ଚଟି ନିର୍ବାଚନ ମଣ୍ଡଳୀରେ ବିଭକ୍ତ ଥିଲା । ସାକ୍ଷୀଗୋପାଳ, ଡ଼େଲାଙ୍ଗ, ପିପିଲି, ବାଲିଅନ୍ତା ଓ ବାଲିପାଟଣା ଥାନା ଗୁଡ଼ିକ ମିଶି ଏକ ଦ୍ୱୈତ ନିର୍ବାଚନ ମଣ୍ଡଳୀରେ ଜଣେ ସବର୍ଣ୍ଣ ଏବଂ ଜଣେ ହରିଜନ ପ୍ରାର୍ଥୀ ନିର୍ବାଚିତ ହେବାର ଥିଲା । ସେ ସମୟରେ କଂଗ୍ରେସ ଦଳ ପ୍ରତି ଲୋକଙ୍କର ପ୍ରବଳ ଅନୁରକ୍ତି ଥିଲା । ତେଣୁ ପୁରୀ ଜିଲ୍ଲାର ପାଞ୍ଚୋଟି ବିଧାନସଭା ନିର୍ବାଚନ ମଣ୍ଡଳୀର ୬ ଜଣ ବିଧାୟକଙ୍କ ମଧ୍ୟରୁ ୫ ଜଣ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇ ଯାଇଥିଲେ । ପୁରୀ ଟାଉନ୍ ସଦର, ବ୍ରହ୍ମଗିରି ଓ କୃଷ୍ଣପ୍ରସାଦ ଥାନା ଗୁଡ଼ିକୁ ନେଇ ଗଠିତ ନିର୍ବାଚନ ମଣ୍ଡଳୀରେ ଯେଉଁ ମାମୁଲି ପ୍ରତିଦ୍ୱନ୍ଦ୍ୱିତା ହେଲା ସେଥିରେ କଂଗ୍ରେସ ବିରୋଧୀ ପ୍ରାର୍ଥୀଙ୍କର ଅମାନତ ଟଙ୍କା ବାଜ୍ୟାପ୍ତି ହୋଇଯାଇଥିଲା । ପାଠକ ମାନଙ୍କ ମନୋରଂଜନ ପାଇଁ ଏ ସମ୍ପର୍କୀୟ ଏକ ବାସ୍ତବ ଘଟଣାର ବିବରଣୀ ଏଠାରେ ଉଲ୍ଲେଖ କରୁଛି । ପୁରୀ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଲୋକନାଥ ମିଶ୍ରଙ୍କ ବିରୋଧରେ କୁଳମଣି କୋଠକରଣ ପ୍ରାର୍ଥୀପତ୍ର ଦାଖଲ କରି ଥାଆନ୍ତି ।

କୋଠକରଣ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରି ନେବାପାଇଁ ତାଙ୍କର ଜାଗାଘର ସାଙ୍ଗମାନେ ତାଙ୍କ ଉପରେ ପ୍ରବଳ ଚାପ ପକାଉଥାନ୍ତି । ମାତ୍ର ଶେଷ ପର୍ଯ୍ୟନ୍ତ ସେ ପ୍ରତିଦ୍ୱନ୍ଦିତା କରିବାକୁ ଜିଦ୍ ଧରିଲେ । ତାଙ୍କର ଜଣେ ଯୁବକ ଜାଗା ସାଙ୍ଗ ବେଲ ତିଆଡ଼ି ବିରକ୍ତ ହୋଇ ତାଙ୍କୁ ରୁକ୍ଷ ଭାବରେ କହିଲେ ତମେ କ'ଣ କଂଗ୍ରେସ ବିରୋଧରେ ଜିଣିଯିବ ? ଉତ୍ତରରେ ପୁରୀ ସହରିଆ ଭାଷାରେ କୋଠକରଣ କହିଲେ, "ଆରେ, ମୁଁ ଯଦି ନ ଜିଣେ ତେବେ ମୋ କାନଟା ପୋଛିକରି କାଟିଦେବୁ"। ଭୋଟ ଗଣତିରେ କୋଠକରଣ ହାରିଲେ । ସେଦିନ ରାତିରେ ଜାଗାର ଅନ୍ୟ ସାଙ୍ଗମାନଙ୍କ ସହ କୋଠକରଣ ଦୋଳବେଦୀ ଉପରେ ଶୋଇ ଥାଆନ୍ତି । ରାତି ୧୨ଟା ବେଳେ ବେଲ ତିଆଡ଼ି ଗୋଟିଏ କ୍ଷୁର ନେଇ ତାଙ୍କ କାନଟା ପୋଛିକିର କାଟି ଦେଲା ଏବଂ ତାକୁ ନେଇ ଥାନାରେ ହାଜର ହୋଇ ସବୁକଥା ନିଜଆଡୁ ଜଣାଇ ଦେଲା । ମୁଁ ସେତେବେଳେ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଥାଏ । ପରଦିନ ସକାଳୁ ଏ ଖବର ଶୁଣି ଅତ୍ୟନ୍ତ ବ୍ୟଥିତ ହେଲି । କୋଠକରଣଙ୍କ ସାଙ୍ଗ ସାଥି ଏବଂ ଅନ୍ୟ ଲୋକମାନଙ୍କ ସହ ଏ ସଂପର୍କରେ ଆଲୋଚନା କରି ଜାଣି ପାରିଥିଲି ଯେ କୋଠକରଣ କାନଟି ହରାଇଥିଲେ ମଧ୍ୟ ତାଙ୍କ ପ୍ରତି ଜନସାଧାରଣଙ୍କ କୌଣସି ପ୍ରକାର ସହାନୁଭୂତି ପ୍ରକାଶ ପାଇନଥିଲା । ଏବେ ମୋ ନିଜ ନିର୍ବାଚନ ମଣ୍ଡଳୀ କାମ ସଂପର୍କରେ କିଛି ସୂଚାଇବି । ଆଗରୁ କହିଛି ଯେ ଏ ନିର୍ବାଚନମଣ୍ଡଳୀରେ ପ୍ରଜାମାନେ ସଂଗଠିତ ଥିଲେ । ତାହା ମୋ ପାଇଁ ବିଶେଷ ସହାୟକ ହୋଇଥିଲା । ନିର୍ବାଚନ ପରେ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଯେଉଁ ମନ୍ତ୍ରୀମଣ୍ଡଳ ଗଠିତ ହେଲା ସେଥିରେ ନବକୃଷ୍ଣ ଚୌଧୁରୀ ଥିଲେ ରାଜସ୍ୱମନ୍ତ୍ରୀ, କିଛି ବର୍ଷ ପରେ ମହତାବବାବୁ କେନ୍ଦ୍ରକୁ ଚାଲିଯିବା ପରେ ଶ୍ରୀ ଚୌଧୁରୀ ୧୯୫୦ ଠାରୁ ୧୯୫୬ ପର୍ଯ୍ୟନ୍ତ ଓଡ଼ିଶା ମୁଖ୍ୟମନ୍ତ୍ରୀ ଭାବେ ଶାସନଭାର ଗ୍ରହଣ କରିଥିଲେ । ଐତିହାସିକ ମାନେ ୧୯୪୬ରୁ ୧୯୫୬, ୧୦ ବର୍ଷକୁ ଓଡ଼ିଶା ଗଠନର ଦଶନ୍ଧି ବୋଲି ଅବହିତ କରିଥାନ୍ତି । ଏହି ସମୟ ମଧ୍ୟରେ ଓଡ଼ିଶାର ୨୬ଟି ଗଡ଼ଜାତରୁ ରାଜାମାନଙ୍କର ଶାସନ ଲୋପ କରି ଏଗୁଡ଼ିକ ଓଡ଼ିଶା ସହ ସାମିଲ କରା ଯାଇଥିଲା ଏବଂ ମୋଗଲ ବନ୍ଦୀରେ ଏକଛତ୍ର ଶାସନ ଚଲାଇଥିବା ସାନ, ବଡ଼ ପ୍ରାୟ ୩ ଲକ୍ଷ ଜମିଦାର ଓ ସ୍ୱତ୍ୱାଧିକାରୀଙ୍କୁ ଉଚ୍ଛେଦ କରାଯାଇଥିଲା । ଏହି ବୈପ୍ଳବିକ କାମ ପାଇଁ ଓଡ଼ିଶା ଇତିହାସ ନବକୃଷ୍ଣ ଚୌଧୁରୀଙ୍କୁ କାଳେ କାଳେ ସ୍ମରଣ ରଖିବ । ମୁଁ ଗୋଟିଏ ଗୁଣ୍ଡୁଚି ମୂଷା ପରି ଏହି ସେତୁବନ୍ଧ ନିର୍ମାଣ କାର୍ଯ୍ୟରେ ତାଙ୍କୁ ସର୍ବୋତ୍ତମଭାବେ ସାହାଯ୍ୟ ସମର୍ଥନ ଦେଇଥିଲି । ଇଂରେଜ ସରକାରଙ୍କ ସମୟରେ ଅମଲାତନ୍ତ୍ର ହାତରେ ଶାସନ କ୍ଷମତା ନ୍ୟସ୍ତ ଥିଲା । ସେମାନଙ୍କ ହାତରୁ କ୍ଷମତାର ଡ଼ୋରି କାଢ଼ିନେଇ ଲୋକ ସାଧାରଣଙ୍କ ଦ୍ୱାରା ନିର୍ବାଚିତ ପଞ୍ଚାୟତ ଶାସନ ହାତରେ ଅର୍ପଣ କରିବା ପାଇଁ ନବକୃଷ୍ଣ ଚୌଧୁରୀ ଅଞ୍ଚଳ ଶାସନର ମୂଳଦୁଆ ପକାଇବା ପାଇଁ ଅଞ୍ଚଳ ଶାସନ ଆଇନର ପ୍ରବର୍ତ୍ତନ କରିଥିଲେ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏହି ବ୍ୟବସ୍ଥାର ପ୍ରବର୍ତ୍ତନ କ୍ଷେତ୍ରରେ ମଧ୍ୟ ମୁଁ ତାଙ୍କୁ ଆନ୍ତରିକ ସାହାଯ୍ୟ ସମର୍ଥନ ଦେଇଥିଲି । ନିଜ ହାତରେ ଚାଷ କରୁଥିବା ଚାଷୀମାନଙ୍କୁ ଚାଷ ଜମିର ସ୍ୱତ୍ତ୍ୱାଧିକାର ଏବଂ ଭାଗଚାଷୀ ମାନଙ୍କୁ ଉତ୍ପାଦନର ଅତି କମ୍‌ରେ ୩ ଭାଗରୁ ୨ ଭାଗ ଦେବା ଏବଂ ସେମାନଙ୍କୁ ଚାଷରୁ ଉଚ୍ଛେଦ ନ କରିବା ପାଇଁ ତାଙ୍କର ଆନ୍ତରିକ ଇଚ୍ଛାକୁ କାର୍ଯ୍ୟକାରୀ ରୂପ

ଦେବାପାଇଁ ମୋ ବିଧାନସଭା କାର୍ଯ୍ୟକାଳ ମଧ୍ୟରେ ମୁଁ ସାଧ୍ୟମତେ ଉଦ୍ୟମ କରିଥିଲି । ୧୯୪୬ ନିର୍ବାଚନ ପରେ ପରେ ଜମିଦାର ଏବଂ ବଡ଼ ଜମି ମାଲିକ ମାନେ ଜଙ୍ଗଲକୁ କାଟି ପକାଇବା, ଜମି ଗୁଡ଼ିକୁ ବେଆଇନ୍ ହସ୍ତାନ୍ତର କରିବା, ପଛ ତାରିଖରେ ପଟ୍ଟା ଦେଇ ହସ୍ତାନ୍ତର କରିଦେବା ଆଦି କାମକୁ ରୋକିବା ଦିଗରେ ଆଇନ୍ ଓ ଶାସନ ଦଣ୍ଡକୁ ଏବଂ ଲୋକମତକୁ ତିଆରି କରିବା ତଥା ଏହାକୁ ସକ୍ରୀୟ କରିବାରେ ମୋର ଶକ୍ତି ନିୟୋଗ କରିଥିଲି । ଭାଗ ଚାଷୀମାନଙ୍କୁ ସର୍ବନିମ୍ନ ନ୍ୟାୟ ଦେବାପାଇଁ ପ୍ରାଥମିକ ସ୍ତରରେ ଯେଉଁ ଚାଷୀ ସଂରକ୍ଷଣ ଆଇନ୍ କରାଗଲା ସେଥିରେ ମୁଁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲି । ଏବଂ ମୋ ନିଜ ନିର୍ବାଚନ ମଣ୍ଡଳୀ ସହ ପୁରୀ ଜିଲ୍ଲାର ଅନ୍ୟାନ୍ୟ ନିର୍ବାଚନ ମଣ୍ଡଳୀରେ ଏହାକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ପ୍ରାଣପଣେ ଉଦ୍ୟମ କରିଥିଲି । ପୂର୍ବରୁ କହିଛି ଯେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ସଙ୍ଗରେ କଂଗ୍ରେସରେ ଥିବା ପ୍ରଗତିଶୀଳ ଯୁବ ଗୋଷ୍ଠୀ ପୁରୀ ଜିଲ୍ଲାରେ ମୋ ନିର୍ବାଚନ ମଣ୍ଡଳୀରେ ଅଧିକ ସକ୍ରିୟ ଥିଲେ । ସେମାନେ ମଧ୍ୟ ପୁରୀ ଜିଲ୍ଲାର ଖୋର୍ଦ୍ଧା, ବେଗୁନିଆ, ବୋଲଗଡ଼ ଏବଂ ଚନ୍ଦକା ଥାନା ମାନଙ୍କରେ ଅଧିକ ଭାବରେ ସକ୍ରୀୟ ଥିଲେ । ୨ୟ ବିଶ୍ୱଯୁଦ୍ଧ ସମୟରେ ଇଂରେଜ ଓ ଆମେରିକାର ସାମ୍ରାଜ୍ୟବାଦୀ ସରକାର ଚଳାଇଥିବା ଯୁଦ୍ଧ ଉଦ୍ୟମରେ ଧନ, ଜନ, ସହଯୋଗ କରିବ ନାହିଁ ବୋଲି କଂଗ୍ରେସ ରୋକ ଠୋକ୍ ଭାବେ ଜଣାଇ ଦେଇଥିଲା ଏବଂ କଂଗ୍ରେସ ଭିତରେ ଥିବା ଯୁବଗୋଷ୍ଠୀ କଂଗ୍ରେସର ଏହି ନୀତିକୁ ସମର୍ଥନ କରୁଥିଲେ । ମାତ୍ର ଯେତେବେଳେ ଜର୍ମାନୀ ଋଷିଆ ଆକ୍ରମଣ କଲା ଏବଂ ଋଷିଆ ଆମେରିକା ସଙ୍ଗେ ହାତ ମିଳାଇଲା ସେତେବେଳେ ଏହା ଜନଯୁଦ୍ଧ ହୋଇଗଲା ବୋଲି ଯୁକ୍ତି କରି ଏହି ଯୁଦ୍ଧ ଉଦ୍ୟମରେ ସବୁ ପ୍ରକାର ସାହାଯ୍ୟ ଦେବା ଉଚିତ୍ ବୋଲି ଭାରତୀୟ କମ୍ୟୁନିଷ୍ଟ ପାର୍ଟି ନୀତି ବଦ୍ଧ୍ୟନ କରିଥିଲେ ଏବଂ ଆମର ଦୁର୍ଭାଗ୍ୟ ଯେ ଓଡ଼ିଶା କଂଗ୍ରେସରେ ନବକୃଷ୍ଣ ଚୌଧୁରୀଙ୍କ ସଙ୍ଗରେ ସାମିଲ ଥିବା ଯୁବଗୋଷ୍ଠୀ ସେତେବେଳେ କମ୍ୟୁନିଷ୍ଟ ଦଳର ଯୁକ୍ତିରେ ପ୍ରଭାବିତ ହୋଇ କଂଗ୍ରେସ ଛାଡ଼ି ଏହି ଦଳରେ ସାମିଲ ହୋଇଯାଇଥିଲା । ୧୯୪୫ରେ ଜେଲ୍ ଭିତରୁ ବାହାରିବା ପରେ ମୋହନ ଦାସ, ଗତିକୃଷ୍ଣ ସ୍ୱାଇଁ, ପୂର୍ଣ୍ଣାନନ୍ଦ ସ୍ୱାଇଁ, ନାରଣ ଦାସ ପ୍ରଭୃତି କଂଗ୍ରେସର ପ୍ରଭାବଶାଳୀ କର୍ମୀମାନେ ଏବଂ ସେମାନଙ୍କ ବହୁ ସହଯୋଗୀ କର୍ମୀ କଂଗ୍ରେସଠାରୁ ଅଲଗା ହୋଇ ଖୋଲା ଖୋଲି ଭାବେ କମ୍ୟୁନିଷ୍ଟ ଦଳ ଗଠନ କରି କଂଗ୍ରେସର କାର୍ଯ୍ୟକ୍ରମକୁ ବିରୋଧ କଲେ । ପ୍ରଦେଶ କଂଗ୍ରେସ କମିଟି ପୁରୀ ଜିଲ୍ଲାର ଏହି କର୍ମୀମାନଙ୍କୁ କଂଗ୍ରେସରୁ ବହିଷ୍କାର କରି ଯେଉଁ ପୁରୀ ଜିଲ୍ଲା କମିଟି ଗଠନ କଲେ ସେଥିରେ ମୁଁ ଥିଲି ସଂପାଦକ । ତେଣୁ ମୋର ପୂର୍ବର ଏହି ବନ୍ଧୁମାନଙ୍କ ସଙ୍ଗେ ରାଜନୈତିକ କାରଣରୁ ମୁହାଁମୁହିଁ ହେବା ଛଡ଼ା ଅନ୍ୟ ଉପାୟ ନଥିଲା । ଜେଲ୍‌ରୁ ବାହାରିବା ପରେ ପରେ ପୁରୀ ଜିଲ୍ଲାରେ ବ୍ୟବସ୍ଥା ସଭା ନିର୍ବାଚନ ପୂର୍ବରୁ ଜିଲ୍ଲା ବୋର୍ଡ ନିର୍ବାଚନ ହେଲା ଏହି ନିର୍ବାଚନରେ ସବୁ ନିର୍ବାଚନ ମଣ୍ଡଳୀରେ କମ୍ୟୁନିଷ୍ଟ ଦଳ କଂଗ୍ରେସ ବିରୁଦ୍ଧରେ ପ୍ରାର୍ଥୀ ଛିଡ଼ା କରାଇଲେ । କଂଗ୍ରେସରୁ ଅଲଗା ହେବା ପୂର୍ବରୁ ସେମାନେ ଥିଲେ କଂଗ୍ରେସର ପ୍ରଭାବଶାଳୀ କର୍ମୀ । ୧୯୪୨ ଆନ୍ଦୋଳନର ମାତ୍ର ୪ ମାସ ପୂର୍ବରୁ ମୁଁ କଲେଜ ଛାଡ଼ି କଂଗ୍ରେସରେ ଯୋଗ ଦେଇଥାଏ । ତେଣୁ ନିର୍ବାଚନ ମଣ୍ଡଳୀ ଲୋକମାନଙ୍କ ପାଖରେ ସେମାନଙ୍କର ଯେଉଁ ପରିଚୟ ଓ ପ୍ରଭାବ ଥିଲା ସେପରି ମୋର ନଥିଲା । ଜିଲ୍ଲା ବୋର୍ଡ ନିର୍ବାଚନରେ ପ୍ରାଣନାଥ ପଟ୍ଟନାୟକ ଓ ତାଙ୍କରି ଭଳି ଜେତେକ

ପ୍ରଭାବଶାଳୀ କର୍ମୀ ନିଜେ ପ୍ରାର୍ଥୀ ହୋଇଥିଲେ। ତେଣୁ ସେମାନଙ୍କର ସଙ୍ଗରେ ଭୋଟ ଲଢ଼ାଇରେ ସମ୍ମୁଖୀନ ହେବା ପାଇଁ ମୋତେ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା। କିନ୍ତୁ ସେତେବେଳେ କଂଗ୍ରେସ ପ୍ରତି ଜନ ସାଧାରଣଙ୍କ ମମତା ଏବଂ ଏହାର ନେତୃତ୍ୱ ଉପରେ ଏତେ ଆସ୍ଥା ଥିଲା ଯେ ସେମାନେ ପୁରୀ ଜିଲ୍ଲାର ସବୁ ନିର୍ବାଚନ ମଣ୍ଡଳୀରେ କମ୍ୟୁନିଷ୍ଟ ମାନଙ୍କୁ ପରାଜିତ କରି କଂଗ୍ରେସ ପ୍ରାର୍ଥୀଙ୍କୁ ଜୟଯୁକ୍ତ କରାଇଥିଲେ। ସୁଖର କଥା ଯେ ଏହି ଅନୁଭବରୁ ଶିକ୍ଷାଲାଭ କରି କମ୍ୟୁନିଷ୍ଟ ମାନେ ୧୯୪୬ ବିଧାନସଭା ନିର୍ବାଚନରେ ପୁରୀ ଜିଲ୍ଲାରେ କଂଗ୍ରେସ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରି ନଥିଲେ। ଜମିଜମା ପଞ୍ଚାୟତ ଶାସନ ଓ ଚାଷୀ ସଂଗଠନ କ୍ଷେତ୍ରରେ କମ୍ୟୁନିଷ୍ଟ ମାନଙ୍କ ଚିନ୍ତାଧାରା ଅଧିକ ଗଭୀର ଓ ଅଧିକ ପ୍ରଭାବଶାଳୀ ହୋଇଥିବାରୁ ମୋ ନିର୍ବାଚନ ମଣ୍ଡଳୀରେ ସେମାନେ ମୋ କାର୍ଯ୍ୟକ୍ରମରେ ସକ୍ରୀୟ ସହଯୋଗ କରୁନଥିଲେ ମଧ୍ୟ ବିରୋଧ କରୁନଥିଲେ। ଆମର ପୁରୀ ଜିଲ୍ଲା ବିଶେଷ କରି ମୋର ନିର୍ବାଚନ ମଣ୍ଡଳୀର ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଥିଲା ବନ୍ୟା ସମସ୍ୟା। ପୁରୀ ଓ କଟକ ଜିଲ୍ଲାର ବ୍ୟାପକ ଅଞ୍ଚଳ ମହାନଦୀ ଓ ତା'ର ଶାଖାନଦୀ ମାନଙ୍କର ବନ୍ୟାଜଳ ଦ୍ୱାରା ବିଶେଷ କ୍ଷତିଗ୍ରସ୍ତ ହେଉଥିଲା। ତେଣୁ ହୀରାକୁଦଠାରେ ବହୁମୁଖୀ ନଦୀ ବନ୍ଧ ଯୋଜନା କାର୍ଯ୍ୟ ଆମେ ହାତକୁ ନେଇଥିଲୁ ଏବଂ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଏହା ପ୍ରାୟ ଶେଷ ହୋଇ ଆସିଥିଲା। ଏହାଥିଲା ମୋ ନିର୍ବାଚନ ମଣ୍ଡଳୀପାଇଁ ଏକ ଆଶିର୍ବାଦ। ଏଥିପାଇଁ ସେତେବେଳେ ମୋ ନିର୍ବାଚନ ମଣ୍ଡଳୀରେ ଲୋକମାନେ ମୋତେ ଏବଂ କଂଗ୍ରେସ ଶାସନକୁ ବିପୁଳ ଶ୍ରଦ୍ଧା ଓ ସମର୍ଥନ ଜ୍ଞାପନ କରିଥିଲେ। ଧନୁଆ ଉପକୂଳର ବନ୍ୟା ସମସ୍ୟା ସମାଧାନ ପାଇଁ ମୁଁ ଭାର୍ଗବୀ ବାମ ପାର୍ଶ୍ୱରେ ଥିବା ଅଚ୍ୟୁତପୁର ବାନ୍ଧକୁ ଉଚ୍ଚ କରାଇଥିଲି ଏବଂ ଧନୁଆର ବଢ଼ିପାଣି ଖଲାସ ହେବା ପାଇଁ ଏକ ନୂଆ ନଈ ଖୋଳାଇ ପୁରୀ, ଗୋପ ରାସ୍ତାରେ ସିଆର ଠାରେ ପୋଲ ନିର୍ମାଣ କରି ସମୁଦ୍ରରେ ପକାଇବାର ବ୍ୟବସ୍ଥା କରିଥିଲି। କାଠଯୋଡ଼ୀ ତଳ ଅଂଶକୁ ଦେବୀ ନଦୀ କୁହାଯାଇଥାଏ। ଏହି ନଦୀର ଡ଼ାହାଣ ପାଖରେ ବନ୍ଧ ନିର୍ମାଣ କରି କାକଟପୁରକୁ ବନ୍ୟାଦାଉରୁ ରକ୍ଷା କରିବା ପାଇଁ ବ୍ୟବସ୍ଥା କରିଥିଲି। ଏଥିରେ ଗ୍ରାମାବାସୀଙ୍କ ଉତ୍ସାହପୂର୍ଣ୍ଣ ସାହାଯ୍ୟ ସମର୍ଥନ ମୋତେ ମିଳିଥିଲା। ଗମନା ଗମନ କ୍ଷେତ୍ରରେ ଯଥା ସମ୍ଭବ ଉନ୍ନତି କରାଯାଇଥିଲା। ପିପିଲି-ନିମାପଡ଼ା ରାସ୍ତାର ଦହିଜଙ୍ଗ ଜାଜକୁ ଆୟତ କରାଯାଇ ଏହି ରାସ୍ତାର ଉନ୍ନତି ବିଧାନ କରାଯାଇଥିଲା ଏବଂ ନିମାପଡ଼ା-ଅସ୍ତରଙ୍ଗ ରାସ୍ତାକୁ ସବୁଦିନିଆ ରାସ୍ତାରେ ପରିଣତ କରାଯାଇଥିଲା। ମୋର ସୌଭାଗ୍ୟ ଯେ ନିମାପଡ଼ାର ପଦ୍ମଚରଣ ସାମନ୍ତ ସିଂହାର ଓ ଶ୍ରୀ ଭବାନୀ ଚରଣ ପଟ୍ଟନାୟକ ଓ ଗୋପର ଶ୍ରୀ ଉପେନ୍ଦ୍ର ମହାନ୍ତି ଏବଂ କାକଟପୁର ଅର୍ଜୁନ ଦାସଙ୍କ ସମେତ ବହୁ ଯୁବ କଂଗ୍ରେସ କର୍ମୀ ଏହି ସବୁ କାମରେ ମୋତେ ଅକୁଣ୍ଠ ସହଯୋଗ ଦେଇଥିଲେ। ଏଥିପାଇଁ ମୁଁ ସେମାନଙ୍କ ପାଖରେ କୃତଜ୍ଞତା ପ୍ରକାଶ କରି ଆସିଚି ଓ କରୁଥିବି। ନିମାପଡ଼ା, ଗୋପ, କାକଟପୁର ନିର୍ବାଚନ ମଣ୍ଡଳୀର ବିଧାୟକ ଭାବେ ଜନ ସାଧାରଣ ମୋତେ ସେମାନଙ୍କ ସ୍ନେହ ସମ୍ମାନ ଯେପରି ଅଜାଡ଼ି ଦେଇଥିଲେ ତାହା ମୋ ଜୀବନରେ ଏକ ଅବିସ୍ମରଣୀୟ ଅଧ୍ୟାୟ।

**ସୌଜନ୍ୟ : ନିମାପଡ଼ା ପୁସ୍ତକ ମେଳା ସ୍ମରଣିକା, ୨୦୦୫ ମସିହା**

# ଜୟୀ ମଉସା : ଏକ ଅନ୍ତରଙ୍ଗ ଅନୁଭବ

ଡ଼. ଅର୍ଚ୍ଚନା ନାୟକ

ବହୁବର୍ଷ ତଳେ ପ୍ରାୟ ୧୯୬୭ ମସିହାରେ ମୁଁ ଜୟୀ ମଉସାଙ୍କର ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲି। ସେହି ସମୟରେ ଆମ ସମାଜରେ ଆଦର୍ଶବାଦୀ, ନୀତିନିଷ୍ଠ, ତ୍ୟାଗଶୀଳ, ଶୁଦ୍ଧଚେତା ଓ ସ୍ନେହୀ ମଣିଷ ମାନେ କିଛି ସଂଖ୍ୟାରେ ଥିଲେ; ଯାହା ଆଜି ସମ୍ପୂର୍ଣ୍ଣ ଦୁର୍ଲ୍ଲଭ ହୋଇସାରିଛି। ତଥାପି ସେହି ସମୟରେ ମଧ୍ୟ ସେମାନଙ୍କ ମଧ୍ୟରୁ କାହା ସହିତ ଏକ ଆତ୍ମିକ ବନ୍ଧନରେ ବାନ୍ଧି ହେବା ବା ତାଙ୍କର ଘନିଷ୍ଠ ସଂପର୍କରେ ଆସିବା ଆଦୌ ସହଜ ନ ଥିଲା। କିନ୍ତୁ ମୋର ଥିଲା ପରମ ସୌଭାଗ୍ୟ ଯେ ମୁଁ ମଉସାଙ୍କ ସଂପର୍କରେ ଆସିଲି ଓ ସେ ମତେ ତାଙ୍କର ଗୋଟିଏ ପୁଅ ଓ ତିନୋଟି କନ୍ୟାଙ୍କ ସହ ମିଶାଇ ନେଲେ। ମୁଁ ତାଙ୍କ ପରିବାରରେ ସ୍ୱତଃ ଚତୁର୍ଥ କନ୍ୟାର ମାନ୍ୟତା ପାଇଗଲି। ମୋର ବେଳେବେଳେ ମନେ ହେଉଥିଲା ତାଙ୍କର ମୂଳ ତିନିକନ୍ୟା ଡ଼ଲି, ଗୌରୀ ଓ ସୋମାଙ୍କ ଅପେକ୍ଷା ମଉସା ମାଉସୀ ମତେ ଟିକେ ଅଧିକ ଧ୍ୟାନ ଦେଉଥିଲେ। ଅବଶ୍ୟ ତାହା କାହାରି ଈର୍ଷାର କାରଣ ନ ଥିଲା।

ପରଆପଣାର ଭେଦରହିତ ଥିଲା ତାଙ୍କର ପରିବାର। ଯେତେବେଳେ ପ୍ରତି ରବିବାର ମଉସାଙ୍କ ଘରେ ମୋର ଭୋଜନ ବ୍ୟବସ୍ଥା ହେଉଥିଲା। ପ୍ରଥମ ଥର ତାଙ୍କ ଘରେ ଖାଇବାକୁ ବସିବାବେଳେ ଗୋଟିଏ କଥା ମୋର ଦୃଷ୍ଟି ଆକର୍ଷଣ କରିଥିଲା। ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି। କଥାଟି ଥିଲା ଆମ ସମସ୍ତଙ୍କ ପାଇଁ ତଳେ ଆସନ ପରାଯାଇ ଖାଇବା ବଢ଼ାଯିବା ବେଳେ ତାଙ୍କ ଘରେ କାମ କରୁଥିବା ଚାକର ପିଲାଟି ପାଇଁ ମଧ୍ୟ ସମାନ ବ୍ୟବସ୍ଥା କରା ଯାଇଥିଲା। ମାଉସୀ ବାଢ଼ୁଥିଲେ। ମୁଁ ସେ ପର୍ଯ୍ୟନ୍ତ ଯାଏ ନିଜ ଘରେ ବା କାହାରି ଘରେ ଏ ପ୍ରକାର ଦୃଶ୍ୟ ଦେଖି ନ ଥିଲି। ସାଧାରଣତଃ ସମସ୍ତେ ଖାଇ ସାରିବାପରେ ହିଁ ବଳିଥିବା କିଛି ତରକାରୀ ଓ ନଥିବା ଡ଼ାଲିରେ ପାଣି ମିଶାଇ ଚାକର ପାଇଁ ସ୍ୱତନ୍ତ୍ର ଭାବରେ ରନ୍ଧା ହୋଇଥିବା ଅପେକ୍ଷାକୃତ ଶସ୍ତା ଚାଉଳର ଭାତ ବଢ଼ାଯାଏ। ସେ ପୁଣି ବାହାର ବାରଣ୍ଡାରେ ବସି ଖାଇଥାଏ। ତେଣୁ ଏଠି ଏ ବ୍ୟବସ୍ଥା ଦେଖି ମୁଁ ଚକିତ ହେବା ସ୍ୱାଭାବିକ ଥିଲା। ମାଉସୀ ସମାନ ଭାବରେ ସମସ୍ତଙ୍କୁ ପରଷୁ ଥିଲେ। ତା'ପରେ ମୋର ସେ ଦୃଶ୍ୟ ଅଭ୍ୟାସରେ ପଡ଼ିଗଲା ଆଉ କିଛି ଅସ୍ୱାଭାବିକ ମନେ ହେଲାନାହିଁ। କିନ୍ତୁ ମୋର ଅଜାଣତରେ ମୋ ଚେତନା ମଧ୍ୟରେ ତା'ର ଏକ ଶୁଭପ୍ରଭାବ ସଞ୍ଚରି ଯାଇଥିଲା। ମାଲିକ ଓ ସେବକ ମଧ୍ୟରେ ରହୁଥିବା ପାର୍ଥକ୍ୟବୋଧ ମୋ ଭିତରୁ ସମ୍ପୂର୍ଣ୍ଣ ଭାବରେ ଅପସରି ଯାଇଥିଲା। ମୋ ଘରର ଚଳଣିରେ ଉକ୍ତ ପ୍ରଭାବ ମତେ ଖୁବ୍ ସୁଖୀ କରିପାରିଛି।

ମଉସାଙ୍କ ଘରେ ମାଉସୀ ସ୍ୱୟଂ ଅନ୍ନପୂର୍ଣ୍ଣାଙ୍କ ରୂପରେ ଉପସ୍ଥିତ ଥିବାରୁ ଖାଇବା ପିଇବାରେ ସବୁବେଳେ ପରିପୂର୍ଣ୍ଣତା ରହୁଥିଲା କିନ୍ତୁ ପିନ୍ଧିବାରେ କେବଳ ଥିଲା ସାଧାରଣ ଖଦୀବସ୍ତ୍ର। ତାଙ୍କ ଘରର ପିନ୍ଧାଲୁଗାରୁ ଚାଦର ପର୍ଯ୍ୟନ୍ତ ସବୁଥିରେ ଖଦୀକନାର ବ୍ୟବହାର ନିଶ୍ଚିତ ଥିଲା। ତାଙ୍କ ପିଲାମାନେ ଖୁସିରେ ଖଦୀ ପିନ୍ଧୁଥିଲେ; ଯାହାର କୌଣସି ପ୍ରଭାବ ମୋ ଉପରେ ପଡ଼ିନଥିଲା। ବରଂ ମୋଠାରୁ ସାନ ଥିବା ତାଙ୍କର ବଡ଼ ଝିଅ ଡ଼ଲି (ଡ଼ା. ସବିତା ମହାନ୍ତି)ଙ୍କୁ ମୁଁ ଅନ୍ୟାନ୍ୟ ସୌଖୀନ ବସ୍ତ୍ରପ୍ରତି ଆକର୍ଷିତ କରୁଥିଲି ଓ

ବିଫଳ ହେଉଥିଲି । କାରଣ ସଚ୍ଚା ସ୍ୱାଧୀନତା ସଂଗ୍ରାମୀ ମଉସାଙ୍କର ଖଦୀସହ ସଂପୃକ୍ତ ଉଚ୍ଚ ଆଦର୍ଶବାଦ ଦ୍ୱାରା ସେମାନେ ମୂଳରୁ ପ୍ରଭାବିତ ଥିଲେ; ଯାହା ମୋ କ୍ଷେତ୍ରରେ ହୋଇ ନଥିଲା ।

ତାଙ୍କ ଘର ମତେ ସବୁବେଳେ ଆଶ୍ରମଟିଏ ପରି ଲାଗେ । ସବୁ କିଛି ସହଜ ଓ ସାଧାରଣ ଥିଲା ଅଥଚ୍ ଏକ ଉଚ୍ଚ ମୂଲ୍ୟବୋଧର ପ୍ରଭାବ ସର୍ବତ୍ର ଅନୁଭବ କରି ହେଉଥିଲା ।

ମଉସାଙ୍କର ଧୋତି ପିନ୍ଧାର ଢ଼ଙ୍ଗ ଆଉ କାହାରି ଠାରେ ଦେଖିନାହିଁ । ଗୋଟିଏ ଧୋତିକୁ ଦୁଇଖଣ୍ଡ କରି କଟାଯାଇ କିପରି କୌଶଳରେ ସିଲାଇ ହେଉଥିଲା ଯେ ଭଲ କରି ନିରେଖି ନ ଦେଖିଲେ ପୂରା ଧୋତି ପିନ୍ଧାର ଶୈଳୀଠାରୁ ଭିନ୍ନ ଜଣା ପଡ଼େନାହିଁ । ପୋଷାକରେ ସେଇଟି ଥିଲା ତାଙ୍କର ସଂପୂର୍ଣ୍ଣ ନିଜସ୍ୱ ।

ମଉସା କାହାରିକୁ ବସି ଉପଦେଶ ଦେବା ବା ଧର୍ମଗ୍ରନ୍ଥ ସବୁ ପଢ଼ି ଶୁଣାଇବାର ଦୃଶ୍ୟ ମୋ ଆଖିରେ କେବେ ପଡ଼ିନି, ହୁଏତ ସେ କଥା ସେତେବେଳେ କରୁ ଥାଇ ପାରନ୍ତି ଓ ଯେଉଁମାନେ ତାଙ୍କ ପାଖରେ ସବୁବେଳେ ରହୁଥିଲେ ସେମାନଙ୍କ ସେ ପ୍ରକାର ଅଭିଜ୍ଞତା ଥାଇପାରେ । କିନ୍ତୁ ମୋର ମନେହୁଏ କର୍ମୀ ମଉସାଙ୍କର କାହାକୁ କିଛି ଉପଦେଶ ମୁହଁରେ ଦେବା ଆଦୌ ଆବଶ୍ୟକ ନ ଥିଲ । ତାଙ୍କର ଜୀବନଚର୍ଯ୍ୟା ହିଁ ଥିଲା ସମସ୍ତଙ୍କ ଆଖି ଆଗରେ ଆଦର୍ଶ ଓ ମଣିଷ ପଣିଆରେ ଏକ ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ।

ସୁଖରେ ଦୁଃଖରେ, ସଂପଦରେ ବିପଦରେ ଭଲ ବା ମନ୍ଦ ବେଳାରେ ସେ ସର୍ବଦା ଅବିଚ୍ଳିତ ଓ ପ୍ରସନ୍ନ ରହିପାରୁଥିଲେ । ହୃଦୟବତ୍ତାର ଏକ ସ୍ନିଗ୍ଧ ପ୍ରଶାନ୍ତି ତାଙ୍କ ମୁହଁକୁ ସବୁବେଳେ ହସ ହସ କରି ରଖୁଥିଲା । ସେ ହସରେ ଶିଶୁସୁଲଭ ସରଳତା ଓ ସମସ୍ତଙ୍କ ପାଇଁ ତାଙ୍କ ଅନ୍ତରରେ ଥିବା ଶୁଭ ଭାବନାର ପ୍ରକାଶଟି ବାରି ହୋଇ ପଡ଼େ । ସେ ହସ ଦୁର୍ଲ୍ଲଭ, କାରଣ ଏପର୍ଯ୍ୟନ୍ତ ମୁଁ ଆଉ କାହାରି ମୁହଁରେ ତା'ର ଝଲକ ଦେଖି ପାରିନାହିଁ ।

କର୍ମୀ ମଉସାଙ୍କ ସହିତ ମୋର ବିଗତ କୋଡ଼ିଏ ବର୍ଷ ଭିତରେ କ୍ୱଚିତ୍ ଦେଖା ହୋଇଛି । ସବୁବେଳେ ଭାବେ ତାଙ୍କ ପାଖକୁ ଯିବି । କିଛି ସମୟ ବିତାଇ ଆସିବି; କିନ୍ତୁ ସେଥିପାଇଁ ସମୟ ବାହାର କରି ପାରୁନଥିଲି । ତଥାପି ବାରବାର ଦେଖା ହେଉ ନ ଥିଲେ ବି ମନ ଭିତରେ ପ୍ରତ୍ୟୟଟିଏ ଅବିଚ୍ଳ ରହୁଥିଲା ଯେ ମୋର ପିତୃପ୍ରତିମ ମଉସା ଅଛନ୍ତି ଏବଂ ମୁଁ ତାଙ୍କୁ ଯେବେ ବି ଲୋଡ଼ିବି ସେ ମୋ ମୁଣ୍ଡ ଉପରେ ଆଶୀର୍ବାଦ ଢ଼ାଳିଦେବେ ।

ମଉସାଙ୍କ ସହ ମୋର ସଂପର୍କ ଘଟଣାବହୁଳ ନୁହେଁ; କିନ୍ତୁ ଗଭୀର ଭାବାତ୍ମକ । ଯାହା ମୁଁ ଅନୁଭବ କରିଥାଏ । ମଉସାଙ୍କ ପାଇଁ ମୁଁ ସେ ସମୟରେ ପୁଣ୍ୟଶ୍ଳୋକ ଆଚାର୍ଯ୍ୟ ହରିହର, ରମାଦେବୀ ଓ ନବକୃଷ୍ଣ ଚୌଧୁରୀଙ୍କୁ ମଧ୍ୟ ନିକଟରୁ ଦେଖିବାର ଓ ଜାଣିବାର ସୁଯୋଗ ପାଇଥିଲି । ସେ ସବୁ ସ୍ମୃତିକୁ ମୁଁ ମୋ ହୃଦୟରେ ଅମୂଲ୍ୟ ସଂପଦ ଭାବରେ ସାଇତି ରଖିଛି ।

ମଉସା ଚାଲିଯିବା ଖବର ପାଇବା ପରେ ମୋ ବାପା ଚାଲିଯାଇଥିବା ସମୟର ସେଇ ଦୁଃଖଦ ଅନୁଭବ ପୁଣି ଥରେ ମୋ ସତ୍ତାକୁ ଆଚ୍ଛନ୍ନ କରି ପକାଇଲା । ମୁଁ ସ୍ତବ୍ଧ ହୋଇ ବସି ଯାଇଥିଲି ବେଶ୍ କିଛି ସମୟ । ମଉସା ଆଜି ଆଉ ନାହାନ୍ତି ସତ; କିନ୍ତୁ ତାଙ୍କର ସ୍ନେହଶୀଳ ସ୍ମୃତି ମୋ ଭିତରେ ସେହିପରି ସଜୀବ ରହିଛି । ତାଙ୍କ କଥା ଅନ୍ୟ କାହା ମୁହଁରୁ ଶୁଣିଦେଲେ ବା ନିଜର ମନେ ପଡ଼ିଗଲେ ସ୍ୱତଃ ସେହି ହସ ହସ ଶାନ୍ତ, ଉଦାର, କଲ୍ୟାଣମୟ ମୁହଁଟି ମୋ ଆଖି ଆଗରେ ରୂପ ନେଇଯାଏ । ମୁଁ ପ୍ରଣାମ କରେ ।

୧୦୨, ଶହୀଦନଗର, ଭୁବନେଶ୍ୱର - ୭

# ଭିନ୍ନ ଏକ ମଣିଷ

ସୁନନ୍ଦା ବରାଳ

ଜୟକୃଷ୍ଣ ମହାନ୍ତି ଭିନ୍ନ ଏକ ମଣିଷ ଥିଲେ। ସ୍ୱର୍ଗତାଃ ମାଳତୀ ଚୌଧୁରୀ (ନୂମା) ଚାଲିଯିବା ପରେ ମୋ ଭିତରେ ଓ ଆମ କର୍ମୀ ମହଲରେ ଦୁଃଖ ଓ ଶୋକର ଛାୟା ଖେଳି ଯାଇଥିଲା। କର୍ମୀ ଭାଇ ଭଉଣୀଙ୍କ ପାଖରେ ରହି ନୂମା ସେମାନଙ୍କୁ ଶକ୍ତି ଓ ସାହସ ଯୋଗାଇ ଦେଉଥିଲେ। ଦୀପ ପ୍ରଜ୍ୱଳନର ଇନ୍ଧନ ଯୋଗାଇ ଦେବା ଭଳି ଆମ ସମସ୍ତଙ୍କୁ ସ୍ନେହ, ଶ୍ରଦ୍ଧା, ଶକ୍ତି, ସାହସ ଓ ପ୍ରେରଣା ଯୋଗାଉଥିବା ନୂମାଙ୍କ ମୃତ୍ୟୁରେ ଯେତେବେଳେ ଆମ୍ଭେମାନେ ମା' ଛେଉଣ୍ଡ ହୋଇ ଯାଇଥିଲୁ ନୂମାଙ୍କ ସ୍ଥାନରେ ଆଉ ଜଣେ ନୂମା ଜୟୀଭାଇଙ୍କ ରୂପରେ ଆମ ଆଗରେ ଉଭା ହେଲେ। ଆମେମାନେ ପୁନର୍ବାର ସେଇ ଶକ୍ତି, ଉତ୍ସାହ ଓ ଉଦ୍ଦୀପନା ନେଇ ପୁଣି ଦୃଢ଼ ହୋଇ ଛିଡ଼ା ହୋଇପାରିଲୁ।

ଜୟୀଭାଇ ସମଗ୍ର ସର୍ବୋଦୟ ପରିବାରର ଜଣେ ମୁରବୀଥିଲେ। ୧୯୮୬ ମସିହା ପୂର୍ବରୁ ତାଙ୍କୁ ଭଣା ଅଧିକେ ଜାଣିଥିଲି। ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ନବଜୀବନ ମଣ୍ଡଳ ପରିବାର ପରିସରଭୁକ୍ତ ହେଲି ତାଙ୍କ ସହ ମୋର ପରିଚୟ ଏବଂ ଭାବ ବଢ଼ିଲା। ତାଙ୍କର ବିଶାଳ ବ୍ୟକ୍ତିତ୍ୱ ଓ ମହାନୁଭବତା ମୁଁ ଧୀରେ ଧୀରେ ଅନୁଭବ କଲି। ସେ ଥିଲେ ଓଡ଼ିଶାର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ ଆନ୍ଦୋଳନର ଜଣେ ଦକ୍ଷ ସାରଥୀ। ତାଙ୍କର କର୍ମମୟ ସେବାର ଜୀବନ ଢ଼େର ଲମ୍ବା ଓ ପ୍ରସାରିତ। ସେ ସମସ୍ତ କାଗଜ କଲମରେ ଲେଖିବାର ଯୋଗ୍ୟତା ମୋର ନାହିଁ। ମର୍ଯ୍ୟାଦାର ସହିତ କର୍ମୀମାନେ କିପରି କାମ କରିବେ ସେଥିପାଇଁ ସେ ସମସ୍ତଙ୍କୁ ଶକ୍ତି, ସାହସ, ପ୍ରେରଣା ଓ ଉତ୍ସାହ ଦେଉଥିଲେ। ଉପରେ ସେ ଖୁବ୍ ଦୃଢ଼ମନା ଥିଲେ ମଧ୍ୟ ଭିତରେ ସେ ଖୁବ୍ ନରମ ଥିଲେ। କାର୍ଯ୍ୟ କ୍ଷେତ୍ରରେ ନୂମାଙ୍କ ସହିତ ଆଳାପ ଆଲୋଚନା କଲାବେଳେ କାଳେ କେଉଁଠି ଭୁଲ୍ ଭଟକା ରହିଯିବ ସେଥିପାଇଁ ସବୁବେଳେ ମନରେ ଭୟ ରହୁଥିଲା। କିନ୍ତୁ ଜୟୀଭାଇଙ୍କୁ ଆମର ସମସ୍ୟା ଜଣାଇବାରେ ଭୟଭ୍ରାନ୍ତି ଆସେ ନାହିଁ। କର୍ମୀମାନଙ୍କ ଭୁଲ ତ୍ରୁଟିକୁ ଧୈର୍ଯ୍ୟର ସହିତ ଶୁଣିବେ ଏବଂ ତା'ର ସମାଧାନର ରାସ୍ତା ବାହାର କରିଦେବେ। କଳାହାଣ୍ଡି, ଫୁଲବାଣୀ ଓ ଗଜପତି ପ୍ରଭୃତି ଦୁର୍ଗମ ମାଳ ଅଞ୍ଚଳକୁ ଯାଇ କାମ କରିବାକୁ କର୍ମୀମାନେ ଭୟ ଓ କୁଣ୍ଠାବୋଧ କରୁଥିବା ବେଳେ ଜୟୀଭାଇ ନଛୋଡ଼ ବନ୍ଧାହୋଇ କର୍ମୀ ଭଉଣୀମାନଙ୍କ ପଛରେ ଲାଗିଥିବେ। ଶେଷରେ ନଯିବା ଲୋକ ମଧ୍ୟ ଅଣ୍ଟାଭିଡ଼ି କର୍ମକ୍ଷେତ୍ରକୁ ବାହାରିବ। ମୁଁ ଏହାର ଅନୁଭବୀ ଓ ଭୁକ୍ତଭୋଗୀ।

ମୃତ୍ୟୁଶଯ୍ୟାରେ ଥାଇ ମଧ୍ୟ କେଉଁ ଜିଲ୍ଲାରେ କ'ଣ ସମସ୍ୟା ଟିକିନିଖ ଖବର ସେ ବରାବର ରଖୁଥିଲେ। ତାଙ୍କର ଜାଣିବାର ଆଗ୍ରହ ଓ ଉତ୍କଣ୍ଠା ଖୁବ୍ ପ୍ରଖର ଥିଲା। କନ୍ଧମାଳ ଜିଲ୍ଲାର ୨୦୦୮ ମସିହାର ଦଙ୍ଗାର ପ୍ରଳୟଙ୍କରୀ ଘନଘଟା ଭିତରେ

କଯ୍ୟୀଭାଇ ଦେହତ୍ୟାଗ କଲେ। ମୃତ୍ୟୁ ପୂର୍ବରୁ ଯଦି ଏ ଘଟଣା ଘଟିଥାନ୍ତା କିମ୍ବା ତାଙ୍କ କାନରେ ଏ ଖବର ପଡ଼ିଥାନ୍ତା ବୋଧହୁଏ ସେ ଶାନ୍ତିରେ ଶେଷ ନିଶ୍ୱାସ ମାରି ପାରି ନଥାନ୍ତେ। କନ୍ଧମାଳ ଜିଲ୍ଲାରେ ତାଙ୍କ ଆତ୍ମା ଘୁରି ବୁଲିଥାନ୍ତା। ଶାନ୍ତି ଓ ସଦ୍‌ଭାବନା ଫେରାଇ ଆଣିବା ପାଇଁ ବିଭିନ୍ନ ଉଦ୍ୟମ କରିଥାନ୍ତେ। କର୍ମୀମାନଙ୍କୁ ବସାଇ ଦିଅନ୍ତେ ନାହିଁ। ମୁଁ ଗତ ୨୦୦୮ର ଅଗଷ୍ଟ ମାସର ଭୟଙ୍କର ଦଙ୍ଗା ଭିତରେ କନ୍ଧମାଳରେ ଥାଇ ଶାନ୍ତି ସଦ୍‌ଭାବନାର ବାଟ ଖୋଜୁଥିବା ବେଳେ କଯ୍ୟୀଭାଇଙ୍କ ସ୍ୱର୍ଗବାସ ହୋଇଯିବା ଖବର ପାଇ ଦୁଃଖରେ ମର୍ମାହତ ହୋଇ ପଡ଼ିଲି। ଏତେ ଦୂରରେ ଥାଇ ଆମ୍ଭେମାନେ ଅଶ୍ରୁଜଳରେ କଯ୍ୟୀଭାଇଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ଈଶ୍ୱରଙ୍କୁ ସର୍ବଧର୍ମ ପ୍ରାର୍ଥନା କଲୁ। ଭଗବାନଙ୍କୁ ଜଣାଇଲୁ ସେ "ଭିନ୍ନ ମଣିଷ"ଟି ସବୁଦିନ ପାଇଁ ଆମ୍ଭ ମାନଙ୍କ ପାଖରେ ଅମର ହୋଇ ରହିଥାଉ।

**କୋଟଗଡ଼ ସମାଜ ସେବାକେନ୍ଦ୍ର, କନ୍ଧମାଳ।**

●●

**ଜାତି ପ୍ରେମ ବହ୍ନି, ପ୍ରଜ୍ୱଳିତ କର**
**ସ୍ୱାର୍ଥକୁ ଦିଅ ଆହୁତି,**
**ସ୍ୱାର୍ଥମେଧ ଯଜ୍ଞେ ଚାରିଆଡ଼େ ନାଚ**
**ଛାତିକି ମିଶାଇ ଛାତି।**

**- କୁଳବୃଦ୍ଧ ମଧୁସୂଦନ**

# ମଉସାଙ୍କ ସ୍ମରଣେ

ଅନୀଲ କୁମାର ଦାସ

କାତସ୍ୟହି ଧ୍ରୁବୋ ମୃତ୍ୟୁ, ଧ୍ରୁବଂ ଜନ୍ମ ମୃତସ୍ୟଚ୍- ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କର ମୁଖ ନିସୃତ ବାଣୀ। ସର୍ବଜନ ବିଦିତ ଚିରନ୍ତନ ସତ୍ୟ। ତଥାପି ଯେତେବେଳେ ମନୁଷ୍ୟର କେହି ନିକର ପରମ ହିତୈଷୀ, ଦୁନିଆ ରଙ୍ଗମଞ୍ଚରୁ ଅପସରି ଯାଏ ସେତେବେଳେ ମଣିଷର ଅନ୍ତରାତ୍ମା ଶୋକରେ ଅଭିଭୂତ ହୋଇଯାଏ। ତାକୁ ଲାଗେ ଯେପରି ଦୁନିଆରେ ସେ ହଠାତ୍ ଏକୁଟିଆ, ତା'ର ସମସ୍ତ ସମ୍ପତ୍ତି ସିଏ ହରାଇଛି। ୨୦୦୮ ମସିହା ଅଗଷ୍ଟ ୨୫ ତାରିଖ ଦିନ ମୋର ସେହି ଅବସ୍ଥା ହୋଇଥିଲା। ମୋର ନିକର ଅତି ଆପଣାର ସୁଖ, ଦୁଃଖରେ ପଥପ୍ରଦର୍ଶକ ପିତୃତୁଲ୍ୟ ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି ମୋତେ ଏକୁଟିଆ କରି ବୈକୁଣ୍ଠ ଧାମକୁ ଚାଲିଗଲେ। ତାଙ୍କ ବିନା ମୋ ଜୀବନରେ ଯେଉଁ ଅପୂରଣୀୟ ସ୍ଥାନ ସୃଷ୍ଟି ହେଲା ତାହା ଅନ୍ୟ କାହା ଦ୍ୱାରା ପୂରଣ ହେବା ସମ୍ଭବ ପର ନୁହେଁ। ମୋର ଆପଦ ବିପଦରେ ସେ ମୋତେ ବଳ ଯୋଗାଇ ଦେଉଥିଲେ ଏବଂ ବିପଦକୁ ସାମନା କରିବାପାଇଁ ନୈତିକ ସାହସ ପ୍ରଦାନ କରୁଥିଲେ। ଜୟୀମଉସା ଓ କିରଣ ମାଉସୀଙ୍କ ଠାରୁ ପାଇଥିବା ସାହାଯ୍ୟ, ସହାନୁଭୂତି, ସ୍ନେହ, ଶ୍ରଦ୍ଧା ମୋ ଜୀବନ ଗଠନରେ ସାହାଯ୍ୟ କରିଥିଲା। ତେଣୁ ସେମାନେ ମୋ ପାଇଁ ପରମ ପୂଜ୍ୟ ଓ ମହନୀୟ।

ମଉସା ତାଙ୍କ ଜୀବନରେ ବିଭିନ୍ନ ଉଚ୍ଚ ପଦପଦବୀରେ ରହି ଓଡ଼ିଶା ବାସୀଙ୍କର ସେବା କରିଛନ୍ତି। ଓଡ଼ିଶାର ଅନେକ ବରପୁତ୍ର ମାନଙ୍କ ସାହଚର୍ଯ୍ୟ ଲାଭ କରି ସେ ମଧ୍ୟ ନିଜକୁ ଜଣେ ନିଃସ୍ୱାର୍ଥପର, ତ୍ୟାଗୀ, ଦେଶ ସେବକ ଭାବେ ପ୍ରତିଷ୍ଠିତ କରି ପାରିଛନ୍ତି। ସେ ସ୍ୱାଭିମାନୀ ଥିଲେ ହେଲେ ଅହଂକାର ତାଙ୍କୁ ସ୍ପର୍ଶ କରି ପାରିନଥିଲା। ଉଭୟ ମଉସା ଓ ମାଉସୀ ଅତ୍ୟନ୍ତ ସରଳ, ନିଷ୍କପଟ ତଥା ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ। ତାଙ୍କର ଖାଦ୍ୟପେୟ ମଧ୍ୟ ଠିକ୍ ସେହିପରି ସାତ୍ୱିକ। କିନ୍ତୁ କର୍ମକ୍ଷେତ୍ରରେ ସେ ଅତି ସାହସୀ, ପରିଶ୍ରମୀ, ଦୃଢ଼ ପ୍ରତିଜ୍ଞ ଓ କର୍ତ୍ତବ୍ୟନିଷ୍ଠ। କୌଣସି କାମରେ ହାତ ଦେଲେ ଶେଷ ନକଲା ଯାଏଁ ସେଥିରୁ ନିବୃତ୍ତ ହେଉନଥିଲେ। ତାଙ୍କର ସମସ୍ତ କାମ ନିର୍ଭୁଲ ଓ ନିଖୁଣ। ଖୁଣ୍ଟି ନାଣ୍ଟି ଶେଷଯାଏଁ ଦେଖୁଥିବେ ଯେପରି କୌଣସି ଛୋଟ ତ୍ରୁଟୀ ମଧ୍ୟ ରହି ନଯାଏ।

ସମାଜରେ ଯିଏ ଅବହେଳିତ କିମ୍ବା ଯାହାର ପାରିବାରିକ ସ୍ଥିତି ଦୁର୍ବଳ ସେପରି ଆଗ୍ରହୀ ଯୁବକ ଓ ଛାତ୍ରଙ୍କୁ ସିଏ ସମାଜରେ ପ୍ରତିଷ୍ଠିତ କରିବା ପାଇଁ ଆଗଭର ହେଉଥିଲେ। ଓଡ଼ିଶାରେ ଏହିପରି ଅନେକ ତାଙ୍କ ଦ୍ୱାରା ଉପକୃତ ହୋଇଛନ୍ତି। ଏହାର ଉଦାହରଣ ମୁଁ ନିଜେ। ମୋ ଜୀବନରେ ମୁଁ ଆଜି ଯଦି ଏତେ ବାଟ ଅଗ୍ରସର କରି ପାରିଛି ତା'ର ଏକମାତ୍ର ଶ୍ରେୟ ମଉସା ମାଉସୀଙ୍କର। ସେମାନଙ୍କର ଅକୁଣ୍ଠିତ ସାହାଯ୍ୟ ସହାନୁଭୂତି ଯୋଗୁ ମୁଁ ଆଜି ଜଣେ ପେଷାଦାର ସାମ୍ବାଦିକ ହୋଇ ପାରିଛି ଓ ତାଙ୍କରି

ପ୍ରଦର୍ଶିତ ଆଦର୍ଶକୁ ପାଥେୟ କରି ଜୀବନ ଜୀବିକା ନିର୍ବାହ କରି ପାରୁଛି।

ମଉସାଙ୍କର ଭୁବନେଶ୍ୱର ବୁଦ୍ଧ ନଗରସ୍ଥିତ ଗୃହ ଏକ ପବିତ୍ର ଆଶ୍ରମ ଥିଲା। ବସୁଧୈବ କୁଟୁମ୍ବକମ୍ ନୀତିରେ ଏହି ଘରକୁ ସମାଜର ବିଭିନ୍ନ ବର୍ଗର ଲୋକମାନେ ତାଙ୍କ ପାଖକୁ ଆସୁଥିଲେ। ବିଜୁ ପଟ୍ଟନାୟକ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ସଦାଶିବ ତ୍ରିପାଠୀ ଓ ନିଳମଣୀ ରାଉତରାୟଙ୍କ ଭଳି ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ରମାଦେବୀ, ମାଳତୀ ଦେବୀ, ତୁଳସୀ ମୁଣ୍ଡା, ବିଶ୍ୱନାଥ ପଟ୍ଟନାୟକ ଏବଂ ନାଗଭୂଷଣ ପଟ୍ଟନାୟକ ପ୍ରମୁଖ ସମାଜସେବୀ ତାଙ୍କର ପରମ ବନ୍ଧୁ ଥିଲେ ଏବଂ ତାଙ୍କୁ ଖୁବ୍ ଭଲ ପାଉଥିଲେ। ସେମାନେ ସମସ୍ତେ ବହୁଥର ତାଙ୍କ ଘରକୁ ଆସି ଓଡ଼ିଶାର ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା ମଧ୍ୟ କରୁଥିଲେ। ବିଜୁବାବୁ ତାଙ୍କ ବଗିଚାରେ ଥିବା ପିଜୁଳୀ ଗଛରେ ଚଢ଼ି ପିଜୁଳୀ ତୋଳି ଖାଉଥିବାର ମୁଁ ଦେଖିଛି। ମଉସାଙ୍କ ଅବର୍ତ୍ତମାନରେ ତାଙ୍କର ସ୍ମୃତି ମୋ ଭଳି ଅନେକ ଲୋକ ସାରାଜୀବନ ସାଇତି ରଖିବେ ନିଶ୍ଚୟ। ମଉସା ! ମୁଁ ଆପଣଙ୍କ ଅନାବିଳ ଶ୍ରଦ୍ଧା ଓ ଭଲ ପାଇବାକୁ, ଝୁରୁଥିବି ଦିନ, ମାସ ବର୍ଷ, ମୋ ଜୀବନର ଶେଷ ମୁହୂର୍ତ୍ତ ଯାଏଁ।

ସାମ୍ବାଦିକ, ଗଜପତି ନଗର, ପୁରୀ।

●●

**ବନ୍ଦେ ଉତ୍କଳ ଜନନୀ**
**ଚାରୁ ହାସ୍ୟମୟୀ, ଚାରୁ ଭାଷମୟୀ ଜନନୀ ଜନନୀ....**
**ପୂତ ପୟୋଧି ବିଧୌତ ଶରୀର।**
**ତାଳ-ତମାଳ ସୁଶୋଭିତ ତୀର**
**ଶୁଭ୍ର ତଟିନୀ-କୂଳ-ଶିଖର ସମୀର। ଜନନୀ ... ଜନନୀ ... ଜନନୀ ...**

**- କାନ୍ତକବି ଲକ୍ଷ୍ମୀକାନ୍ତ**

# ଗାନ୍ଧୀ-ସଙ୍ଗଠନ କାର୍ଯ୍ୟର ସମର୍ପିତ ସୈନିକ

**ଡ଼କ୍ଟର ପାବକ କାନୁନ୍‌ଗୋ**

ଜୟକୃଷ୍ଣ ମହାନ୍ତିଙ୍କ କର୍ମମୟ ତ୍ୟାଗପୂତ ଜୀବନ କଥା ଆଲୋଚ଼ନା କଲାବେଳେ ଗାନ୍ଧିଜୀଙ୍କ କଥା ଆପେ ଆପେ ମନକୁ ଆସି ଯାଉଛି। ବାପୁଜୀ ମାଟି ପିଣ୍ଡଳାରୁ ମଣିଷ ଗଢ଼ି ଦେଉଥିଲେ ବୋଲି ଯାହା କୁହାଯାଏ ତାହାର ପ୍ରମାଣ ପାଇବାକୁ ହେଲେ ଜୟୀବାବୁଙ୍କ ଜୀବନ କାହାଣୀକୁ ପରୀକ୍ଷା କରିବାକୁ ପଡ଼ିବ। ପିଲାଦିନୁ ଗାନ୍ଧି ମହକରେ ଆକର୍ଷିତ ହେବାର ସୁଯୋଗ ତାଙ୍କର ତ ହୋଇଥିଲା- ଗାନ୍ଧି ପରବର୍ତ୍ତୀ ଭାରତ ବର୍ଷରେ ଗାନ୍ଧି ଆନ୍ଦୋଳନର ଜଣେ ନିରବ ସୈନିକ ଭାବରେ ସେବାକୁ ନିଜ ଜୀବନର ବ୍ରତ ଭାବରେ ଧରିନେଇ ସେ ଯେପରି ସମର୍ପିତ ଜୀବନକୁ ଆଦରି ନେଲେ ସେଥିପାଇଁ ଆମ ଜାତୀୟ ଜୀବନରେ ତାଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି ହୋଇଗଲା। ଗାନ୍ଧି-ଢ଼ାଞ୍ଚାରେ ନିଜ ଜୀବନକୁ ଗଢ଼ି ତୋଳିବା ଭିତରେ ଓଡ଼ିଶାର ଶହ ଶହ ସଂଗଠନ କର୍ମୀଙ୍କ ପାଇଁ ସେ ହୋଇଗଲେ ପ୍ରେରଣାର ଉତ୍ସ। ଦିନେ ପ୍ରତ୍ୟକ୍ଷ ରାଜନୀତିରେ ଥିଲେ ମଧ୍ୟ ସେଥିରୁ ଏକ ପ୍ରକାର ସନ୍ୟାସ ଗ୍ରହଣ କରି ସେବା ଓ ତ୍ୟାଗର ତାଙ୍କର ଉତ୍ସର୍ଗୀକୃତ ଜୀବନଧାରା ପାଇଁ ସେ ଅନେକଙ୍କ ସ୍ମୃତିରେ ଯେ ସ୍ଥାୟୀଭାବରେ ରହିଯିବେ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଜୟକୃଷ୍ଣଙ୍କ ଜୀବନାଦର୍ଶ ସଂପର୍କରେ ସ୍ପଷ୍ଟ ଚ଼ିତ୍ର ପାଇବାକୁ ହେଲେ ଗାନ୍ଧିଜୀଙ୍କ ସଂଗଠନ କାର୍ଯ୍ୟକ୍ରମ ବିଷୟ ଆଲୋଚ଼ନା କରିବାକୁ ହେବ। କାରଣ ତାହାରି ଭିତରୁହିଁ ତାଙ୍କର ବ୍ୟକ୍ତିତ୍ୱ ବିକଶିତ ହୋଇଥିଲା।

ଗାନ୍ଧିଜୀଙ୍କ ଅବର୍ତ୍ତମାନରେ ସେ ଆରମ୍ଭ କରିଥିବା ସଂଗଠନ କାର୍ଯ୍ୟ ଗୁଡ଼ିକୁ କିପରି ଚ଼ଳାଇବାକୁ ପଡ଼ିବ ସେ ସମ୍ପର୍କରେ ଦୀର୍ଘ ଆଲୋଚ଼ନା ଓ ଚ଼ିନ୍ତନ ଚ଼ାଲିଲା। ହଜାର ହଜାର କର୍ମୀଙ୍କ ଭିତରେ ଗାନ୍ଧି କାମ ଭଳି ଦେଶ ଗଠନ କାର୍ଯ୍ୟକ୍ରମରେ ସାମିଲ ହେବାପାଇଁ ଯେତେ ସ୍ପୃହା ଓ ଉତ୍ସାହ ଦରକାର ତାହା କିପରି ସୃଷ୍ଟି ହେବ ସେଥିପାଇଁ ମଧ୍ୟ ବିଭିନ୍ନ ସ୍ତରରେ ଉଦ୍ୟମ ଚ଼ାଲିଥାଏ। ସତ୍ୟ ଓ ଅହିଂସାକୁ ଆଧାର କରି ଏକ ଶୋଷଣମୁକ୍ତ, ଜାତିପ୍ରଥା ରହିତ ସମାଜ ପ୍ରତିଷ୍ଠା ଲକ୍ଷ୍ୟରେ ସର୍ବସେବା ସଂଘ ଅନୁଷ୍ଠାନ ଗଢ଼ାଯିବ ବୋଲି ସ୍ଥିର ହେଲା।

ପରବର୍ତ୍ତୀ ସମୟରେ ଗାନ୍ଧୀ ବିଚ଼ାରଧାରାରେ ବିଶ୍ୱାସ ରଖିଥିବା ଅନେକ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନ ମାନଙ୍କ କରିଆରେ ଦେଶରେ ସାଂପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା, ଅସ୍ପୃଶ୍ୟତା ନିବାରଣ, ଜାତିପ୍ରଥାର ବିଲୋପ, ନିଶା ନିବାରଣ, ଖଦୀ ଓ ଗ୍ରାମୋଦ୍ୟୋଗର ପ୍ରସାର, ମୌଳିକ ଶିକ୍ଷାର ବିସ୍ତାର, ମହିଳା ସଶକ୍ତି କରଣ, ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା, ଆଞ୍ଚଳିକ ଭାଷାର ବିକାଶ, ଅର୍ଥନୈତିକ ସମାନତା ପାଇଁ ପ୍ରଚ଼େଷ୍ଟା, ଆଞ୍ଚଳିକ ଭାଷା ଓ ମାତୃଭାଷାର ପ୍ରଚ଼ାର, କୃଷିର ଉନ୍ନତ, ଶିଳ୍ପ ଶ୍ରମିକଙ୍କ ସ୍ୱାର୍ଥରକ୍ଷା,

ଆଦିବାସୀ, ହରିଜନ ଓ ଦଳିତଙ୍କ ଉନ୍ନତି ଆଦି ଦିଗରେ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନିଆଗଲା। ଓଡ଼ିଶାରେ ଏ ପ୍ରକାର ବିଭିନ୍ନ କାର୍ଯ୍ୟକ୍ରମରେ ଜୟକୃଷ୍ଣ ବାବୁ ସଦାସର୍ବଦା ଆଗରେ ଥିଲେ। ସକ୍ରୀୟ ରାଜନୀତି ପ୍ରତି ବିତସ୍ପୃହ ଜୟକୃଷ୍ଣ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ ଧରି ଅନେକ ଗାନ୍ଧିବାଦୀ ଅନୁଷ୍ଠାନର ପ୍ରମୁଖ କର୍ମକର୍ତ୍ତା ଭାବରେ ଏକ ଶୋଷଣମୁକ୍ତ ସମାଜ ଗଠନ ପାଇଁ ତାଙ୍କର ସଂଗ୍ରାମ ଜାରି ରଖିଥିଲେ। ତାଙ୍କର ବିୟୋଗ ନିଶ୍ଚିତ ଭାବେ ଆମ ରାଜ୍ୟ ପାଇଁ ଏକ ଅପୂରଣୀୟ କ୍ଷତି। ବହୁ ବର୍ଷ ତଳେ କୁମାରପ୍ପା କହିଥିଲେ ଏ ଦେଶର ପ୍ରତ୍ୟେକ ସଂଗଠନ କର୍ମୀ ମହାତ୍ମାଗାନ୍ଧିଙ୍କ ପ୍ରଦର୍ଶିତ ଅହିଂସା ପ୍ରତିଷ୍ଠା ପାଇଁ ଗୋଟିଏ ଗୋଟିଏ ପରମାଣୁ ବୋମାରେ ପରିଣତ ହୋଇଯାନ୍ତୁ। ପ୍ରକୃତରେ ଜୟକୃଷ୍ଣ ମହାନ୍ତି ଥିଲେ ଏହିପରି ଗୋଟିଏ ଶକ୍ତିଶାଳୀ ପରମାଣୁ ବୋମା।

୧୪୪୩(ବି) ସେକ୍ଟର-୬, ସି.ଡ଼ି.ଏ., କଟକ।

●●

ତୁଙ୍ଗ ଶିଖରୀଚୂଳ କୁଞ୍ଜ କାନନମାଳ
ପୂଣ୍ୟ ଜଳଧି-ଜଳ ଖେଳିଉଠେ ସଘନେ।
ପ୍ରାଚୀ ଗଗନ ଶିରେ ଭାସି କନକ ନୀରେ
ଆସ ତପନ ଉଇଁ ଏ ଉତ୍କଳେ-ଭୁବନେ।

- ଗୋଦାବରିଶ

# ସ୍ମୃତିରୁ ଖିଅଟିଏ

ହଳଧର ଦାସ

କର୍ଯ୍ୟୀଭାଉ ୧୯୪୨ ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନରେ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ବ୍ରହ୍ମପୁର ଜେଲ୍‌ରେ ୬ ନମ୍ବର ୱାର୍ଡରେ ରହିଲେ । ମୁଁ ମଧ୍ୟ ଆନ୍ଦୋଳନରେ ଯୋଗଦେଇ କାରାବରଣ କଲି । ମୁଁ ପ୍ରଥମେ କର୍ଯ୍ୟୀଭାଇଙ୍କୁ ବ୍ରହ୍ମପୁର ଜେଲ୍‌ରେ ଦେଖିଲି । ଜେଲ୍‌ରେ ଥିବା ସମୟରେ ମୋତେ ଭୀଷଣ ମେଲେରିଆ ହୋଇଥିଲା ଏବଂ ଦେହସାରା କାଛୁ, କୁଣ୍ଡିଆ ହୋଇଥିଲା । ମୋତେ କେନ୍ଦୁପାଟଣା ଅଂଚଳର ବ୍ରଜସୁନ୍ଦର ମିଶ୍ର ହଳଦୀ ମାଖିବା ପାଇଁ ପରାମର୍ଶ ଦେଲେ । ଏହି କାମଟା କିଏ କରିବ ବୋଲି ଆଲୋଚନା ହେଲା । ଶେଷରେ କର୍ଯ୍ୟୀ ଭାଇ ହଳଦୀ ବାଟିଲେ ଏବଂ ମୋ ଦେହସାରା ମାଖିଲେ । ମୋତେ ବହୁତ ଆରାମ ଲାଗିଲା । ଏବଂ କିଛିଦିନ ଭିତରେ ମୋର ରୋଗ ଭଲ ହୋଇଥିଲା ।

କର୍ଯ୍ୟୀଭାଇ ଜେଲ୍‌ରେ ଥିବା ସମୟରେ ବିଭିନ୍ନ ମହାପୁରୁଷ ତଥା ବିପ୍ଳବୀ ମାନଙ୍କର ଜୀବନୀ ପୁସ୍ତିକା ପଢ଼ି ଶୁଣାଉଥିଲେ । ପୁରୀର ପଦ୍ମ ଚରଣ ସାମନ୍ତସିଂହାର ଚାଉଳ ଭଜା କରନ୍ତି । ଆମ୍ଭେ ସବୁ ମିଶି ଖାଉ । ନଭେମ୍ବର ୫ ତାରିଖ ୧୯୪୨ ମସିହାରେ ଏକ ବଡ଼ ଧରଣର ଝଡ଼ବାତ୍ୟା ହେଲା । ସେତେବେଳେ ଜେଲ୍‌ର ପାଚେରୀ କିଛି ଅଂଶ ଭାଙ୍ଗି ଯାଇଥିଲା । ପାଚେରୀ ଭାଙ୍ଗିଯିବା ଯୋଗୁ ଜଣେ ଜେଲ୍ ୱାର୍ଡର ବହୁ କ୍ଷତି ସହିଲେ । ତାଙ୍କୁ ମଧ୍ୟ କର୍ଯ୍ୟୀଭାଇ ସାହାଯ୍ୟ କଲେ । ସେ ଯେତେବେଳେ ବିଧାୟକ ଥିଲେ ସେତେବେଳେ ମୁଁ ଚରଖା ସଂଘରେ କାମ କରୁଥିଲି । ସେହି ସମୟରେ ଅନନ୍ତ ପଣ୍ଡା ଚରଖା ସଂଘର ସଂପାଦକ ଥିଲେ । ମୁଁ କାମ କରୁଥିବା ସମୟରେ ଏତେ କମ ଦରମା ଥିଲା ଯେ ଚଳିବା କଷ୍ଟକର ହେଉଥିଲା ।

ଏହି ସମସ୍ୟାଟିକୁ କର୍ଯ୍ୟୀବାବୁଙ୍କୁ କହିଲି । ସେ ଅନନ୍ତ ବାବୁଙ୍କ ସହ କଥା ହେଲେ ଏବଂ ମୋର ଦରମା ବଢ଼ାଇଲେ ।

ମୋର କର୍ଯ୍ୟୀଭାଇଙ୍କ ସହ ସଂପର୍କ ଅତି ନିବିଡ଼ ଥିଲା । ମୁଁ ଯେଉଁଠି ଥାଏ ନା କାହିଁକି ମୋର ଖବର ସବୁବେଳେ ରଖିଥାନ୍ତି । ରମାକାନ୍ତ ବାବୁଙ୍କ ଠାରୁ ଶୁଣିଲି ଯେ ତାଙ୍କ ଉପରେ ଏକ ସ୍ମରଣିକା ବାହାରୁଚି ବୋଲି, ଯାହା ମନେ ପଡ଼ିଲା ଦୁଇପଦ ଲେଖିଦେଲି । ଭଗବାନଙ୍କ ଠାରେ ପ୍ରାର୍ଥନା କରୁଛି ତାଙ୍କର ଅମର ଆତ୍ମାର ସଦ୍‌ଗତି ହେଉ ।

ସ୍ୱାଧୀନତା ସଂଗ୍ରାମୀ, କୃଷ୍ଣ ନଗର

••

# ପ୍ରେମ ଅର୍ଘ୍ୟର ଆରତୀ କେବଳ ତମ ପାଇଁ

ଡ଼ାଃ ସବିତା ମହାନ୍ତି

ବାପା, ତମକୁ ସଶରୀରେ ନଦେଖିବାର ଏକ ବର୍ଷ ହୋଇଗଲା । ଚିରାଚରିତ, ପାରମ୍ପରିକ ରୀତିରେ ବର୍ଷେ ପରେ ଶ୍ରାଦ୍ଧ ପାଳିତ ହେବ । ଶ୍ରାଦ୍ଧର ଅଭିଧାନ ସମ୍ମତ ଆକ୍ଷରିକ ଅବା ତାତ୍ତ୍ୱିକ ବ୍ୟାଖ୍ୟାନ ନକରି ଯେତିକି ମୋର ହୃଦବୋଧ ହୋଇଛି, ତା ହେଲା ଶ୍ରଦ୍ଧାରେ ଯାହା ଅର୍ପଣ କରାଯାଏ ତାହା ଶ୍ରାଦ୍ଧ । ହିନ୍ଦୁଶାସ୍ତ୍ର ମତେ ପରଲୋକଗତ ଆତ୍ମାର ଅବତରଣର ଦିନ-ଶ୍ରାଦ୍ଧ । ତେଣୁ ତାଙ୍କର ରୁଚି, ତାଙ୍କ ପ୍ରିୟଜନଙ୍କର ସମାବେଶ, ତାଙ୍କ ଆଦର୍ଶ ତଥା ଅଭିଳାଷକୁ ସମ୍ମାନ ଦେଉଥିବା ଓ ସେଥିରେ ବିଶ୍ୱାସୀ ଥିବା ସୁଧୀବୃନ୍ଦଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ମହତ୍ ସାନ୍ନିଧ୍ୟ ଲାଭ କରି ନିଜକୁ ଧନ୍ୟ ମନେ କରିବା । ତାଠାରୁ ଅଧିକ କଣ ବା କରି ଆମେ ନିଜ ଜୀବନକୁ ଧନ୍ୟ କରିପାରିବୁ ? କିନ୍ତୁ ମନରେ ପ୍ରଶ୍ନ ଉଠେ ଶ୍ରାଦ୍ଧ ତେବେ ବର୍ଷରେ ଥରେ ମାତ୍ର କାହିଁକି ? ପରଲୋକ ଗତ ଶୁଦ୍ଧାତ୍ମା ଏବଂ ଏକାନ୍ତ ଭାବେ ମନର ମଣିଷ ମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ମନେପକାଇବାର ଇଏ କି ବିଧାନ ? ସିଏ ତ ପ୍ରତି ମୁହୂର୍ତ୍ତରେ, ପ୍ରତିକ୍ଷଣରେ ପ୍ରତିଟି ନିଃଶ୍ୱାସ ପ୍ରଶ୍ୱାସ ଓ ପ୍ରତିଟି ହୃତ୍ସ୍ପନ୍ଦନରେ ଆମ ସହ ଓତଃପ୍ରୋତଃ ଭାବେ ଜଡ଼ିତ । ଦଶବର୍ଷ ତଳେ ବୋଉର ସ୍ଥୁଳ ଶରୀର ଆମଠାରୁ ଦୂରେଇଗଲା ଓ ତମେ ଯିବାର ମଧ୍ୟ ଏକବର୍ଷ ହୋଇଗଲା । ଏମିତି କୌଣସି ଗୋଟିଏ ଦିନ ନାହିଁ ଶଯ୍ୟାତ୍ୟାଗ ପରେ ଆଖି ଖୋଲୁଖୋଲୁ ତମ ଦୁହିଁଙ୍କର ସେଇ ନିଃସ୍ୱାର୍ଥ, ନିର୍ମଳ, ସ୍ନେହସିକ୍ତ, ଅମୃତଝରା ହସହସ ମୁହଁ ମୋ ଆଖିରେ ଭାସିନଯାଉଛି । ଏବେ ବି ନିଦ ଭାଂଗିଲେ ମୋ କାନରେ ଶୁଭୁଛି ଗାନ୍ଧିଜୀଙ୍କ ପ୍ରିୟ ଗୁଜୁରାଟୀ ଗୀତର କିଛି ଅଂଶ, ଯାହା ମୋର ହେତୁ ପାଇବା ଦିନୁ ତମେ ବହୁବାର ଆମକୁ ନିଦରୁ ଉଠାଇବା ବେଳେ ଆବୃତ୍ତି କରିବାର ମୁଁ ଶୁଣିଛି-

ଉଠ କାଗ ମୁସାଫିର ଭୋର ଭଇ
ଅବରୈନ କହାଁ ଯୋ ଶୋ ବତ ହୈ
ଯୋ ଶୋ ବତ ହୈ ସୋ ଖୋ ବତ ହୈ ।।
ଯୋ ଜାଗତ ହୈ ସୋ ପାବତ ହୈ ।।

ସାନବେଳେ ଗୀତର ଅର୍ଥ ବି ବୁଝାଇଛ ସାବଲୀଳ ଭାବେ । ଆଜି ଜୀବନର ଅପରାହ୍ନରେ ଅବଶ, କ୍ଲାନ୍ତ ଶରୀର ଯଦି କେତେବେଳେ ଶୋଇବାର ଉପକ୍ରମ କରେ ତମର ସଦା କର୍ମଚଞ୍ଚଳ, ବାର୍ଦ୍ଧକ୍ୟରେ ବି ଯୁବକ ସୁଲଭ କର୍ମତତ୍ପର, ନିରଳସ-ତେଜୋଦୀପ୍ତ ଚେହେରା ପାଖରେ ଠିଆହୋଇ ସତେଯେପରି କହେ "ଶୋଇବାର ସମୟ ହୋଇନି-ଆଗକୁ ଅନେକ କାମ ବାକି ଅଛି ।" ନିଦ ଭାଂଗିଯାଏ ।

ଦିନର ଚବିଶ ଘଣ୍ଟାର କାର୍ଯ୍ୟନିର୍ଘଣ୍ଟ ଭିତରେ କୌଣସି ମୁହୂର୍ତ୍ତ ନାହିଁ ଯେତେବେଳେ ବୋଉ ଓ ତମେ ମୋର ଚିନ୍ତା ଓ ଚେତନା ଭିତରେ ନରହୁଛ । ତମର ଶୁଦ୍ଧପୂତ, ପରିଷ୍କୃତ, ସାତ୍ତ୍ୱିକ ସାନାହାର, ଆଚାର, ବିଚାର, ପଠନ, ମନନ, ଚିନ୍ତନ, ଶୟନ ସବୁଥିରେ ତମେ ଥିଲ ଅତ୍ୟନ୍ତ ଶୁଦ୍ଧ, ସଂଯତ, ସୁଶୃଙ୍ଖଳିତ ଓ ପରିମାର୍ଜିତ । ଶଯ୍ୟାତ୍ୟାଗ ଠାରୁ ଶଯ୍ୟା ଗ୍ରହଣ ପର୍ଯ୍ୟନ୍ତ ମୋର ନିତ୍ୟ ନୈମିତ୍ତିକ

କର୍ମଧାରା ଭିତରେ ତାହାହିଁ ମୋର ଚିନ୍ତା ଚେତନାର ଉପଲବ୍ଧି। ତତ୍‌ସହ ମନରେ କ୍ଷୋଭ, ଗ୍ଲାନି ଓ ଅସହାୟବୋଧ ଆସେ- ତମପରି ସଂସ୍କାରବାଦୀ, ନୀତିନିଷ୍ଠ, ଜ୍ଞାନଦୀପ୍ତ ପିତାଙ୍କ ସନ୍ତାନ ହୋଇବି ତମର କିଛିଟା ଆଦର୍ଶରେ କାହିଁକି ଅନୁପ୍ରାଣିତ ହୋଇପାରିଲିନି ?

ପ୍ରାତଃ ଓ ସାଂଧ୍ୟକାଳୀନ ପ୍ରାର୍ଥନା ସମୟରେ କାଠ ଓ ପଥରର ଭଗବାନଙ୍କ ମୂର୍ତ୍ତିଠାରୁ ତମେ ଦୁହେଁ ନିଃସନ୍ଦେହରେ ହୋଇଛ ମୋର ଅଗ୍ରପୂଜ୍ୟ। ଆଶ୍ରମ ଭଜନାବଳୀର-

"ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ
ଶରୀର ଶ୍ରମ, ଅସ୍ୱାଦ, ସର୍ବତ୍ର ଭୟ ବର୍ଜନ,
ସର୍ବଧର୍ମ ସମାନତ୍ୱ, ସ୍ୱଦେଶୀ ସ୍ପର୍ଶ ଭାବନା,
ବିନମ୍ରବ୍ରତ"

ଏହି ଏକାଦଶ ବ୍ରତର ଅର୍ଥ ମୁଁ ଯେବେଠାରୁ ବୁଝିଲି ଓ ଚିନ୍ତାକଲି ସେବେଠାରୁ ଆଜିପର୍ଯ୍ୟନ୍ତ ଅନୁଭବ କରିଛି ଏହି ଏକାଦଶ ବ୍ରତର ଏକକ ସମାବେଶ କେବଳ ତମଠାରେ ହିଁ ସନ୍ନିବେଶିତ। ତାର ଦ୍ୱିତୀୟ ବିକଳ୍ପ ଭାବେ ମୁଁ ମୋ ମନରେ ଆଉ କାହାକୁ ସ୍ଥାନ ଦେଇ ପାରିନାହିଁ।

ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମ ନେଇଥିଲେ ବି ତମେ ଥିଲ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ। ଓଡ଼ିଶା, ବିହାର ଓ ବଙ୍ଗଳାରେ ରେକର୍ଡ ଭଂଗ କରିଥିଲ ନିଜର ଶିକ୍ଷାଗତ କୃତୀତ୍ୱ ଯୋଗୁଁ। ଦୁର୍ନୀତି ସହ ସାଲିସ ବିହୀନ ସାରାଜୀବନ ତମର ଥିଲା ସଂଗ୍ରାମରତ। ପରାଧୀନ ଭାରତରେ ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ ଠାରୁ ସ୍ୱାଧୀନ ଭାରତରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ଦୁର୍ନୀତି, ଅନାଚାର, ଶୋଷଣ ବିରୁଦ୍ଧରେ ସଂଗ୍ରାମ। ପରାଧୀନ ଭାରତରେ ବ୍ରିଟିଶରାଜ ବିରୁଦ୍ଧରେ ସ୍ୱରଉତ୍ତୋଳନ କରି କାରାବରଣ- ସ୍ୱାଧୀନ ଭାରତରେ ତତ୍‌କାଳୀନ କଂଗ୍ରେସ ସରକାରଙ୍କ ମନମୁଖୀ କୁଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଜରୁରୀକାଳୀନ ପରିସ୍ଥିତିରେ କାରାବରଣ। ଏହି ଆଜୀବନ ସଂଗ୍ରାମୀଙ୍କ ସହ ସମ୍ମୁଖ ସମରରେ ଅବତୀର୍ଣ୍ଣ ହେବାକୁ ଶେଷରେ ଜରା ଓ ବ୍ୟାଧି ମଧ୍ୟ ଭୟ କଲେ। କ୍ୟାନସର ଭଳି ମରଣାତ୍ମକ ବେମାରୀ, ପଶ୍ଚାତଭାଗରୁ, ଲୁକ୍‌କାୟିତ ଅବସ୍ଥାରେ ଗରିଲା ଆକ୍ରମଣ କଲେବି ସମ୍ମୁଖରେ ଆତ୍ମପ୍ରକାଶ କରି ନପାରି ପରୋକ୍ଷରେ ତମପାଖରେ ପରାଜୟ ହିଁ ବରଣ କଲା। ଶୈଶବର ଜିଜ୍ଞାସା, କୈଶୋରର ଉନ୍ମାଦନା, ଯୌବନଦୀପ୍ତ ଉଦ୍ଦାମତା ଓ ପ୍ରୌଢ଼ତ୍ୱର ଧୀମତ୍ତା ଓ ବିଦ୍‌ବତ୍ତା ପାଖରେ ରୋଗବ୍ୟାଧି ଓ ଜରାବସ୍ଥା ତମପାଖରେ ହାରମାନି ଗଲେ।

ଜନ୍ମାଷ୍ଟମୀ ଦିନ, ଜନ୍ମ ନେଇଥିଲ ବୋଲି ନାଁ ରଖାଯାଇଥିଲା ଜୟକୃଷ୍ଣ। ଦୁର୍ନୀତି ଓ ଅପରାଧୀକରଣ କବଳିତ ବିଭିନ୍ନ ସାମାଜିକ ରାଜନୈତିକ ତଥା ଅଣରାଜନୈତିକ ଅନୁଷ୍ଠାନରେ ବିଭିନ୍ନ ସମୟରେ ତମେ ପ୍ରବେଶ କରିଛ। ଆବର୍ଜନା ସଫାକରିବା ଥିଲା ତମର ଧର୍ମ ଓ କର୍ମ। ଛୋଟରୁ ବଡ଼ ପର୍ଯ୍ୟନ୍ତ ପ୍ରତ୍ୟେକ କାମରେ ଥିଲା ତମର ନିଖୁଣ ନୈପୁଣ୍ୟତା। ସେଥିପାଇଁ ତମର ଅତି ପ୍ରିୟ, ପ୍ରିୟ ଓ ଅପ୍ରିୟ ସମସ୍ତେ ତମକୁ ତାଙ୍କ ନିଜସ୍ୱ ଢଙ୍ଗରେ "ଛେନାରୁ ଚୋପାଛଡ଼ା" ବୋଲି କହିବାର ମୁଁ ଶୁଣିଛି। ସେସବୁ ଆବର୍ଜନା ସଫା କରିବା ଭିତରେ ଅନେକ ସମୟରେ ତମେ ଅଣନିଶ୍ୱାସୀ ହୋଇପଡ଼ିଛ ପାରିପାର୍ଶ୍ୱିକ ପ୍ରତିକୂଳତା ଭିତରେ ରହି। ସେ ସଫେଇ କାମ ତମକୁ କେତେ ସାମାଜିକ ପ୍ରତିଷ୍ଠା,

ପ୍ରତିପତ୍ତି ବା ସ୍ୱୀକୃତି ଦେଇଛି ତାକୁ ତମେ କେବେ ଚିନ୍ତା ମଧ୍ୟ କରିନ ଅଥଚ ନିଜର ଆଦର୍ଶ ଓ ନୈତିକତାର ଶୁଭ୍ରବସ୍ତ୍ରରେ ସେହି ଆବର୍ଜନାରୁ ବିନ୍ଦୁଏ ଛିଟା ମଧ୍ୟ ଯେପରି ନପଡ଼େ ସେଥିପାଇଁ ସଦାସତର୍କ ରହିଛ ଜୀବନର ଶେଷ ଅବସ୍ଥା ପର୍ଯ୍ୟନ୍ତ। ତମର ଜୀବିତାବସ୍ଥାରେ ଗାନ୍ଧିଙ୍କ ପରିକଳ୍ପିତ ଅଧର୍ମ,- ଦୁର୍ନୀତି ରହିତ, ଶୋଷଣମୁକ୍ତ ସମାଜ ଗଠନର ପରିକଳ୍ପିତ ଯୋଜନା ତମମାନଙ୍କର ସ୍ୱପ୍ନରେ ହିଁ ରହିଗଲା। ତମେ ତାର ସାକାର ରୂପ ଦେଖିପାରିଲିନି କାରଣ ତମେ ଦ୍ୱାପର ଯୁଗର କୃଷ୍ଣ ନଥିଲ-ଥିଲ କଳୀ ଯୁଗର ଜୟକୃଷ୍ଣ। ଯେଉଁଠି ସତ୍ୟ ଉପରେ ଅସତ୍ୟ, ଧର୍ମ ଉପରେ ଅଧର୍ମ, ସୁକର୍ମ ଉପରେ କୁକର୍ମର ଅଙ୍କୁଶ ବିହୀନ ପ୍ରାଧାନ୍ୟ ନ୍ୟାୟସିଦ୍ଧ। ଜୀବନର ଏହି ସଂଗ୍ରାମରେ ହିଁ କେବଳ ଅତି ଦୟନୀୟ ଭାବେ ତମେ ହାରିଗଲ।

ବାପା- ମୋର ପ୍ରତ୍ୟେକ ଦିନର ବିବିଧ କାର୍ଯ୍ୟାବଳୀ ମଧ୍ୟରେ ତମର ଅଭୁଲା, ଅଲିଭା, ଅମଳିନ, ଅମ୍ଳାନ ସତ୍ତାର ଉପଲବ୍ଧି। ହେତୁ ପାଇବା ଠାରୁ ଆଜିପର୍ଯ୍ୟନ୍ତ ମୋ ଜୀବନର ଅର୍ଦ୍ଧ ଶତାବ୍ଦୀର ସ୍ମୃତି ଚାରଣ ପାଇଁ ଏ କ୍ଷୁଦ୍ର ସୀମିତ ସ୍ମରଣିକାର କଳେବର ପର୍ଯ୍ୟାପ୍ତ ନୁହେଁ। ବୋଉ ଏବଂ ତମର ଜୀବନଚର୍ଯ୍ୟାର ମହାର୍ଘ୍ୟ ସ୍ମୃତି, ପ୍ରତିକ୍ଷଣ ଓ ପ୍ରତିମୁହୂର୍ତ୍ତରେ ମୋର ଚେତନ ଓ ଅବଚେତନ ମନକୁ ଉଦ୍‌ବେଳିତ କରୁଥାଉ ଓ ସେଥିରୁ ନିର୍ଯ୍ୟାସିତ ଶକ୍ତି, ନିଷ୍ଠା ଓ ଆଦର୍ଶବୋଧର ପରାକାଷ୍ଠା ଆମକୁ ତମ ପ୍ରଦର୍ଶିତ ମାର୍ଗରେ ପରିଚାଳିତ କରୁ- ମହିମାନ୍ୱିତ ଉତ୍କଳ ଦିଗ୍‌ବାରିଣୀ ଖୁଣ୍ଟି ପରି।

୧୫ ମାର୍ଚ୍ଚ ୨୦୦୯ ରବିବାର ସମ୍ବାଦରେ ଏକ ସାକ୍ଷାତକାର ସ୍ତମ୍ଭରେ ଜଣେ ସାମ୍ବାଦିକଙ୍କର ମହାତ୍ମାଗାନ୍ଧୀଙ୍କର କିଛି ବ୍ୟକ୍ତିଗତ ଜିନିଷ ଯଥା- ଚପଲ, ଚଷମା, ଘଣ୍ଟା ଇତ୍ୟାଦିକୁ ଜଣେ ପ୍ରବାସୀ ମଦ ବ୍ୟବସାୟୀ ନିଲାମ ଧରିବା ପ୍ରସଂଗରେ ଜଣେ ବରିଷ୍ଠ ଗାନ୍ଧିବାଦୀ ନେତାଙ୍କର ନାତିଦୀର୍ଘ ଉତ୍ତରର ଶେଷାଂଶ ଥିଲା- "ଚଟି, ଚଷମା, ଘଣ୍ଟା ପରି ଜିନିଷପତ୍ର ଯାହାକୁ ଇଂରାଜୀରେ "physical heritage" କୁହାଯାଇପାରେ ତାହା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ। ତାଙ୍କର ଅସଲ heritage ହେଉଛି ତାଙ୍କର ବିଚାରଧାରା ଯାହାକୁ ବଞ୍ଚାଇ ରଖିବା ଆଜିର ସବୁଠାରୁ ବଡ଼ ଆବଶ୍ୟକତା। ଆଜି ଆମ ନିକଟରେ ବୋଉ ଓ ତମ ପାଇଁ ତାହାହିଁ ପ୍ରଯୁଜ୍ୟ। ଆଜି ଅଗଷ୍ଟ ୨୫ ତାରିଖ- ତମର ପୂଣ୍ୟ ଶ୍ରାଦ୍ଧ ଦିବସରେ ମୋର ଭଗବାନଙ୍କ ଠାରେ ଏତିକି ପ୍ରାର୍ଥନା ବୋଉ ଓ ତମ ଦ୍ୱାରା ସପ୍ରେମ ଅଙ୍କୁରିତ, ସଯତ୍ନ ପାଳିତ, ଅନୁଶାସନର ଅର୍ଗଳି ଭିତରେ ପରିମାର୍ଜିତ ଓ ପରିବର୍ଦ୍ଧିତ "ଆମେ"-ତମରି ଦାୟାଦ ଓ ଉତ୍ତରାଧିକାରୀ ଏପରି କୌଣସି କାର୍ଯ୍ୟ ନକରୁ ଯଦ୍ୱାରା ତମର ପବିତ୍ର ଆତ୍ମା ଅଶାନ୍ତ ଓ ବ୍ୟଥିତ ହେବ। ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ନିଜକୁ ଏଥିପାଇଁ ଦୃଢ଼, ନିଷ୍ଠଳ ରଖିବା ପାଇଁ ତମର ଆଶୀର୍ବାଦର ହସ୍ତ ପ୍ରତିମୁହୂର୍ତ୍ତରେ ଆମ ମସ୍ତକ ସ୍ପର୍ଶ କରୁ। ତାହାହିଁ ହେବ ଆମର ପ୍ରେମ, ଭକ୍ତିର ଅର୍ଘ୍ୟରେ ତମ ପାଇଁ ଯଥାର୍ଥ ଆରତୀ।

ଏ-୪୦୭, ରାଜଧାନୀ ନର୍ସିଂହୋମ୍, ଶହୀଦ ନଗର, ଭୁବନେଶ୍ୱର-୭

●●



ଅତୁଟ ବନ୍ଧନ .... ନାତି ନାତୁଣୀଙ୍କ ମେଳରେ



ହସ ଲିଭିନି .... ମଥା ନଇଁନି ....



ରାଷ୍ଟ୍ରପତିଙ୍କ ଦ୍ୱାରା ସ୍ୱତନ୍ତ୍ର ଭାବେ ସମ୍ମାନିତ ହେବାପାଇଁ ଯାଉଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ରାଜ୍ୟ ଅତିଥି ଭବନରେ ବିଦାୟ ସମ୍ବର୍ଦ୍ଧନା ଜଣାଉଛନ୍ତି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ ଅର୍ଥମନ୍ତ୍ରୀ ଶ୍ରୀ ପଞ୍ଚାନନ କାନୁନଗୋ ।



ତୃତୀୟ ଚିନ୍ତାମଣି ପାଣିଗ୍ରାହୀ ସ୍ମୃତି ସମ୍ମାନ-୨୦୦୬ ପ୍ରଦାନ କରୁଛନ୍ତି ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର । ପାର୍ଶ୍ୱରେ ଅଛନ୍ତି କେନ୍ଦ୍ର ଶ୍ରମମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର ସାହୁ ଓ ରାଜ୍ୟ ଆଇନ୍ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ।

# ଜୟୀ ଭାଇଙ୍କ ସ୍ମରଣେ

**ପଦ୍ମଶ୍ରୀ ତୁଳସୀ ମୁଣ୍ଡା**

୧୯୬୧ ମସିହା କଥା । କେନ୍ଦୁଝର ଜିଲ୍ଲାରେ ଉତ୍କଳ ନବଜୀବନ ମଣ୍ଡଳ, ଅନୁଗୋଳ ଦ୍ୱାରା କେତେକ ସ୍ଥାନରେ ସେବାକେନ୍ଦ୍ର ଖୋଲାଯାଇ କାର୍ଯ୍ୟକ୍ରମ ଚାଲୁଥିଲା । ସେହି ସେବାକେନ୍ଦ୍ର ପରିଦର୍ଶନରେ ଉତ୍କଳ ନବଜୀବନ ମଣ୍ଡଳର ସଂପାଦକ ଶ୍ରୀଯୁକ୍ତ ଜୟକୃଷ୍ଣ ମହାନ୍ତି ଆସିଥିଲେ । ସେହି ପରିଦର୍ଶନ ସମୟରେ ଜଡ଼ିପଦା କେନ୍ଦ୍ରରେ ତାଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ସ୍ୱଳ୍ପ ସମୟ ସାକ୍ଷାତ ଓ କଥାବାର୍ତ୍ତାରେ ସେ ମୋତେ କହିଲେ ତୁମେ ଆଦିବାସୀ ଝିଅ, ସମାଜ ସେବା କରିପାରିବ ? ମୁଁ ତାଙ୍କ ପ୍ରଶ୍ନର ଉତ୍ତରରେ ହଁ ମାରିଲି ଏବଂ ତାଙ୍କ ସାଥୀରେ ଅନୁଗୁଳ ଯାଇଥିଲି । ସେଠାରେ ସମାଜ ସେବା କାର୍ଯ୍ୟ ପାଇଁ ତାଲିମ୍ ଗ୍ରହଣ କଲି ।

ଆଜକୁ ୪୮ ବର୍ଷ ବିତିଗଲାଣି । ମୁଁ ସେହିଦିନ ଠାରୁ ଜୟକୃଷ୍ଣ ମହାନ୍ତି (ଜୟୀଭାଇଙ୍କ) ସମ୍ପର୍କରେ ଆସିଅଛି ଓ ତାଙ୍କ ପରିବାର ସହିତ ମିଶିଛି ଓ ପରିବାରରେ ତାଙ୍କଠାରୁ ଭଉଣୀର ସ୍ନେହ, ଶ୍ରଦ୍ଧା ପାଇଥିଲି ।

ଜୟୀଭାଇଙ୍କ ସହିତ ମିଳାମିଶା ପରେ ଜାଣିଲି ସେ ଜଣେ ଶାନ୍ତ, ସରଳ, ନିଷ୍କପଟ ଓ ପରୋପକାରୀ ବ୍ୟକ୍ତି ଥିଲେ । ରାଗ, ଦ୍ୱେଷ, ହିଂସା ଓ ପରଶ୍ରୀକାତରତା ତାଙ୍କ ଅନ୍ତରରେ କାହାପ୍ରତି ନଥିଲା । ଉତ୍କଳ ନବଜୀବନ ମଣ୍ଡଳର ସଂପାଦକ, ସଭାପତି ଥିଲାବେଳେ ସେ ପ୍ରତ୍ୟେକ କର୍ମୀ ଭାଇ ଓ ଭଉଣୀ ମାନଙ୍କୁ ସ୍ନେହ, ଶ୍ରଦ୍ଧାରେ ବାନ୍ଧିରଖି କାମ ଆଦାୟ କରୁଥିଲେ ।

ମୁଁ ଜୟୀ ଭାଇଙ୍କ ପାଖାପାଖି ରହୁଥିଲି । କୌଣସି ସଭାସମିତି କାର୍ଯ୍ୟରେ ତାଙ୍କ ସହିତ ଯାଉଥିଲି । ତାଙ୍କ ଠାରୁ ବିଭିନ୍ନ ସାମାଜିକ କାମ କରିବା ପାଇଁ ପ୍ରୋତ୍ସାହନ ପାଇଅଛି ।

ସେହି ଶାନ୍ତ, ସରଳ ବ୍ୟକ୍ତିତ୍ୱ ଜୟୀଭାଇ ଆଜି ଆମ ପାଖରେ ନାହାଁନ୍ତି ସତ, କିନ୍ତୁ ତାଙ୍କର ସାମାଜିକ କାର୍ଯ୍ୟକ୍ରମ, ହସହସ ମୁଖମଣ୍ଡଳ ଆମ ପାଖରେ ଚିର ଅମର ହୋଇ ରହିବ । ମୁଁ ଭଗବାନଙ୍କ ନିକଟରେ ସେହି ଅମର ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରାର୍ଥନା କରୁଛି । ପୁଣିଥରେ ସେ ଏହି ଧରାଧାମକୁ ଓହ୍ଲାଇ ଆସି ସତ୍ୟ ପାଇଁ ସଂଗ୍ରାମ କରନ୍ତୁ । ଏହାହିଁ ମୋର କାମନା ।

**ଆଦିବାସୀ ବିକାଶ ସମିତି**
**ସେରେଣ୍ଡା, ବଡ଼ବିଲ, କେଉଁଝର ।**

••

# ବାପା

ସୋମା

ବାପାଙ୍କ ଶ୍ରାଦ୍ଧ ବାର୍ଷିକୀରେ ପ୍ରକାଶିତ ହେବାକୁ ଥିବା ସ୍ମରଣିକାରେ କିଛି ଟିକେ ଲେଖିବି ଭାବିଲା ବେଳେ ତାଙ୍କ ବିଷୟ କେଉଁଠୁ ଆରମ୍ଭ କରି କେଉଁଠି ଶେଷ କରିବି ତାର କୂଳ କିନାରା ମୁଁ ପାଉନି । ତାଙ୍କ ଜୀବନର ଆରମ୍ଭରୁ ଶେଷ ତ ଘଟଣାବହୁଳ । ଜୀବନରେ ବହୁଘାତ ପ୍ରତିଘାତର ସାମନା କରିଥିଲେ ମଧ୍ୟ ନିଜର ଅବିଚଳିତ, ନିର୍ଲିପ୍ତ, ନିରାଡ଼ମ୍ବର ଓ ସର୍ବଦା ପ୍ରଫୁଲ୍ଲିତ ସ୍ୱଭାବ ଯୋଗୁ ସବୁ ପଛରେ ରହିଯାଇଥିଲା । ତାଙ୍କର ହସହସ ମୁହଁକୁ ଦେଖିଲେ ଲାଗେ ଭଗବାନ ସତେ ଯେପରି ସଂସାରର ସବୁ ଖୁସୀ ତାଙ୍କୁ ହିଁ ଦେଇଛନ୍ତି । ମୃତ୍ୟୁ ଶଯ୍ୟାରେ ମଧ୍ୟ ତାଙ୍କ ହସହସ ମୁହଁ ଦେଖି ସମସ୍ତେ କହିଲେ "ଜୟୀଭାଇ ମରଣକୁ ମଧ୍ୟ ହସିହସି ବରଣ କରିଛନ୍ତି"। ନାନା ପ୍ରକାର ସମସ୍ୟା ଭିତରେ ସେ ଆମମାନଙ୍କ ବିଷୟରେ ବହୁତ ଚିନ୍ତା କରୁଥିଲେ । ବୋଉ ଥିବା ପର୍ଯ୍ୟନ୍ତ ସେ ତାଙ୍କର ଅର୍ଦ୍ଧାଧିକ ପାରିବାରିକ ସମସ୍ୟା ସମାଧାନ କରୁଥିଲା । ବୋଉ ଯିବାର ୧୧ବର୍ଷ ଭିତରେ ବାପା ଆମମାନଙ୍କ ପାଇଁ ଏତେ ବ୍ୟସ୍ତ ହୋଇପଡୁଥିଲେ ଯେ ବେଳେବେଳେ ଆମେମାନେ ବି ବ୍ୟସ୍ତ ହୋଇପଡୁଥିଲୁ କାହିଁକି ଏ ବୟସରେ ସିଏ ଆମପାଇଁ ଏତେ ବ୍ୟସ୍ତ ହଉଛନ୍ତି । ନର୍ସିଂହୋମରେ ଥିବାସମୟରେ ଅର୍ଦ୍ଧଚେତନ ଅବସ୍ଥାରେ ହାତଉପରକୁ କରି ବାରମ୍ବାର କହି ଚାଲିଥିଲେ- "ମୁଁ ଜଣ ତମମାନଙ୍କୁ ଛାଡ଼ି କୁଆଡ଼େ ଯିବି" ସେ ସମୟରେ ଆମେ ଭାବୁଥିଲୁ ଉପରୁ ବୋଉ ତାଙ୍କୁ ଟାଣୁଛି, ସେ ତ କାହାକୁ ନିରାଶ କେବେ କରିନାହାନ୍ତି ତେଣୁ ବୋଉକୁ ବି ହାତଟେକି ତା ପାଖକୁ ଯିବାର ପ୍ରତିଶ୍ରୁତି ଦେବା ସହ ଆମକୁ ବି କଥା କହି ଆଶ୍ୱାସନା ଦେଉଛନ୍ତି ।

ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ ଜାଣି ମଧ୍ୟ ବାପାଙ୍କ ମୃତ୍ୟୁକୁ ଆମେମାନେ ସହଜରେ ଗ୍ରହଣ କରିପାରୁନୁ । ସବୁବେଳେ ମନେହଉଛି ତାଙ୍କର ସେଇ ଛୋଟ କାଫ୍ରିଘେରା ବାରଣ୍ଡାରେ ଖଦଡ଼ ଚାଦର ବିଛା ହୋଇଥିବା ଖଟ ଉପରେ ବସି ଟେବୁଲ ଉପରେ ହାତରଖି ହସହସ ମୁହଁରେ ସେ ସମସ୍ତ ଆଗନ୍ତୁକଙ୍କୁ ସ୍ୱାଗତ କରିବାକୁ ଅପେକ୍ଷାରତ ।

ପବିତ୍ର ଜନ୍ମାଷ୍ଟମୀରେ ଜନ୍ମ ଏବଂ ନନ୍ଦୋତ୍ସବରେ ମୃତ୍ୟୁ ଏହା କେବଳ ମାତ୍ର ଯୋଗଜନ୍ମାଙ୍କ ଭାଗ୍ୟରେ ଘଟିଥାଏ । ଜନ୍ମାଷ୍ଟମୀରେ ଜନ୍ମଗ୍ରହଣ କରିଥିବାରୁ ଶ୍ରଦ୍ଧାରେ ବାପା ମାଆ ତାଙ୍କ ନାମ ରଖିଥିଲେ 'ଜୟକୃଷ୍ଣ'। କେଉଁ ଅମୃତବେଳାରେ ତାଙ୍କ ନାମକରଣ କରାଯାଇଥିଲା କେଜାଣି ଜୀବନର ସବୁ ଦୁଃଖ, କଷ୍ଟ, ଯନ୍ତ୍ରଣାକୁ ହସିହସି ଜୟ କରିବା ପରେ କ୍ୟାନସର ପରି ଦୂରାରୋଗ୍ୟ ରୋଗକୁ ମଧ୍ୟ ନିଜ ଅଜାଣତରେ ଜୟ କରି ଚାଲିଗଲେ ।

ଦୁଇଜଣ ସମାନ ଆଦର୍ଶ, ସମଚିନ୍ତାଧାରା, ସମାନ ବ୍ୟକ୍ତିତ୍ୱଙ୍କ ପାଖରୁ ଜନ୍ମନେବା ଖୁବ୍ କମ୍ ଜଣଙ୍କ ଭାଗ୍ୟରେ ଯୁଟେ ଯାହା ଭଗବାନ ଆମ ଚାରିଜଣଙ୍କୁ ଦେଇଛନ୍ତି । ବାପା ବୋଉଙ୍କ ଯୋଗୁ ଆମେ ଯେଉଁସବୁ ଆଦର୍ଶ ବ୍ୟକ୍ତିତ୍ୱ-ମାନଙ୍କ ଅତି ନିକଟ ସଂପର୍କରେ ଆସିଛୁ ତାହା ଆମ ପିଲାଙ୍କ ପାଇଁ ଇତିହାସ ହୋଇରହିବ । ଆମ ଚାରିଜଣଙ୍କ ଭିତରେ

ମୁଁ ନିଶ୍ଚିତଭାବେ ଅଧିକ ଭାଗ୍ୟବାନ କାରଣ ଅଧିକ ଦିନ ମୁଁ ବାପାବୋଉଙ୍କ ନିକଟରେ ରହିବାର ସୁଯୋଗ ପାଇଛି, ଏହା ମୋପାଇଁ ଭଗବାନଙ୍କ ଆଶୀର୍ବାଦ ନିଶ୍ଚୟ। ଆହୁରି ଭାଗ୍ୟବାନ କାରଣ ମୋର ଦୁଇଜଣଯାକ ପିଲା ଆପୁ ଓ ପୂଜା ସେମାନଙ୍କର ବାଲ୍ୟକାଳ ତଥା କୈଶୋର ସମୟ ବାପାବୋଉଙ୍କ ତୀକ୍ଷ୍ଣ ନଜର ଏବଂ ସ୍ନେହ ଆଦର ଭିତରେ ବିତାଇଛନ୍ତି, ଯାହାକି ପରବର୍ତ୍ତୀ ସମୟରେ ତାଙ୍କୁ ବହୁଭାବେ ସାହାଯ୍ୟ କରିଛି ଏବଂ ଭବିଷ୍ୟତରେ କରିବ ମଧ୍ୟ। ମୋପାଇଁ ତାଙ୍କର ବହୁତ ଚିନ୍ତା ଥିଲା। ସେ ଥିଲେ ମୋ ପାଇଁ ପ୍ରେରଣାର ଉତ୍ସ। ସବୁବେଳେ କହୁଥିଲେ ଖାଲି ସମୟ ନଷ୍ଟ ନକରି କିଛି କାମ କର ଯେଉଁଥିରେ ନିଜେ ଉପକୃତ ହେବା ସହ ସମାଜ ମଧ୍ୟ ଉପକୃତ ହେବ। ମୁଁ ଯାହାବି କିଛି କରିଛି ମତେ ତ ସମସ୍ତଙ୍କ ସାହାଯ୍ୟ ସହଯୋଗ ମିଳିଛି ନିଶ୍ଚୟ କିନ୍ତୁ ବାପାଙ୍କ ପ୍ରେରଣା ହିଁ ମତେ ସିଡ଼ିର ପ୍ରଥମ ପାହାଚ ଚଢ଼ିବାରେ ସାହାଯ୍ୟ କରିଛି।

ଗତବର୍ଷ ଜୁନ ୧୬ ତାରିଖ (ଶେଷରକ) ଦିନ ସେ ଶେଷଥର ପାଇଁ ଆମ ଘରକୁ ଆସିଥିଲେ। ସେଦିନ ନିପା ହାଇଦ୍ରାବାଦ୍‌ରୁ ଆସିଥିଲା। ଆମେ ଭାଇଭଉଣୀ ପିଲାମାନେ ସବୁ ଏକାଠି ହୋଇଥିଲୁ। ଭାଇ ଯେତେବେଳେ ଆମଘରେ ପହଞ୍ଚି ତାଙ୍କୁ ଗାଡ଼ିରୁ ଓହ୍ଲାଇଲା ଓ ଡଲି ତାଙ୍କ ହାତଧରି ସିଡ଼ି ଚଢ଼ାଇବାକୁ ଚେଷ୍ଟା କରି ବିଫଳ ହେଲା ଏବଂ ଆମେ ତଳ ଘରେ ତାଙ୍କୁ ବସାଇଲୁ, ସେତେବେଳେ ମୋ ମନରେ ପ୍ରଶ୍ନ ଉଠିଥିଲା। ଏତେ ଦୃଢ଼ମନା ଲୋକ ଯିଏ ପାହାଡ଼ ଚଢ଼ିବାକୁ ପଛାଉ ନଥଇଲେ ସେ ସିଡ଼ି ଚଢ଼ିବାରେ ନିଜ ଅକ୍ଷମତା ପ୍ରକାଶ କରୁଛନ୍ତି, ତାହାହେଲେ ପ୍ରକୃତରେ କ'ଣ ବାର୍ଦ୍ଧକ୍ୟ ପାଖରେ ହାର ମାନୁଛନ୍ତି ? ଏହା ବାପାଙ୍କର ଆମ ଘରକୁ ଆସିବା ଶେଷ ନୁହେଁ ତ ? ଏପରି ଅନେକ ପ୍ରଶ୍ନ। ପ୍ରକୃତରେ ସେଦିନର ପ୍ରଶ୍ନ ହିଁ ସତ୍ୟରେ ପରିଣତ ହୋଇଗଲା କିଛିଦିନର ବ୍ୟବଧାନରେ।

ବାପାଙ୍କର ସଂପୂର୍ଣ୍ଣ ଜୀବନ କାଳକୁ ତର୍ଜମା କରି ସେ କେବେ ଭୋଗବାଦୀ ନଥିଲେ ବୋଲି ଆମେ ଅନୁଭବ କରିଛୁ। ତାଙ୍କର ଖାଇବା, ପିନ୍ଧିବା, ରହିବା ସବୁଥିରେ ସଂଯମତା ପରିଲକ୍ଷିତ ହୁଏ। ଭୋଗ ଠାରୁ ତ୍ୟାଗରେ ସେମାନେ ବେଶୀ ସୁଖ ପାଉଥିଲେ। ବହୁସମୟରେ ନିଜେ କଷ୍ଟ ସହି ଅନ୍ୟକୁ ଖୁସି କରିବାରେ ସେ ଆନନ୍ଦ ଅନୁଭବ କରୁଥିଲେ। ଆମେମାନେ ଯେହେତୁ ତାଙ୍କପରି ନିଃସ୍ୱାର୍ଥପର ହୋଇପାରିନାହୁଁ ତେଣୁ ବେଳେବେଳେ ତାଙ୍କ ସହ ମତପାର୍ଥକ୍ୟ ହୋଇଯାଉଥିଲା। ମୁଁ ତାଙ୍କର ଅତି ନିକଟରେ ଥିବାରୁ ବହୁ ସମୟରେ ତାଙ୍କ ଚିନ୍ତାଧାରାକୁ ବୁଝିନପାରି ଯୁକ୍ତିକରେ। ସାନ ମାନଙ୍କର ରୁଷିବା ହେଲା ବଡ଼ ଅସ୍ତ୍ର। ତେଣୁ ମୁଁ ଟିକେ ବେଶୀ ରୁଷୁଥିଲି। ବୋଉ ସବୁବେଳେ କହେ "ସୋମାର ତ ଗଂଗା କହିଲେ ଥିବି ଗାଂଗୀ ବୋଇଲେ ଯିବି"। ତେଣୁ ତାକୁ କିଛି କୁହନି। ସେଇ ଅନୁସାରେ ବାପାଙ୍କ ଯୁକ୍ତିର ଠିକ୍ ଅର୍ଥ ବୁଝି ନପାରି ରୁଷିକି ଚାଲିଆସେ। ଦିନେ ଦୁଇଦିନ ନଗଲେ ବାପା ନିଜେ ଆସିବେ, ତାପରେ ରୁଷା ଶେଷ। ଏମିତି ଏକ ଘଟଣା ତାଙ୍କ ଯିବାର ଦୁଇ ମାସ ପୂର୍ବରୁ ଘଟିଲା। ଯାହା ମୋ ପାଇଁ ଅଭୁଲା ହୋଇ ରହିଗଲା। ଜୁଲାଇ ୧ ତାରିଖ ସକାଳେ ମୁଁ ତାଙ୍କ ପାଖକୁ ଗଲାବେଳେ ସେ ଜଳଖିଆ ଖାଉଥିଲେ। ମତେ ଦେଖି ଖୁସୀ ହେବା ବଦଳରେ କେମିତି ଚିନ୍ତାଗ୍ରସ୍ତ ହୋଇପଡ଼ିବାର ମୁଁ ଅନୁଭବ କରି ଟିକେ ଡରିଗଲି। ସେ ତାଙ୍କ ସ୍ୱଭାବ ସୁଲଭ ଢଙ୍ଗରେ ପାଖରେ ବସିବାକୁ କହି ମୋ ପାଇଁ ତାଙ୍କ ମନରେ ଥିବା କ୍ଷୋଭ ପ୍ରକାଶ କରି ସତ୍ୟତା ଜାଣିବାକୁ ଚାହିଁଲେ। ସେଦିନ ମୋ ପ୍ରତି ତାଙ୍କର ମାନସିକ ସ୍ଥିତି ଠିକ୍ ନଥିବା ଜାଣିପାରି ମୁଁ ବିଶେଷକିଛି ନକହି ମନକଷ୍ଟରେ ଚାଲିଆସିଲି।

ମାତ୍ର ୧୫ ଦିନ ପର୍ଯ୍ୟନ୍ତ ମୁଁ ବହୁତ ଅସ୍ଥିରତା ଭିତରେ ରହିଲି । ତେଣୁ ୧୫ ଦିନ ପରେ ତାଙ୍କ ପାଖକୁ ଯାଇ ସବୁକଥା ସ୍ଥିର ଭାବେ ତାଙ୍କୁ ବୁଝାଇଲି ଏବଂ ଉପଲବ୍ଧି କଲି ସେ ମଧ୍ୟ ମତେ ଠିକ୍ ଭାବେ ବୁଝିଗଲେ । ସେଦିନ ବହୁତ ଆଶ୍ୱସ୍ତ ହୋଇଥିଲି । ପୁଣି ଜୁଲାଇ ୧୯ ତାରିଖ ଖରାବେଳେ ତାଙ୍କ ପାଖକୁ ଯାଇଥିଲି ସେ ଶୋଇଥିଲେ । ମତେ ଦେଖି ଖୁସି ହୋଇ ଉଠିବାକୁ ଚେଷ୍ଟା କରି ହଠାତ୍ ଉଠି ପାରିଲେନି । ଯଦିଓ ତା ପୂର୍ବରୁ ସେ ଅଣ୍ଟାରେ ଯନ୍ତ୍ରଣା ଅନୁଭବ କରୁଥିଲେ କିନ୍ତୁ ନିଜର ଦୃଢ଼ ମନୋବଳ ଯୋଗୁଁ ସେକଥା ପ୍ରକାଶ ନକରି ନିଜେ ନିଜ କଷ୍ଟର ସମାଧାନ କରିବାକୁ ଚେଷ୍ଟା କରୁଥିଲେ । ସେଦିନ କିଛି ସମୟ ତାଙ୍କର ମୋର କଥାବାର୍ତ୍ତା ହେଲୁ । ଆମେ କଥାହଉଛୁ ବିଶ୍ୱନାଥ ଆଜ୍ଞାଙ୍କ ଉପରେ ହେଉଥିବା ପ୍ରାମାଣିକ ଚିତ୍ର ପାଇଁ ବାପାଙ୍କର କିଛି ରେକର୍ଡିଂ କରିବାକୁ ରବିବାବୁ ଓ ତାଙ୍କ ଟିମ୍ ଆସି ପହଞ୍ଚିଲେ । ଉଠିବାରେ କଷ୍ଟ ହେଉଥିବା ଦେଖି ସେମାନେ ଶୋଇକି କହିବାକୁ କହିଲେ କିନ୍ତୁ ବାପା ରାଜି ନହେବାରୁ ଭାଇ, ମୁଁ ତାଙ୍କୁ ଧରି ଉଠାଇ ବସାଇଲୁ ଏବଂ ସେ ଅଳ୍ପସମୟ ଆଜ୍ଞାଙ୍କ ବିଷୟରେ କହିଲେ ।

ଜୁଲାଇ ୨୩ ତାରିଖ ରାତି ୧୨ଟାରେ ଡ଼ଲି, ଭାଇ ଦୁଇଜଣଙ୍କ ଠାରୁ ଫୋନ୍ ପାଇଲୁ ବାପା ପଡ଼ି ଯାଇଛନ୍ତି । ସାଂଗେ ସାଂଗେ ସମସ୍ତେ ପହଞ୍ଚିଲୁ ଏବଂ ଆମ୍ବୁଲାନ୍ସରେ କଳିଙ୍ଗ ହସ୍ପିଟାଲ ନିଆଗଲା । ମୁଁ ତାଙ୍କ ପାଖରେ ତାଙ୍କ ହାତ ଧରି ବସିଥିବା ଭିତରେ ଅର୍ଦ୍ଧଚେତନ ଅବସ୍ଥାରେ ୨/୩ ଥର କହିଥିଲେ "ମତେ କଳିଙ୍ଗ ନବନାହିଁ, ଡଲି ନର୍ସିଂହୋମକୁ ନିଅ ।" ସବୁ କେମିତି ନିମିଷକ ଭିତରେ ଓଲଟପାଲଟ ହୋଇଗଲା । ଆଗରୁ ବହୁତ ଥର ପଡ଼ିଯାଇ ଭଲ ହୋଇଯାଇଛନ୍ତି ତେଣୁ ଏଥର ମଧ୍ୟ ସେଇଆ ହବ, ଏଯେଉଁ ଭାବନା ତାହା ଭୁଲ ପ୍ରମାଣିତ ହୋଇଗଲା ଜୁଲାଇ ୨୫ ତାରିଖ ପରୀକ୍ଷା ନିରୀକ୍ଷା ପରେ । ସତେକି ଆମ ଉପରେ ଆକାଶଟା ଛିଣ୍ଡିଗଲା । ଯାହାହଉ ଭଗବାନଙ୍କ ଆଶୀର୍ବାଦ ସେ ନିଜେ କିଛି ଜାଣିପାରିଲେନି, ବୋଉ ମଧ୍ୟ ଏକଥା ଜାଣିବାର ବହୁପୂର୍ବରୁ ଚାଲିଯାଇଥିଲା । ଜୁଲାଇ ୨୫ରୁ ଅଗଷ୍ଟ ୨୫ ତାରିଖ ଏଇ ୧ ମାସ ଆମେ କେମିତି କଟାଇଛୁ ତାହା କେବଳ ସ୍ମୃତି ହୋଇ ଆମ ପାଖରେ ରହିଗଲା ।

ବାପା ଥିଲେ ଆମର ପ୍ରଥମ ବନ୍ଧୁ । ନିବିଡ଼ ବନ୍ଧୁଙ୍କ ପାଖରେ ନିଜ କଥା ପ୍ରକାଶ କରିବା ପରି ଆମେ ବାପାଙ୍କୁ ଆମର ପ୍ରତ୍ୟେକ ଛୋଟ ବଡ଼ ସମସ୍ୟା ତଥା ସବୁ ଘଟଣା ସଂପର୍କରେ କହୁ । ସେ ମଧ୍ୟ ଖୁବ୍ ଧୈର୍ଯ୍ୟର ସହ ସବୁ ଶୁଣନ୍ତି ଏବଂ ତାର ସରଳ ସମାଧାନ ମଧ୍ୟ କମ୍ ବାକ୍ୟ ବ୍ୟୟରେ କରନ୍ତି । ଜୀବନରେ ସ୍ୱାବଲମ୍ବନଶୀଳ ହୋଇ ଚଳିବା ପାଇଁ ସବୁବେଳେ ଆମକୁ ପରାମର୍ଶ ଦେଉଥିଲେ । ମୁଁ ପ୍ରାୟ ଭାବୁଥିଲି ବାପା ବୋଉ କ'ଣ ଏତେଶୀଘ୍ର ଆମକୁ ଛାଡ଼ିଯିବେ ? କିନ୍ତୁ ବୋଉ ଯିବାପରେ ମନଟା ଅଧା ଦବି ଯାଇଥିଲା । ଭଗବାନଙ୍କ ଉପରେ ବହୁତ ଅଭିମାନ କରି କିଛିଦିନ ମନ୍ଦିର ଯିବା ବନ୍ଦ କରିଦେଇଥିଲି । ଆସ୍ତେ ଆସ୍ତେ ବୋଉର ଅନୁପସ୍ଥିତିଟା ବାପାଙ୍କର ମାତ୍ରାଧିକ ନଜର ଆଗରେ କିଛିକାଂଶରେ ଗ୍ରହଣୀୟ ହେବା ସମୟରେ ବାପା ବି ଛାଡ଼ି ଚାଲିଗଲେ । ଆମେ ଏବେ ସଂପୂର୍ଣ୍ଣ ନିଃସ୍ୱ । ବାପାବୋଉଙ୍କ ବିନା ଜୀବନ କ'ଣ ? ତେଣୁ ଭଗବାନଙ୍କୁ ପ୍ରାର୍ଥନା କରୁଛି ଯେତେବେଳେ ବି ଜନ୍ମଦେବେ ସେଇ ଦୁଇଜଣଙ୍କ କୋଳରେ ହିଁ ଜନ୍ମ ଦିଅନ୍ତୁ ।

ପ୍ଲଟ୍ ନଂ.- ୧୬, ସେକ୍ଟର-୬, ଜୋନ୍-ବି,
ମଞ୍ଚେଶ୍ୱର ଶିଳ୍ପାଞ୍ଚଳ, ଭୁବନେଶ୍ୱର-୧୦

# ସ୍ମୃତି ନୁହେଁ ଅନୁଭୂତି

ଗୌରୀ

ପରାଧୀନ ଭାରତକୁ ଇଂରେଜଙ୍କ କବଳରୁ ମୁକ୍ତ କରିବାକୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କାରାବରଣ କରିଥିବା, ସ୍ୱାଧୀନତା ଲାଭ ପରେ ପ୍ରାଦେଶିକ ଶାସନ ବିଧାୟକ ସଭାରେ ପ୍ରତିନିଧିତ୍ୱ କରିଥିବା ଏବଂ ପରବର୍ତ୍ତୀ ସମୟରେ କଳୁଷିତ ରାଜନୀତି ପ୍ରତି ବିତସ୍ପୃହ ହୋଇ ସେଥିରୁ ସନ୍ନ୍ୟାସ ନେଇ ଆଜୀବନ ଜନସେବାକୁ ବ୍ରତ କରି ନେଇଥିବା ସଙ୍କୋଟ, ନିରାଡ଼ମ୍ବର, ସରଳ, ପରୋପକାରୀ, ଜ୍ଞାନୀ, ଗୁଣୀ, ବିଚାରବନ୍ତ-ଏହିପରି ସ୍ୱଳ୍ପ କେତୋଟି ହାତଗଣତି ଦମ୍ପତ୍ତିଙ୍କ ସନ୍ତାନ ହିସାବରେ ଆମ ଚାରି ଭାଇ ଭଉଣୀଙ୍କର ମନରେ ଏକ ସ୍ୱାଭିମାନ ରହିଛି ।

ମୋର ଜନ୍ମ ବେଳକୁ ବାପା ଜଣେ ପ୍ରତିଷ୍ଠିତ ବିଧାୟକ ଏବଂ ତାଙ୍କର spiritual father ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସେତେବେଳର୍ ବିଧାୟକ, ମନ୍ତ୍ରୀ ଏବଂ ମୁଖ୍ୟମନ୍ତ୍ରୀଙ୍କର ବ୍ୟକ୍ତିତ୍ୱର ପରାକାଷ୍ଠା ଏବଂ ଜନସାଧାରଣଙ୍କର ସେମାନଙ୍କ ପାଇଁ ସମ୍ମାନବୋଧ ଆଜି ତୁଳନାରେ ବହୁତ ଅଧିକା ଥିଲା । ମୁଁ ଜନ୍ମ ହେବା ଦିନ ମୋର ବାପା ବିଧାୟକ ଭାବରେ ବନ୍ୟାଞ୍ଚଳ ଗସ୍ତରେ ଥିଲେ । ବୋଉ ରାଜ୍ୟ ଅତିଥି ଭବନ (State Guest House)ରୁ ଗାଡି ମଗାଇ ମୋର ଭାଇ ଓ ବଡ଼ ଭଉଣୀଙ୍କୁ ନବକୃଷ୍ଣ ଚୌଧୁରୀଙ୍କ ଘରେ ଛାଡ଼ି ଏକାଏକା ଡାକ୍ତରଖାନା ଯାଇଥିଲା । ମୋର ଜନ୍ମର ଖବର ବାପାଙ୍କୁ wireless ଦ୍ୱାରା ଜଣାଇ ଦିଆଯାଇଥିଲା । ଲଣ୍ଡନରୁ ଉଚ୍ଚଶିକ୍ଷା ସମାପ୍ତ କରି ଫେରିଥିବା ଡାକ୍ତର ଲାବଣ୍ୟରେଖା ମିତ୍ର ଯେ କି ପରବର୍ତ୍ତୀ ସମୟରେ ଓଡ଼ିଶା ସରକାରଙ୍କର ସ୍ୱାସ୍ଥ୍ୟ ନିର୍ଦ୍ଦେଶକ ଥିଲେ, ସେ ପ୍ରତ୍ୟେକ ଦିନ ଆସି ଆମସରେ ମୋର ଦେଖାଶୁଣା କରନ୍ତି । ବୋଉର ଏପରି ଦୃଢ଼ ମନୋବଳ ମୋତେ ଜନ୍ମ ପରଠାରୁ ବୋଧହୁଏ ଉତ୍ତରାଧିକାର ସୂତ୍ରରେ ମିଳିଥିଲା ଏବଂ ଅଦ୍ୟାବଧି ସଫଳ ଜୀବନ ଜିଇଁବା ପାଇଁ ସାହସ ଓ ପ୍ରେରଣା ଯୋଗାଇ ଚାଲିଛି ।

ଟଙ୍କା, ସୁନା, ଗାଡି ମଟର, କୋଠାଘର, ଜମିବାଡ଼ି ଇତ୍ୟାଦି ବସ୍ତୁବାଦୀ ମାଧ୍ୟମ ଆମ ବାପା ମା'ଙ୍କ ପାଇଁ ମାନ୍ୟତାର ମାପକାଠି ନଥିଲା । ପିଲାଦିନୁ ଅନେକ ବଡ଼ ମଣିଷଙ୍କ ସଂସ୍ପର୍ଶରେ ଆମେ ଆସିପାରିଛୁ ଯେଉଁମାନଙ୍କ ବିଷୟରେ ଆମର ପିଲାମାନେ ବହିରେ ପଢ଼ୁଛନ୍ତି । ସେହି ମହାପୁରୁଷ ମାନଙ୍କର ନିବିଡ଼ ସାନ୍ନିଧ୍ୟରେ ଆସି ତାଙ୍କଠାରୁ ଭଲକଥା ଶୁଣିବା, ଭଲ କାମ ଶିଖିବାର ସୁଯୋଗ ଆମେ ପାଇଛୁ । ଆଚାର୍ଯ୍ୟ ହରିହର ଦାସ, କୃପାସିନ୍ଧୁ ହୋତା, ଈଶ୍ୱରଲାଲ ବ୍ୟାସ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ, ମାଳତୀ ଚୌଧୁରୀ, ବିନୋଦ କାନୁନଗୋ, ସଦାଶିବ ତ୍ରିପାଠୀ ଓ ପଦ୍ମଚରଣ ସାମନ୍ତସିଂହାରଙ୍କ ପରି ଭଲ ମଣିଷଙ୍କର ହାତର ସ୍ପର୍ଶ ଆଜି ବି ଅନୁଭୂତ । ଦିନକର ଅନୁଭୂତି । ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଆମେ

ଅନୁଗୁଳରେ ରହିବା ସମୟରେ ସମ୍ବଲପୁର ଯିବା ବାଟରେ ଆମଘରେ ଅଟକି ଖାଇବାର କାର୍ଯ୍ୟକ୍ରମ ଥିଲା। ହାତରେ ବଳା କାଗଜ ଚିରୁଟ୍ ସେ ଯେତେବେଳେ ଟାଣୁଥିଲେ। ତାଙ୍କର ସେ ଚିରୁଟ୍‌ରୁ ମୁଁ ଦୁଇଚୋଟ ଟାଣିଦେବାରୁ ମୋର ଭୀଷଣ କାଶ ହୋଇ ଚନ୍ଧି ଦର୍‌ଜ ହୋଇ ଯାଇଥିବା କଥା ଏବେବି ମନେଅଛି। ଆଚାର୍ଯ୍ୟ ମହାଶୟ, ନୁମା, ବାପି, ରମାଦେବୀ ଓ ଗୋପବାବୁ ପ୍ରଭୃତି ମନିଷୀ ମାନଙ୍କ ସହ ଆମର ବାଲ୍ୟକାଳର ଅନେକ ଅଭୁଲା ସ୍ମୃତି ଆଜିର ପିଢ଼ୀପାଇଁ ଗଳ୍ପ ଭଳି ଲାଗିପାରେ। ହେଲେ ଆମ ବାପା ବୋଉଙ୍କର ସୁକୃତରୁ ଏହି ମହାପୁରୁଷମାନେ ଆମ ପରିବାରର ଖୁବ୍ ନିକଟତର ଥିଲେ।

ଆମ ଘରର ଚଳଣୀ ଅନ୍ୟମାନଙ୍କ ଠାରୁ ସାମାନ୍ୟ ଭିନ୍ନ। ଘରେ ସମସ୍ତଙ୍କ ବାସନ, ଗ୍ଲାସ, ଚାଦର, ଗାମୁଛା ଓ ପରିଧାନ ଅଲଗା ଅଲଗା। କେହି କାହା କିନିଷ କେବେ ବ୍ୟବହାର କରନ୍ତି ନାହିଁ। ଘରେ କାହାର ଦେହ ଖରାପ ହେଲେ ସେ ଅଲଗା ଗୋଟେ ବଖରାରେ ରହିବ। ଅନ୍ୟମାନଙ୍କ ସହ ମିଳାମିଶା କରିବ ନାହିଁ। ଆଉ ତାର ଔଷଧ, ଖାଦ୍ୟ, ପାନୀୟ ଏବଂ ସେବା ଶୁଶ୍ରୁଷା ବାପାହିଁ କରିବେ। ପିଲାଦିନେ ଅପେକ୍ଷାକୃତ ମୋର ବେଶୀ ଦେହ ଖରାପ ହେଉଥିଲା। ତେଣୁ ବାପାଙ୍କ ଠାରୁ ଦିନ ଦିନ ଧରି ସେବାଯତ୍ନ ମୁଁ ପାଇଛି। ବାହାଘର ପରେ ଶାଶୁଘରେ ମୋର ମନ ଆଦୌ ଲାଗେନି। ବୋଉ ସାଂଗରେ ଏ ସଂକ୍ରାନ୍ତରେ ଏକାନ୍ତରେ ବସି ଶାଶୁଘର ଲୋକଙ୍କ ବିଷୟରେ କୌଣସି ଆଲୋଚ଼ନାକୁ ବାପା ପ୍ରଶୟ ଦେବା ତ ଦୂରର କଥା ଓଲଟା ସେମାନଙ୍କର ପ୍ରଶଂସା ଏବଂ ସପକ୍ଷରେ ସବୁବେଳେ ଭଲକଥା କହୁଥିବେ। ଶେଷରେ ସେମାନଙ୍କ ବିଷୟରେ ସାକାରାତ୍ମକ ଏପରି କଥା କହି ମୋର ଶାଶୁଘର ସାଂଗରେ ମନକୁ ପୁରା ଯୋଡ଼ି ଦେଇଥିଲେ। ଶାଶୁ, ଶଶୁରଙ୍କ ମୋ ଉପରେ ଅସମ୍ଭବ ଭରସା ସମ୍ବନ୍ଧରେ ଏବେ ଦୁଇମାସ ତଳେ ମୁଁ ଜାଣିଲି। ମୋର ବଡ଼ ନଣନ୍ଦ ଫିଜିକ୍ସ ପ୍ରଫେସର ରାଜଲକ୍ଷ୍ମୀ ମହାନ୍ତି ଥରେ କଥା ପ୍ରସଙ୍ଗରେ କହୁକହୁ କହିଥିଲେ "ତୁ ତ ଆମ ବାପାଙ୍କର (ଶଶୁର) ଡାହାଣ ହାତ ଥିଲୁ।" ଜଣେ ବୋହୂ ପାଇଁ ଏହାଠାରୁ ଅଧିକା ସଫଳତା କ'ଣ ବା ହୋଇପାରେ ? ସେହିଭଳି ମୋର ବାପା ଅନ୍ୟ ଭାଇ ଭଉଣୀଙ୍କ ତୁଳନାରେ ମତେ ବେଶୀଟିକେ ଭଲ ପାଉଥିବା ଅନୁଭବ କରିଛି। ଭୁବନେଶ୍ୱରରେ ଆମର ପଡ଼ୋଶୀ ପାତ୍ର ମଉସା ଥରେ ତାଙ୍କର କୌଣସି ସାମାଜିକ ଉତ୍ସବକୁ ନିମନ୍ତ୍ରଣ କରିବା ପାଇଁ ଆମ କଟକ ଘରକୁ ଆସିଥିଲେ। କଥା ପ୍ରସଙ୍ଗରେ ସେ କହିଲେ- "ଗୌରୀ, ତୁମ ବାହାଘର ପରେ ମତେ ବାପା କହୁଥିଲେ ଯେ ତାଙ୍କ ବୋଉର ମୃତ୍ୟୁରେ ସେ କାନ୍ଦି ନଥିଲେ, ହେଲେ ବିବାହ ପରେ ତୁମକୁ ବିଦାୟ କରିସାରି ସେ ନିଜକୁ ସମ୍ଭାଳି ପାରିନଥିଲେ।"

ବାପା ଜଣେ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ। ସେ ବରାବର କ୍ଲାସରେ ପ୍ରଥମ ହେଉଥିଲେ। ବାପା ଆମମାନଙ୍କୁ ସବୁବେଳେ କିଛି ନା କିଛି ପଢ଼ିବାକୁ କହୁଥିଲେ। ସେ ନିଜେ ମଧ୍ୟ ବିଭିନ୍ନ ବିଷୟ ପଢ଼ି ତାର ଭିତରକୁ ଯାଉଥିଲେ ଓ ସବୁ ଠିକ୍ ଠିକ୍ ନବୁଝି କେବେ ଉପରଠାଉରିଆ ଭାବେ କୌଣସି କିନିଷକୁ ଗ୍ରହଣ କରୁନଥିଲେ। ବାପା ଯେତେବେଶୀ ସାଧାସିଧା ଚଳଣି ଭଲ ପାଉଥିଲେ ମୁଁ ସେତେବେଶୀ ସୌଖୀନ୍ ଚଳଣି ପସନ୍ଦ କରୁଥିଲି। ସେ ଯେତେ ଶାନ୍ତ ଓ ଧୈର୍ଯ୍ୟବାନ ଥିଲେ ମୁଁ ସେତେ ରାଗିଥିଲି।

ତା ସତ୍ତ୍ୱେ ସେ ମୋକଥା ଏତେ ବେଶୀ ବୁଝୁଥିଲେ ବୋଧହୁଏ ତାଙ୍କ ଇଚ୍ଛାମୁତାବକ ନଥିଲି ବୋଲି।

୨୦୦୮ ମସିହା ଅଗଷ୍ଟ ୨୬ ତାରିଖ ଦିନ ପୁରୀ ସ୍ୱର୍ଗଦ୍ୱାରରୁ ବାପାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଶେଷକରି ଫେରିବାବେଳେ ରାସ୍ତାରେ କଥାପ୍ରସଙ୍ଗରେ (ମୋର ପ୍ରୀୟ ଖାଇବା ଜିନିଷ ମଧ୍ୟରୁ ଗୋଟିଏ) ଆଇସ୍‌କ୍ରିମ ଖାଇବା ଛାଡିଦେବି ବୋଲି କହିବାରୁ ମୋର ପୁଅ ନାନ୍ କହିଥିଲା ତୁ ବାପାଙ୍କ ଉପରେ ରାଗିବାଟା ଛାଡ୍। ଆଇସ୍‌କ୍ରିମ୍ ଛାଡ଼ି ଲାଭ କ'ଣ ? କାରଣ ତୋର ବାପାଙ୍କ ଉପରେ ଏପରି ରାଗିବାକୁ ଅଜା ପସନ୍ଦ କରୁନଥିଲେ।

ମୋର ଏହି ଲେଖାରେ ବର୍ଣ୍ଣିତ ଅଧିକାଂଶ ବ୍ୟକ୍ତି ଆଜି ଆମ ପାଖରେ ନାହାନ୍ତି। ମାତ୍ର ମୁଁ ତାଙ୍କପାଇଁ ସ୍ୱର୍ଗତ ବା ମୃତ ଲେଖିନି କାରଣ ସେମାନେ ସମସ୍ତେ ମୋ ପାଇଁ ଅମର। ମୋ ବାପା ମଧ୍ୟ ସେମାନଙ୍କ ଭଳି ଚିର ଅମର। ସେ ସଦାବେଳେ ମୋ ପାଖେ ପାଖେ ଅଛନ୍ତି। ବାପା ସବୁବେଳେ କହୁଥିବା କେତେକ କଥା ଯାହା ଅମରବାଣୀ ଭଳି ସବୁ ଦିନେ ମନେ ରହିଥିବ ତାର ଅବତାରଣା ନକରି ରହି ପାରୁନାହିଁ।

୧) ଆରାମ ହେଉଛି ହାରାମ୍।

୨) ଯେ ଗଛ ମୂଳ ଜଗିବ ଫଳ ସେ ନିଶ୍ଚୟ ପାଇବ।

୩) ଏ ଟଙ୍କା ମୋର, ସେ ଟଙ୍କା ତୋର୍- ସେପରି କିଛି ନାହିଁ। ସବୁ ଟଙ୍କା ରିଜର୍ଭ ବ୍ୟାଙ୍କର। ଯାହାର ଯେତିକି ଆବଶ୍ୟକ, ସିଏ ସେତିକି ନେଉ।

୪) ଦରକାର ନଥିଲେ ଗୋଟିଏ ଧାନ ବି ନଷ୍ଟ ନକରି ଗୋଟାଇ ରଖ। ଆବଶ୍ୟକ ବେଳେ ଧାନବସ୍ତା ପକାଇ ରାସ୍ତା ତିଆରି କର।

୫) ଡାହାକୁ ସାହାଯ୍ୟ କଲେ ଅର୍ଥାତ୍ ଡାହାଣ ହାତ ଦେଲେ ବାଁ ହାତ ମଧ୍ୟ ଜାଣିବା ଉଚିତ୍ ନୁହେଁ।

ସେ ଏସବୁ ଖାଲି ଉପଦେଶ ଛଳରେ କହୁନଥିଲେ, ଜୀବନର ସବୁକ୍ଷେତ୍ରରେ ଏସବୁ ପାଳନ ମଧ୍ୟ କରୁଥିଲେ। ଯେଉଁଥିପାଇଁ ଅନେକ କହିଥାନ୍ତି- ଜୟକୃଷ୍ଣ ବାବୁ ଛେନାରୁ ତୋପା ଛଡାନ୍ତି ବୋଲି।

**ଶ୍ରୀମତୀ ସୁଜାତା ମହାପାତ୍ର**
**ଜାଉଁଳିଆପଟି, ଚୌଧୁରୀ ବଜାର, କଟକ-୯**

••

# ବିପ୍ଳବୀ ଜୟକୃଷ୍ଣ

**ବୈଷ୍ଣବ ଦାସ**

୧୯୩୦ ମସିହା। ବ୍ରିଟିଶ୍ ସରକାର ଲୁଣ ଉପରେ କର ଲାଗୁ କରିବାରୁ ଏହା ବିରୋଧରେ ମହାତ୍ମା ଗାନ୍ଧୀ ଆନ୍ଦୋଳନ ଚଳାଇଥାନ୍ତି। ଗାନ୍ଧୀଜୀଙ୍କ ଡାକରାରେ ଦେଶବ୍ୟାପୀ ସ୍କୁଲ୍ କଲେଜ୍‌ର ପିଲାମାନେ ପାଠପଢ଼ା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ସାମିଲ୍ ହୋଇଥାନ୍ତି। ଜୟକୃଷ୍ଣ ମହାନ୍ତି ସେତେବେଳେ ସ୍କୁଲର ଜଣେ ମେଧାବୀ ଛାତ୍ର। ସେ ସ୍କୁଲ୍ ନ ଛାଡ଼ିଥିଲେ ମଧ୍ୟ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଖଦଡ଼ ପିନ୍ଧିବା ଆରମ୍ଭ କଲେ। ପରେ ପରେ ଇଂରେଜ-ବିରୋଧୀ ସ୍ଲୋଗାନ ଦେଇ ବିଭିନ୍ନ ଶୋଭାଯାତ୍ରାରେ ସାମିଲ୍ ହେଲେ।

ସେ ଥିଲେ ପୁରୀ ଜିଲ୍ଲା ସ୍କୁଲ୍‌ର ଛାତ୍ର। ସ୍ୱାଧୀନତା ଆନ୍ଦୋଳନ ପାଇଁ ପ୍ରସିଦ୍ଧି ଅର୍ଜନ କରିଥିବା ମଙ୍ଗୁମଠରେ ରହି ସେ ପାଠ ପଢୁଥିଲେ। ସ୍ୱାଧୀନତା ଆନ୍ଦୋଳନ ଠାରୁ ଗାନ୍ଧିଜୀ ଅରଟରେ ସୂତାକଟା, ଲୁଗାବୁଣା, ଖଦୀବସ୍ତ୍ର ଉତ୍ପାଦନ ଆଦି ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ। ତେଣୁ ଚରଖା ଥିଲା ସ୍ୱାଧୀନତା ଆନ୍ଦୋଳନର ପ୍ରତୀକ। ଭାରତର ସଂଖ୍ୟାଧିକ ଲୋକ ସେମାନଙ୍କ ଦାରିଦ୍ର୍ୟ ଯୋଗୁଁ ବ୍ରିଟିଶ୍ ସରକାର ବିରୋଧରେ ଆନ୍ଦୋଳନ ଲାଗି ପ୍ରସ୍ତୁତ ହୋଇପାରୁ ନଥିଲେ। ସେମାନଙ୍କୁ ଖାଦ୍ୟ ଓ ବସ୍ତ୍ରରେ ସ୍ୱାବଲମ୍ବୀ କରିବା ଥିଲା ଗାନ୍ଧିଜୀଙ୍କ ଲକ୍ଷ୍ୟ। ଏହା ଫଳରେ ସେମାନେ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଭୂମିକା ଗ୍ରହଣ କରିପାରିବେ ବୋଲି ଗାନ୍ଧିଜୀ ଭାବୁଥିଲେ। ଜୟକୃଷ୍ଣ ଏଥିପାଇଁ ସୂତା କାଟିବା ଠାରୁ ଆରମ୍ଭ କରି ଖଦୀବସ୍ତ୍ର ଉତ୍ପାଦନ ପର୍ଯ୍ୟନ୍ତ ବିଭିନ୍ନ ଖଦି କାର୍ଯ୍ୟରେ ନିୟୋଜିତ ଥିଲେ।

କଟକରେ ପାଠ ପଢୁଥିବା ବେଳେ ନବକୃଷ୍ଣ ଚୌଧୁରୀଙ୍କ କନ୍ୟା ତଥା ପରବର୍ତ୍ତୀ କାଳରେ ବିଶିଷ୍ଟ ଗାନ୍ଧିବାଦୀ ନେତା ନାରାୟଣ ଦେଶାଇଙ୍କୁ ବିବାହ କରିଥିବା ଉତ୍ତରା ଓ ତାଙ୍କ ଭାଇ ବିନାୟକଙ୍କୁ ଜୟକୃଷ୍ଣ ପାଠ ପଢାଇଥିଲେ। ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସା ମାର୍ଗରେ ଦେଶ ସ୍ୱାଧୀନ ହେବା କଠିନ ହେବ ବୋଲି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଭାବୁଥିଲେ। ତେଣୁ ସେ ହିଂସାର ଜବାବ୍ ହିଂସାରେ ଓ ଅସ୍ତ୍ରର ଜବାବ୍ ଅସ୍ତ୍ରରେ ଦେବା ଭଳି କାର୍ଯ୍ୟରେ ଲାଗିପଡ଼ିଲେ। ଜୟକୃଷ୍ଣ ମଧ୍ୟ ନେତାଜୀଙ୍କ ଆଦର୍ଶକୁ ଆପଣେଇ ନେଲେ। ଅସ୍ତ୍ରଶସ୍ତ୍ର ଓ ଗୋଳାବାରୁଦ ଚାଳନାରେ ତାଲିମ୍ ନେବା ସକାଶେ ସେ କଲିକତା ଗଲେ। କିନ୍ତୁ ପରେ ପରେ ସେ ଚିନ୍ତା କଲେ ଯେ ହିଂସାତ୍ମକ ମାର୍ଗ ଠିକ୍ ନୁହେଁ। ସେ ଏଭଳି ତାଲିମ୍ ପାଇ ସାରିଥିବା ସତ୍ତ୍ୱେ ହିଂସାତ୍ମକ ପନ୍ଥାକୁ ପରିହାର କରି ପୁଣି ଗାନ୍ଧିଜୀଙ୍କ ଅହିଂସ ଆନ୍ଦୋଳନରେ ବ୍ରତୀ ହେଲେ।

୧୯୪୨ ମସିହା। ଭାରତ ଛାଡ଼ ଆନ୍ଦୋଳନ। ଗାନ୍ଧିଜୀ 'କର ବା ମର' ଆହ୍ୱାନ ଦେଇଥାନ୍ତି। ଜୟକୃଷ୍ଣ ସେତେବେଳେ ମାତ୍ର ୨୪ ବର୍ଷର ଯୁବକ।

ଇଂରେଜମାନଙ୍କୁ ଦେଶରୁ ତଡ଼ିବା ପାଇଁ ସେ ସଂକଳ୍ପ ନେଲେ। ଲୁଚିଛପି ଟେଲିଫୋନ ତାର କାଟିବା, ରେଳ ଲାଇନ୍ ଅଚଳ କରିଦେବା ପ୍ରଭୃତି କାର୍ଯ୍ୟରେ ସେ ଲିପ୍ତ ଥିଲେ। ଫଳରେ ବ୍ରିଟିଶ୍ ସରକାର ଭୟଭୀତ ହେଲା। ଜୟକୃଷ୍ଣଙ୍କୁ ବିଭିନ୍ନ ଅଭିଯୋଗରେ ବନ୍ଦୀ କରାଗଲା। ଜେଲ୍‌ରେ ରହିବେ ପଛକେ ଜାମିନ୍‌ରେ ଯିବେ ନାହିଁ ବୋଲି ସେ ସଂକଳ୍ପ ନେଲେ।

ବ୍ରିଟିଶ ସରକାର ଠାରୁ ନ୍ୟାୟ ମିଳିବ ନାହିଁ ବୋଲି ସେ ଧରିନେଇଥିଲେ। ପ୍ରଥମେ ପୁରୀ ଓ ପରେ ବ୍ରହ୍ମପୁର କେନ୍ଦ୍ରୀୟ ଜେଲ୍‌ରେ ତାଙ୍କୁ ରଖାଯାଇ ବହୁ ନିର୍ଯାତନା ଦିଆଯାଇଥିଲା। ସେହି ସମୟରେ ବ୍ରହ୍ମପୁର ଜେଲ୍‌ରେ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର ଓ ରାଧାନାଥ ରଥ ପ୍ରମୁଖ ମଧ୍ୟ ବନ୍ଦୀ ଥିଲେ।

ଡକ୍ଟର ହରେକୃଷ୍ଣ ମହତାବ ୧୯୪୬ ମସିହାରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିବା ବେଳେ ଜୟକୃଷ୍ଣ ବାବୁ ବିଧାନସଭାର ସଭ୍ୟ ଥିଲେ। ପରବର୍ତ୍ତୀ ସାଧାରଣ ନିର୍ବାଚନ ୧୯୫୨ ମସିହାରେ ହୋଇଥିଲା। ନବକୃଷ୍ଣ ଚୌଧୁରୀ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ। ଜୟକୃଷ୍ଣ ବାବୁ ପୁନର୍ବାର ବିଧାନସଭାକୁ ନିର୍ବାଚିତ ହେଲେ। ବିଚକ୍ଷଣ ବୁଦ୍ଧି ବଳରେ ରାଜ୍ୟର ବିଭିନ୍ନ ସମସ୍ୟା ସେ ଯେଉଁଭଳି ବିଧାନସଭା ଗୃହରେ ଉପସ୍ଥାପନ କରୁଥିଲେ, ତାହା ବିଧାୟକ ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ନବକୃଷ୍ଣ ଚୌଧୁରୀ ପ୍ରମୁଖଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା।

ଜୟକୃଷ୍ଣ ନିଜେ ସମାଜବାଦୀ ହୋଇ ନଥିଲେ ମଧ୍ୟ ବିଶିଷ୍ଟ ସମାଜବାଦୀ ଚିନ୍ତାନାୟକ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସହିତ ଓତଃପ୍ରୋତ ଭାବେ ଜଡିତ ଥିଲେ। ୧୯୪୭ ମସିହାରେ ସେ ସ୍ୱାଧୀନତା ସଂଗ୍ରାମୀ କିରଣଲେଖାଙ୍କୁ ବିବାହ କରିଥିଲେ। କିରଣଲେଖା ମଧ୍ୟ ପରବର୍ତ୍ତୀ କାଳରେ ରାଜ୍ୟ ବିଧାନସଭାକୁ ପିପିଲିରୁ ନିର୍ବାଚିତ ହେଲେ। ଉଭୟ ଜୟପ୍ରକାଶ ନାରାୟଣଙ୍କ ସଂପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ସାମିଲ୍ ହୋଇଥିଲେ। ଫଳରେ ଦେଶର ଜରୁରୀ କାଳୀନ ପରିସ୍ଥିତି ସମୟରେ ଜୟକୃଷ୍ଣଙ୍କୁ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା।

ଜୟକୃଷ୍ଣ ମହାନ୍ତି ଥିଲେ ନୀତିନିଷ୍ଠ ତଥା ସ୍ପଷ୍ଟବାଦୀ। ଠିକ୍ କଥା କହିବା ବେଳେ ସେ ନିଜ ଲୋକଙ୍କୁ ମଧ୍ୟ ବିରୋଧ କରିବାକୁ ପଛାଉ ନଥିଲେ। ଭୂଦାନ ଆନ୍ଦୋଳନର ପ୍ରବର୍ତ୍ତକ ଆଚାର୍ଯ୍ୟ ବିନୋବା ଭାବେ, ବିଶ୍ୱନାଥ ପଟ୍ଟନାୟକ ଓରଫ 'ଆଜ୍ଞା', ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ପୂଜ୍ୟା ମା' ରମାଦେବୀ ପ୍ରମୁଖଙ୍କ ସହିତ ପାଦରେ ଚାଲି ଚାଲି ଆଦିବାସୀ ବହୁଳ ଅଂଚଳରେ ଜୟକୃଷ୍ଣ ବାବୁ ଭୂଦାନ ଆନ୍ଦୋଳନର ପ୍ରଚାର ଓ ପ୍ରସାର କରିଥିଲେ। ତାଙ୍କର ଏଭଳି ସେବାମୂଳକ କାର୍ଯ୍ୟ ପାଇଁ କନ୍ଧମାଳ ଜିଲ୍ଲାର ବାଲିଗୁଡ଼ାସ୍ଥିତ 'ବନବାସୀ ସେବା ସମିତି' ତରଫରୁ ତାଙ୍କୁ ସମ୍ମାନିତ କରାଯାଇଥିଲା।

ଜୟକୃଷ୍ଣ ବାବୁ ଜୀବନର ଶେଷ ପର୍ଯ୍ୟନ୍ତ ଗାନ୍ଧୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ପ୍ରଦର୍ଶିତ ଖଦୀ ଆନ୍ଦୋଳନକୁ ନିଜ ଜୀବନର ବ୍ରତ ଭାବେ ଗ୍ରହଣ କରିଥିଲେ। ସେ ଥିଲେ ଗାନ୍ଧିଜୀଙ୍କ ହାତଗଢ଼ା ଅନୁଷ୍ଠାନ 'ଉତ୍କଳ ଖଦୀ ମଣ୍ଡଳ'ର ଜଣେ ବରିଷ୍ଠ କର୍ମକର୍ତ୍ତା। 'କେନ୍ଦ୍ର ଖଦୀ ଓ ଗ୍ରାମୋଦ୍ୟୋଗ

ଆୟୋଗ' (କେଭିଆଇସି) ଉତ୍କଳ ଖଦୀ ମଣ୍ଡଳକୁ ହାତକୁ ନେଇଯିବା ଫଳରେ ଖଦୀ ମଣ୍ଡଳର ବିଶେଷ କ୍ଷତି ହେଲା । ଓଡ଼ିଶାରେ ଥିବା ମଣ୍ଡଳର ପ୍ରାୟ ସବୁ ଖଦୀ ଷ୍ଟୋର ବନ୍ଦ ହୋଇଗଲା । ସଂପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ ଓ ସର୍ବୋଦୟ ଖଦୀ ଆନ୍ଦୋଳନ ସହିତ ଖଦୀ ମଣ୍ଡଳ ସଂପୃକ୍ତ ରହିବା ଯୋଗୁଁ ତତ୍କାଳୀନ ସରକାରଙ୍କ ପ୍ରରୋଚନାରେ କେଭିଆଇସି ଏଭଳି ପଦକ୍ଷେପମାନ ନେଇଥିଲା ।

ଅବିଭକ୍ତ କୋରାପୁଟ ଜିଲ୍ଲାର ଗୋପାଳବାଡ଼ି ଠାରେ ଥିବା ଓଡ଼ିଶାର ଏକମାତ୍ର ଖଦୀ ତାଲିମ କେନ୍ଦ୍ରକୁ ବନ୍ଦ କରିଦେବା ଉଦ୍ଦେଶ୍ୟରେ ସେଠାରେ ଥିବା ଜମିକୁ ଜରୁରୀକାଳୀନ ପରିସ୍ଥିତି ସମୟରେ ରାଜ୍ୟର ତତ୍କାଳୀନ କଂଗ୍ରେସ ସରକାର ବିଭିନ୍ନ ଲୋକଙ୍କ ମଧ୍ୟରେ ବାଣ୍ଟି ଦେଇଥିଲା । ଏହା ବିରୋଧରେ ଜୟକୃଷ୍ଣ ମହାନ୍ତି ଆଇନର ଆଶ୍ରୟ ନେଇଥିଲେ । ସେ ଓକିଲ ନଥିଲେ ମଧ୍ୟ ବିଚକ୍ଷଣ ବୁଦ୍ଧି ବଳରେ ଖଦୀ କମିଶନ୍ ଓ ରାଜ୍ୟ ସରକାରଙ୍କ ବିରୋଧରେ ଅଦାଲତରେ ମକଦମା କରିଥିଲେ । ଫଳରେ ଖଦୀ କମିଶନ୍ ଏବଂ ଓଡ଼ିଶା ସରକାରଙ୍କୁ ଅପଦସ୍ତ ହେବାକୁ ପଡ଼ିଥିଲା ।

ଖଦୀ ଆନ୍ଦୋଳନ ପ୍ରତି ତାଙ୍କର ଆଗ୍ରହ ଓ ଅବଦାନ ଦୃଷ୍ଟିରୁ ରାଜ୍ୟ ସରକାର ତାଙ୍କୁ କିଛିକାଳ ଲାଗି ରାଜ୍ୟ ଖଦୀ ବୋର୍ଡର ସଭାପତି ପଦରେ ଅବସ୍ଥାପନ କରିଥିଲେ । ତାଙ୍କ କାର୍ଯ୍ୟକାଳ ସମୟରେ ରାଜ୍ୟରେ ଖଦୀ ଓ ଗ୍ରାମୋଦ୍ୟୋଗ କ୍ଷେତ୍ରରେ ବ୍ୟାପକ ପ୍ରସାର ଘଟିଥିଲା ।

ଆଜି ଦେଶରେ ଯେଉଁ ସଂକଟଜନକ ପରିସ୍ଥିତି ସୃଷ୍ଟି ହୋଇଛି, ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗରେ ଯିବା ହିଁ ତାର ସମାଧାନର ଏକମାତ୍ର ପନ୍ଥା । ଏହିକଥା କର୍ମ୍ମୀବାବୁ ତାଙ୍କ ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ସବୁବେଳେ କହି ଆସୁଥିଲେ । ଦେଶୀଲୁଣର ଉତ୍ପାଦନ, ବିକ୍ରି ଓ ବ୍ୟବହାର ଉପରେ ସରକାର ନିଷେଧାଦେଶ ଜାରି ପୂର୍ବକ ଯେଉଁ ଆଇନ୍ କରିଥିଲେ, ତା ବିରୋଧରେ କର୍ମ୍ମୀବାବୁ ସ୍ୱର ଉତ୍ତୋଳନ କରିଥିଲେ । ଉଦାରୀକରଣ ଅର୍ଥନୀତି ମାଧ୍ୟମରେ ଜଳ, ଜମି, ଜଂଗଲ ଉପରୁ ସାଧାରଣ ଲୋକଙ୍କର ଅଧିକାରକୁ ଛଡ଼ାଇ ନେବା ପାଇଁ ସରକାରଙ୍କ ଉଦ୍ୟମର ସେ ପ୍ରତିବାଦ କରି ଆସିଥିଲେ । ଗାନ୍ଧିଜୀଙ୍କ ପ୍ରଦର୍ଶିତ ସ୍ୱଦେଶୀ, ସ୍ୱାବଲମ୍ବନଶୀଳ ଅର୍ଥନୀତି ପ୍ରଭୃତିରେ ଥିବା ଦୃଢ଼ ଆସ୍ଥା ତଥା ସରଳ ଜୀବନଯାପନ ପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ ।

**ସଭାପତି, ଉତ୍କଳ ଖଦୀ ମଣ୍ଡଳ**
**(ତାରାଚାନ୍ଦ ପାଟଣା, କଟକ-୯)**

●●

# ଏକ ଅଲିଭା ଦୀବ ସମ୍ବନ୍ଧରେ

**ଡ଼ାଃ ବିଶ୍ୱଜିତ୍**

କର୍ମୀଭାଇଙ୍କ ସହିତ ଅନ୍ତରଙ୍ଗ ଭାବରେ ସଂପର୍କ ହେଲା ବ୍ରହ୍ମପୁରରୁ ରଣାଲଇ ଯିବା ରାସ୍ତାରେ। ରଣାଲଇରେ ସଂଘ ପରିବାର ଦ୍ୱାରା ଖ୍ରୀଷ୍ଟିଆନ ମାନଙ୍କ ବିରୁଦ୍ଧରେ ସଂଗଠିତ ଭାବରେ ଦଙ୍ଗା କରାଯାଇଥାଏ। ଲୋକମାନଙ୍କ ଘରଦ୍ୱାର ଜାଳି ପୋଡ଼ି ଛାରଖାର କରି ଦିଆଯାଇଥାଏ। କଟକରୁ ମନମୋହନ ଚୌଧୁରୀ, ଗୁରୁ ମହାନ୍ତି ଓ ଭୁବନେଶ୍ୱରରୁ କର୍ମୀଭାଇ ପ୍ରଭୃତି ବ୍ରହ୍ମପୁରରେ ପହଞ୍ଚିଲେ। ମୁଁ ସେତେବେଳେ ବ୍ରହ୍ମପୁରରେ ଅଧ୍ୟୟନ କରୁଥାଏ। ଉତ୍କଳ ନବଜୀବନ ମଣ୍ଡଳ ପକ୍ଷରୁ ରଣାଲଇରେ ସଦଭାବନା ସଭା ହେବ। ରାସ୍ତା ସାରା ସାଂପ୍ରଦାୟିକତା ଯୋଗୁ ଦେଶରେ ଉପୁଜୁଥିବା ଅଭାବନୀୟ ପରିସ୍ଥିତି, ରାଜନୈତିକ ପରିସ୍ଥିତି, ସ୍ୱାଧୀନତା ପରବର୍ତ୍ତୀ କାଳରେ ଭାରତର ସାଧାରଣ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ସମ୍ବନ୍ଧରେ ଚର୍ଚ୍ଚା ଚାଲିଥାଏ। ଆଗରୁ ମୁଁ ଜାଣିଥାଏ ସମାଜର ଅବକ୍ଷୟ , ସରକାରଙ୍କ ଅପାରଗତା ବିରୁଦ୍ଧରେ ଆନ୍ଦୋଳନ ଜାରି ରଖିଛନ୍ତି ମନମୋହନ ଚୌଧୁରୀ। କିନ୍ତୁ ଏଠି ଦେଖିଲି କର୍ମୀଭାଇ ମଧ୍ୟ କୌଣସି ଗୁଣରେ କମ ନୁହଁନ୍ତି। ସେ ମଧ୍ୟ ସାଧାରଣ ଲୋକଙ୍କ ସମସ୍ୟା ସବୁର ସମାଧାନ ପାଇଁ ଲଢ଼ିବା ପାଇଁ ଶିଂଘ ପକେଇ ତୟାର। ଏଥିରୁ ବୁଝିଲି ମନମୋହନଙ୍କ ଭଳି କର୍ମୀଭାଇ ମଧ୍ୟ ଜଣେ ମାନବବାଦୀ ସର୍ବୋଦୟ ନେତା।

ମାଳତୀ ଚୌଧୁରୀ ଜନ୍ମ ଶତବାର୍ଷିକୀ ବର୍ଷ। ସମସ୍ତେ କଟକଠାରୁ ଅନୁଗୁଳ ଯାଏ ମାଳତି ଦେବୀଙ୍କ ସ୍ମୃତିଚାରଣ ପାଇଁ ବ୍ୟବସ୍ଥା କରୁଥାଆନ୍ତି। ମୁଁ ସେତେବେଳେ ରାଷ୍ଟ୍ରୀୟ ଯୁବା ସଂଗଠନର ପ୍ରାଦେଶିକ ସଂଯୋଜକ। ଅନ୍ୟମାନଙ୍କଠାରୁ ଆମେ ଯୁବକମାନେ କିଛି ଭିନ୍ନ କରିବୁ ଏହି ଇଚ୍ଛାଥାଏ। ଏହି ସମୟରେ ଜାଣିବାକୁ ପାଇଲି ଉଭୟ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ମିଳିତଭାବେ ତାଙ୍କ ସାମାଜିକ ଜୀବନ ଆରମ୍ଭ କରିଛନ୍ତି ଜଗତସିଂହପୁର ତରିକୁନ୍ଦରୁ। ପୈତୃକ ସମ୍ପତ୍ତି ଉପରେ 'ତରି ଆଶ୍ରମ' ଆରମ୍ଭ କରି ସାଧାରଣ ଲୋକଙ୍କୁ ଆଧୁନିକ କୃଷି ସମ୍ବନ୍ଧରେ ଜ୍ଞାନ ଦେବାଠାରୁ ଆରମ୍ଭ କରି ସେ ସମୟର ବଙ୍ଗଳାର କ୍ରାନ୍ତିକାରୀ ସଶସ୍ତ୍ର ବିପ୍ଳବୀମାନଙ୍କୁ ଆଶ୍ରୟ ଦେବାଯାଏ, ପୁଣି ସେହି ଅଞ୍ଚଳରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବାଠାରୁ କଂଗ୍ରେସ - ସମାଜବାଦୀ ଦଳ ଗଠନ କରିବା ଯାଏ କାମ ଉଭୟ ସେଠାରେ ଚାଲୁ ରଖିଥିଲେ। ଏଇଠି ଅବସ୍ଥିତ ନବକୃଷ୍ଣ ଚୌଧୁରୀ ମହାବିଦ୍ୟାଳୟ ପରିସରରେ ରାଷ୍ଟ୍ରୀୟ ଯୁବା ସଂଗଠନର ରାଜ୍ୟସ୍ତରୀୟ ଶିବିର ଅନୁଷ୍ଠିତ ହେବା ଠିକ୍ ହେଲା। ଏହି ଶିବିର ପାଇଁ କେଉଁମାନଙ୍କୁ ଅତିଥି ଭାବରେ ଡ଼କାଯିବ, ସେ ସମ୍ବନ୍ଧରେ ଶୈଳଜ ରବି ଓ ରମାକାନ୍ତ ମଣ୍ଡଳଙ୍କ ସହିତ ଆଲୋଚନା କରିବାରୁ ଉଭୟ କର୍ମୀଭାଇଙ୍କ ନାଁଟି ସର୍ବ ପ୍ରଥମେ ପ୍ରସ୍ତାବ

କଲେ। ଆଉ ସତକୁ ସତ ଶିବିରରେ ଯାଇ ଜର୍ଯ୍ୟୀଭାଇ ପହଞ୍ଚିଲେ ଓ ନବକୃଷ୍ଣ - ମାଳତୀଙ୍କୁ ସ୍ମୃତିଚାରଣ କରିବା ସହିତ ଯୁବକ ଯୁବତୀ ମାନଙ୍କ ବିଭିନ୍ନ ଉପଦେଶ ଦେବାରେ ଲାଗିଥିଲେ। ତାଙ୍କର ଆଲୋଚନା ପ୍ରସଙ୍ଗରେ ସେ ଯୌତୁକ ପ୍ରଥାକୁ ଯୁବଗୋଷ୍ଠୀ ବିରୋଧ କରିବା ଉଚିତ ବୋଲି କହିବାରୁ କେତେକ ଶିବିରାର୍ଥୀ ତାଙ୍କୁ ଓଲଟା ପ୍ରଶ୍ନ କଲେ। କେଜ ବୟସର କୟକୃଷ୍ଣଙ୍କୁ ନାତି ବୟସର ଶିବିରାର୍ଥୀମାନେ ପଚାରିଲେ, "ଆପଣ ପରିଣତ ବୟସରେ ଆମକୁ ଯୌତୁକ ନେବା ଦେବା ଏକ ଅନ୍ୟାୟ ବୋଲି କହୁଚନ୍ତି। କିନ୍ତୁ ଆପଣଙ୍କ ବିବାହ ସମୟରେ ଆପଣ ଯୌତୁକ ନେଇଥିଲେ କି ନାହିଁ ?" ଉତ୍ତରରେ ସେ କହିଥିଲେ ଯେ, "ହଁ ମୁଁ ଯୌତୁକ ନେଇଥିଲି। କିନ୍ତୁ ଟଙ୍କା, ସୁନା ନୁହେଁ। ମୁଁ ଏବଂ ମୋର ପତ୍ନୀ କିରଣ ଲେଖା ଉଭୟ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରିଥିଲୁ। ଆମର କୌଣସି ବାସସ୍ଥାନ ନଥାଏ। ତେଣୁ ନୂଆକରି ଘର କରି ରୋଷେଇ ବାସ କରିବାପାଇଁ ଡ଼େକଚି, କଡ଼େଇ ଆଦି ବାହାଘର ପରେ ମତେ ମିଳିଥିଲା ଏହାକୁ ଯଦି ଯୌତୁକ କୁହାଯିବ, ତେବେ ମୁଁ ଏହି ଯୌତୁକ ନେଇଥିଲି।"

ଭୁବନେଶ୍ୱର ଗଲେ କର୍ଯ୍ୟୀଭାଇଙ୍କ ପାଖକୁ ଅଧିକାଂଶ ଦିନ ମୁଁ ଯାଇଥାଏ। ସେ ବି ଘଣ୍ଟା ଘଣ୍ଟା ଧରି ନ ଗପିଲେ ତାଙ୍କ ମନ ଭଲ ଲାଗେ ନାହିଁ କି ମୋର ତାଙ୍କ ଅନୁଭୂତି ସବୁ ନ ଶୁଣିଲେ ପେଟ ପୁରେ ନାହିଁ। ଦିନେ କହୁ କହୁ କହିଲେ, ବିଧାୟକ ଚାକିରି ଶେଷ ହେବାପରେ ସେ ଅନୁଗୋଳରେ ଥାଆନ୍ତି। ଆର୍ଥିକ ପରିସ୍ଥିତି ବିଷମ ହେବାରୁ ସେ ଏକ ଚାକିରି ଯୋଗାଡ଼ରେ ଚାରିଆଡ଼େ ସଂପର୍କ କରୁଥାଆନ୍ତି। ଏହି ସମୟରେ ଓଡ଼ିଶାର ଜଣେ ବିଶିଷ୍ଟ ରାଜନୀତିଜ୍ଞ ତଥା ପରବର୍ତ୍ତୀ ସମୟରେ ମୁଖ୍ୟମନ୍ତ୍ରୀ ହୋଇଥିବା ତାଙ୍କର ଜଣେ ରାଜନୈତିକ ବଂଧୁଙ୍କୁ ଦେଖାକରି ନିଜର ଅସୁବିଧା କଥା ଜଣାଇଲେ। ସେ ବାବୁ ରେଳ ଧାରଣା ତଳେ ବିଛା ହେବା ପାଇଁ ଆବଶ୍ୟକ ଶାଳ ବଲ୍ଲାରେ ସ୍ଲିପର ପ୍ରସ୍ତୁତ କରି ରେଳ ବିଭାଗକୁ ଯୋଗାଇବାର ଠିକା ନେଇଥାଆନ୍ତି। ତାଙ୍କର କରତ କଳରେ କର୍ଯ୍ୟୀଭାଇଙ୍କୁ ଚାକିରି ମିଳିଲା। କିନ୍ତୁ କର୍ଯ୍ୟୀଭାଇ ଦେଖିଲେ ସେଠାରେ ଅତି ଶସ୍ତା କାଳେଣି ଯୋଗ୍ୟ କାଠରେ ଶାଳ ବୋଲି ଷ୍ଟାମ୍ପ ମାରି ରେଳବିଭାଗକୁ ସପ୍ଲାଇ ଦେଉଥାଆନ୍ତି। ଚାରି ଛଅ ମାସ ଖଣ୍ଡେ ଚାକିରି କରିବା ପରେ କର୍ଯ୍ୟୀଭାଇଙ୍କୁ ତାଙ୍କର ବିବେକ ଏପରି ତାଡ଼ନା ଦେଲା ଯେ, ଅଭାବ ଅନାଟନକୁ ଖାତର ନ କରି ସେ ଚାକିରି ଛାଡ଼ିଦେଲେ।

ଓଡ଼ିଶାରେ ଅଖିଳ ଭାରତୀୟ ସର୍ବୋଦୟ ସମାଜ ସମ୍ମିଳନୀ ୨୦୦୩ ମସିହାରେ ହେବ ବୋଲି ଆମେ କେତେକଣ ଟୋକା ପାଟନାରେ ନିମନ୍ତ୍ରଣ କରିଦେଇ ଆସିଲୁ। ଖର୍ଚ୍ଚ ବାର୍ଚ୍ଚ ବାବଦରେ ଆମର ଚିନ୍ତା ନ ଥାଏ। କଟକ ଫେରିବାରୁ ଚୁନୀ ଅପା, କର୍ଯ୍ୟୀଭାଇ ଆଦି ପୁରୁଖା ମାନେ ପୁଣିଥରେ ସମ୍ମିଳନୀ ଓଡ଼ିଶାରେ ହେବ ବୋଲି ଯେତିକି ଖୁସି ହେଉଥାଆନ୍ତି, ଏଥିପାଇଁ ଖର୍ଚ୍ଚ ଅଟକଳ ତିଆରି କରି ଚାନ୍ଦାଭେଦା କରିବାକୁ ସେତିକି ଯୋଜନା ତିଆରି କରି ଆମକୁ ତାଗିଦ କରୁଥାଆନ୍ତି। ମୁଁ ସମ୍ମିଳନୀ କାମରେ କର୍ଯ୍ୟୀଭାଇଙ୍କ ପାଖକୁ ଯାଇଥାଏ। ସେ ମତେ ପଚାରିଲେ, "ତମେ ସମ୍ମିଳନୀ ଅଭ୍ୟର୍ଥନା ସମିତିର ସଂପାଦକ ହୋଇଛ ପରା। ମୋର ଏହି ସମ୍ମିଳନୀରେ ନିର୍ଦ୍ଦିଷ୍ଟ କାମ କ'ଣ, ତାହା ମତେ

ଜଣାଇଲେ ମୁଁ ସେହିପରି କାମ କରିବି ।" ମୁଁ କହିଲି, "ଆପଣ ସମ୍ମିଳନୀକୁ ଏକଲକ୍ଷ ଟଙ୍କା ଯୋଗାଡ଼ କରି ଦେବେ"। ତାଙ୍କ ମୁଣ୍ଡ ଉପରେ ଏକ ବଡ଼ ବୋଝ ଲଦି ଦେଇ ଆମେ ହାଲୁକା ହୋଇଗଲୁ ବୋଲି ମୁଁ ଭାବୁଥାଏ। କିନ୍ତୁ ଅଳ୍ପଦିନ ଭିତରେ ସେ ଏକଲକ୍ଷ ଟଙ୍କା ଯୋଗାଡ଼ କରି ଦେଲେ। ଜୀବନ ବ୍ୟାପୀ ସାଧନା ଓ ତ୍ୟାଗ ଯୋଗୁ ତାଙ୍କ ପକ୍ଷରେ ଏତେଗୁଡ଼ାଏ ଟଙ୍କା ଖୁବ୍ ଶୀଘ୍ର ଯୋଗାଡ଼ କରିବା ସମ୍ଭବ ହୋଇପାରିଲା ବୋଲି ମୋର ସେଦିନ ହୃଦବୋଧ ହୋଇଥିଲା।

ଆମେମାନେ ଦକ୍ଷିଣ କୋରିଆର ପୋସ୍କୋ କମ୍ପାନୀଙ୍କୁ ଜଗତସିଂପୁର ଜିଲ୍ଲାର ପାରାଦ୍ୱୀପଠାରେ ବିରୋଧ କରୁଥାଉ। ଆନ୍ଦୋଳନରୁ କଟକ ଭୁବନେଶ୍ୱର ଆସିଲେ କର୍ଯ୍ୟାଭାଇଙ୍କ ପାଖକୁ ଯାଏ। ପୋସ୍କୋର ସମସ୍ତ ତଥ୍ୟ ସେ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଠାରୁ ବୁଝିକରି ରଖିଥାଆନ୍ତି। ମୁଁ ଗଲେ ସେ ସବୁ ଆଲୋଚନା କରନ୍ତି। ବାରମ୍ବାର କହନ୍ତି, "ତୁମର ହଜମ କ୍ଷମତାଠାରୁ ତୁମେ ଅଧିକ କାମ କରୁଛ। ବୁଲୁଭାଇ ଥିଲେ, ଏସବୁ କଂପାନୀକୁ ତୀବ୍ର ବିରୋଧ କରନ୍ତେ। ଆମମାନଙ୍କ ପକ୍ଷରୁ ସେ କାମ ତୁମେ ଜାରି ରଖ।"

ବିଭିନ୍ନ କାରଣରୁ 'ସର୍ବୋଦୟ' ପତ୍ରିକା ବନ୍ଦ ହୋଇ ରହିଥାଏ। କର୍ଯ୍ୟାଭାଇ ତା'ର ଅନ୍ୟତମ ସଂପାଦକ। ଆଖିକୁ ଭଲ କରି ଦେଖା ଯାଉ ନଥାଏ କି ଧାଡ଼ିଟିଏ ଲେଖିବା ପାଇଁ ହାତ ସାଥି ଦେଉ ନ ଥାଏ। ଦିନେ ଭୁବନେଶ୍ୱର ଘରେ ମତେ କହିଲେ, "ତୁମେ ସର୍ବୋଦୟ ପତ୍ରିକା ଚଳାନ୍ତ ନାହିଁ। ଆମ କର୍ମୀଙ୍କ କଥା, ଆମ କାମ କଥା ଜଣାଇବା ପାଇଁ ସେହି ଏକମାତ୍ର ମାଧ୍ୟମଟି ବନ୍ଦ ହୋଇଯିବା ଦ୍ୱାରା ସେ ବିବ୍ରତ ଥାଆନ୍ତି। ତାଙ୍କରି କଥା ଅନୁସାରେ ଆଜିଯାଏ ସର୍ବୋଦୟ ପତ୍ରିକାର ଦାୟିତ୍ୱ ମୋ ପାଖୁ ପର୍ଯ୍ୟନ୍ତ ମୁଁ ସମ୍ଭାଳିଛି। ଗାଧୁଆ ଘରେ ପଡ଼ିଯାଇ ରାଜଧାନୀ ନର୍ସିଂହୋମରେ ଭର୍ତ୍ତି ହୋଇଥାଆନ୍ତି। ଚୁନ୍ନୀ ଅପା, ସୁମିତ୍ରା ମାଆଙ୍କ ସହ ମୁଁ ତାଙ୍କୁ ଦେଖିବାକୁ ଯାଇଥାଏ। ଭଲକରି ସମସ୍ତଙ୍କୁ ଚିହ୍ନିପାରୁ ନାହାନ୍ତି ବୋଲି ଶୁଣିଥାଏ। ଆମେ ପହଞ୍ଚିବା ପରେ ଚୁନ୍ନୀଅପା ଓ ସୁମିତ୍ରା ମାଆଙ୍କୁ ଚଟକରି ଚିହ୍ନିଦେଲେ। ମୋତେ ଚିହ୍ନିପାରୁ ନଥାନ୍ତି। ଆମେ ଫେରିବା ବେଳକୁ ମୋ ହାତକୁ ଧରି ପକାଇ କହିଲେ ବିଶ୍ୱଜିତ। ତାଙ୍କ ଅନ୍ତର ଭିତରେ ଅଛି ବୋଲି ଜାଣି ମୋ ଛାତି କୁଣ୍ଢେମୋଟ ହୋଇଗଲା।

କର୍ଯ୍ୟାଭାଇଙ୍କ ଦେହତ୍ୟାଗ, ତାଙ୍କ ପରିବାରର ଯେତିକି କ୍ଷତି କଲା, ସର୍ବୋଦୟ ଆନ୍ଦୋଳନ ବିଶେଷ କରି ସର୍ବୋଦୟ ପ୍ରତି ଆକୃଷ୍ଟ ହୋଇ ଆସୁଥିବା ଯୁବପିଢ଼ୀଙ୍କ ପାଇଁ ଏକ ଅପୂରଣୀୟ କ୍ଷତି ଘଟିଲା।

ରାଷ୍ଟ୍ରୀୟ ଯୁବା ସଂଗଠନ
ଗୁଣନିଧି ଭବନ, ଯୋବ୍ରିଆ ସାହି, କଟକ-୧

●●

# ସେ ଥିଲେ ନିଷ୍ପେଷିତର ବନ୍ଧୁ

**ଜୟକୃଷ୍ଣ ମହାନ୍ତି**

ମୋ ଭଳି ଅନେକେ ତାଙ୍କୁ ବାପା ବୋଲି ଡ଼ାକନ୍ତି । ଖାଲି ଡ଼ାକନ୍ତି ନାହିଁ-ନିଜ ବାପାଙ୍କ ଠାରୁ ଅଧିକ ଶ୍ରଦ୍ଧା କରନ୍ତି ଏବଂ ଅବାରିତ ପୁତ୍ରସ୍ନେହ ମଧ୍ୟ ପାନ୍ତି । ଲୋକେ କହନ୍ତି ଭଗବାନ ଦୀନଦୁଃଖୀଙ୍କର ବନ୍ଧୁ-ଅସହାୟର ସହାୟ । ତେଣୁ ତାଙ୍କ ନାଁ ଦୀନବନ୍ଧୁ । ଆମେ ଭଗବାନଙ୍କୁ ଦେଖିନାହୁଁ... ତାଙ୍କୁ ଦେଖିଛୁ । ସେ ଥିଲେ ନିଷ୍ପେଷିତ ଜନତାର ବନ୍ଧୁ- ଯେପରି ସେଇମାନଙ୍କ ପାଇଁ ସେ ଜନ୍ମ ନେଇଥିଲେ ।

୧୯୩୬ ମସିହାରେ ମୁଁ ତାଙ୍କ ସଂପର୍କରେ ଆସିଲି । ଖାଲି ସଂପର୍କରେ ଆସିଲି ନୁହେଁ-କହିବାକୁ ଗଲେ ତାଙ୍କ ପରିବାର ଭୁକ୍ତ ହୋଇଗଲି । ମୁଁ ଅତି ଗରୀବ ଘରେ ଜନ୍ମ ହୋଇଥିଲି । ଯେତେବେଳେ ଟଙ୍କାରେ ଚାଉଳ ୨୦ ସେର, ଦୁଧ ୧୬ ସେର, ଘିଅ ଏକସେର । ହେଲେହେଁ ଆମ ଗାଁର ତିନୋଟି ଘରକୁ ଛାଡ଼ିଦେଲେ ଅନ୍ୟ ଘରେ ଦିବେଳା ଖାଇବାକୁ ନଥାଏ । ଭଙ୍ଗା କୋଳଥ ଚୂନାରେ ଖୁଦପକାଇ ଜାଉକରି ଖାଇ ଆମେ କୌଣସି ମତେ ବଞ୍ଚୁଥିଲୁ । ଦିନେ ଦିନେ ଖାଡ଼ାଖାଡ଼ା ଉପାସ ବି ରହି ଯାଉଥିଲୁ । ଖାଲି ଆମଗାଁ ନୁହେଁ, ସବୁ ଗାଁ ଅବସ୍ଥା ଊଣା ଅଧିକେ ଏଇଆ ଥିଲା । ସରକାର, ରଜା, ଜମିଦାର, ମଠ ମହନ୍ତ, ସାହୁକାର, ମହାଜନ ସମସ୍ତେ ଯୋକଭଳି ଏଇ ଗରିବଙ୍କ ରକ୍ତ ଝୁଣି ପକାଉଥିଲେ ଏବଂ ଶାଗୁଣା ଭଳି ତାଙ୍କ କଙ୍କାଳରୁ ମାଂସ ଓଟାରି ଖାଇ ଯାଉଥିଲେ ।

ଆମ ଭଳି ଗରୀବ ଘର ପିଲେ ଯେତେବେଳେ ପାଠ ପଢ଼ିବାର ସ୍ୱପ୍ନ ବି ଦେଖୁ ନଥିଲେ । ମାତ୍ର କିପରି ଏକ ଅଜ୍ଞାତ ଶକ୍ତି ମୋତେ ଠେଲି ଆଣିଥିଲା । ମୁଁ ପୁରୀରେ ଜଣେ ଜାତୀୟବାଦୀ ମହନ୍ତଙ୍କ ସହାୟତରେ ପାଠ ପଢ଼ିଲି । ସେଇ ସମୟରେ ବଙ୍ଗଳାରୁ ବହିଷ୍କୃତ ହୋଇ ନଜରବନ୍ଦୀ ଅବସ୍ଥାରେ ରହୁଥିବା ଜଣେ ସଂନ୍ତ୍ରାସବାଦୀ-ଶ୍ରୀ ସତୀନ୍ଦ୍ର ନାଥ ଗୁହଙ୍କ ସଂପର୍କରେ ଆସେ । ସଶସ୍ତ୍ର ବିପ୍ଳବ କରିଆରେ ଇଂରେଜମାନଙ୍କୁ ଏ ଦେଶରୁ ହଟାଇବା ପାଇଁ ସେ ଯୁବକମାନଙ୍କୁ ସଂଗଠିତ କରୁଥାନ୍ତି । ସର୍ବଶ୍ରୀ ଭଗବତୀ ଚ଼ରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଗୁରୁଚ଼ରଣ ପଟ୍ଟନାୟକ, ଗୋକୁଳ ମୋହନ ରାୟ୍ ଚୂଡ଼ାମଣି ପ୍ରଭୃତି ଯୁବକମାନେ କଟକରୁ ମଝିରେ ମଝିରେ ସେଠାକୁ ଆସନ୍ତି-ନାନା ଆଲୋଚ଼ନା, ମସୁଧା କରନ୍ତି । ଏମାନେ ଯେତେବେଳେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ କଂଗ୍ରେସ ଭିତରେ ଏକ ଶକ୍ତିଶାଳୀ ବାମପନ୍ଥୀ ସଂଗଠନ ଗଢ଼ି କୃଷକ-ପ୍ରଜା ଆନ୍ଦୋଳନ ଖୁବ୍ ଜୋରସୋରରେ ଚ଼ଳାଇଥାନ୍ତି ।

ମୁଁ ୧୯୩୬ରେ ମାଟ୍ରିକ୍ ପାସ୍ କରି କଲେଜରେ ପଢ଼ିବାପାଇଁ କଟକ ଆସି ଟିଉସନ୍ ଠିକ୍ କରୁଥାଏ । ବାପା କେଉଁଠୁ ଖବର ପାଇଲେ କେଜାଣି, ମୋତେ ଡ଼କାଇ ପଠାଇଲେ ଏବଂ ତାଙ୍କରି ଘରେ ରହି ପଢ଼ିବାପାଇଁ କହିଲେ । ତାଙ୍କ ଝିଅ ଉତ୍ତରା (ବୁବୁ)କୁ ଯେତେବେଳେ ୯ ବର୍ଷ ଏବଂ ପୁଅ ବିନାୟକ (କାଲୁ)କୁ ୬ ବର୍ଷ ବୟସ ହୋଇଥାଏ । ମୁଁ ଏ ଦୁହିଁଙ୍କ ପଢ଼ା ଦେଖେ ଏବଂ ନିଜେ ପଢ଼େ ।

ବାଖରାବାଦ କାଠଯୋଡ଼ି କୂଳର ଏ ଘରଟି ଥିଲା ବିପ୍ଳବର ପୀଠସ୍ଥଳୀ । ଇଂରେଜ ସରକାର

ଶାସନ ନାମରେ ଶୋଷଣ ଓ ଅତ୍ୟାଚାରର ଯେଉଁ ଅଟ୍ଟାଳିକାଟି ଏ ଦେଶରେ ଛିଡ଼ା କରାଇଥିଲେ ତାକୁ ପିଟିଭାଙ୍ଗି ଚୂରମାର କରିଦେବାକୁ ଏବଂ ତାରି ଉପରେ ସ୍ୱାଧୀନ ଭାରତର ନୂଆ ସୌଧଟି ଠିଆ କରାଇବାପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁ ସଂଗ୍ରାମ ଚାଲିଥିଲା ସେଥିରେ ଚୌଧୁରୀ ପରିବାରର ପ୍ରତ୍ୟେକେ ନିଜନିଜକୁ ଉତ୍ସର୍ଗ କରି ଦେଇଥିଲେ। ସାନଭାଇ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କର ଦୀପ୍ତିମୟୀ ସହଧର୍ମିଣୀ ଶ୍ରୀମତୀ ମାଳତୀ ଚୌଧୁରୀ ଉଦାମ ଯୁବଶକ୍ତିକୁ ଉଦ୍‌ବୁଦ୍ଧ ଓ ସଂଗଠିତ କରି ସେଇ ଅଟ୍ଟଳିକାଟିକୁ ଧୂଳିସାତ କରିବାପାଇଁ ଜୀବନକୁ ପଣକରି ଲାଗି ପଡ଼ିଥିବା ବେଳେ ବଡ଼ ଭାଇ ସ୍ଥିତପ୍ରଜ୍ଞ ମହର୍ଷି ଗୋପବନ୍ଧୁ ଚୌଧୁରୀ ତାଙ୍କର ସ୍ୱନାମଧନ୍ୟା ଧର୍ମପତ୍ନୀ ରମାଦେବୀଙ୍କ ସହ ବରୀଠାରେ ଆଶ୍ରମ ସ୍ଥାପନ କରି ନବଭାରତର ନିର୍ମାତାମାନଙ୍କୁ ଗଢ଼ିବାରେ ଆତ୍ମ ନିୟୋଗ କରିଥିଲେ। ଏମାନେ ସେ ଯୁଗର ଅତି ଆଭିଜାତ ପରିବାରରେ ଜନ୍ମ ହୋଇ ଅତି ଅୟସରେ ବଢ଼ି ଆସିଥିଲେ ମଧ୍ୟ ସମାଜର ସବା ତଳ ସ୍ତରର ଲୋକଙ୍କ ସହ ନିଜକୁ ମିଶାଇ ଦେଇଥିଲେ ଏବଂ ଏକାନ୍ତ ସରଳ ଜୀବନ ଯାପନ କରୁଥିଲେ।

୧୯୩୭ ବର୍ଷଟି ଏକ ଯୁଗାନ୍ତକାରୀ ବର୍ଷ। ମାତ୍ର ଅଳ୍ପଦିନ ଆଗରୁ ୧୯୩୭ ଏପ୍ରିଲ ପହିଲାଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଥାଏ। ୧୯୩୭ ଏପ୍ରିଲ ପହିଲାଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଥାଏ। ୧୯୩୫ ଶାସନ ଆଇନ ଅନୁସାରେ ହୋଇଯାଇଥିବା ନିର୍ବାଚନରେ ସଂଖ୍ୟା ଗରିଷ୍ଠ ସମର୍ଥନ ଲାଭକରି କଂଗ୍ରେସ ଦଳ ୧୯୩୭ ଜୁଲାଇ ମାସରେ ଓଡ଼ିଶାର ଶାସନ ଦାୟିତ୍ୱ ଗ୍ରହଣ କରିଥାନ୍ତି। କିନ୍ତୁ ୨୬ଟି ଦେଶୀୟରାଜ୍ୟ ଅନ୍ତର୍ଭୁକ୍ତ ସୁବିସ୍ତୃତ ଅଞ୍ଚଳ ଓଡ଼ିଶାରୁ ଅଲଗାକରି ରଖାଯାଇଥାଏ। ସେଠାରେ ରାଜାମାନେ ଇଂରେଜ ସରକାରଙ୍କ ବାହୁଛାୟା ତଳେ ନିରଙ୍କୁଶ ଶାସନ ଚଳାଇଥାନ୍ତି। ପ୍ରଜାମାନଙ୍କ ଉପରେ ଅତ୍ୟାଚାରର ସୀମା ନଥାଏ। ବେଠି, ଭେଟି, ମାଗଣ, ରସଦ ଆଦି ଦେଇ ଦେଇ ପ୍ରଜାଙ୍କର ଅନ୍ତ ଦୁହିଁ ହୋଇଯାଉଥାଏ। ରାଜାଙ୍କ ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ଢେଙ୍କାନାଳ ଓ ତାଳଚେରରେ ପ୍ରଜା ଆନ୍ଦୋଳନ ସଂଗଠିତ କରୁଥାନ୍ତି ଶ୍ରୀ ନବକୃଷ୍ଣ ଚୌଧୁରୀ ମାଳତୀ ଚୌଧୁରୀ ଓ ତାଙ୍କର ବାମପନ୍ଥୀ ସହଯୋଗୀ ଗଣ। ଏଥିପାଇଁ ସର୍ବଶ୍ରୀ ସାରଙ୍ଗଧର ଦାସ, ବୈଷ୍ଣବ ପଟ୍ଟନାୟକ, ମହେଶ ଚନ୍ଦ୍ର ସୁବାହୁସିଂହ, ପବିତ୍ର ମୋହନ ପ୍ରଧାନ, ଅନନ୍ତ ପଟ୍ଟନାୟକ ଓ ଗୌରାଙ୍ଗ ଚରଣ ଦାସ ପ୍ରଭୃତିଙ୍କୁ ଚରମ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଛି। ଢେଙ୍କାନାଳ ସତ୍ୟାଗ୍ରହ କଥା ମନେ ପଡ଼ିଲେ ଏବେବି ଲୋମ ଟାଙ୍କୁରି ଉଠେ। ସେଦିନ ଗୌରାଙ୍ଗ ବାବୁଙ୍କ ଉପରେ ଯେଉଁ ନିଷ୍ଠୁର ମାଡ଼ ହୋଇଥିଲା ତା' ଫଳରେ ସେ ଜୀବନର ଶେଷଯାଏ ମରିରେ ମରିରେ ଅଶେଷ ଦୈହିକ ଯନ୍ତ୍ରଣା ଭୋଗ କରୁଥିଲେ। କିନ୍ତୁ ନିଆଁରେ ଘିଅ ଢାଳିବା ଭଳି ଏ ଅତ୍ୟାଚାର ଫଳରେ ସଂଗ୍ରାମ ବେଳୁବେଳ ତେଜି ଉଠି ସବୁ ଗଡ଼ଜାତକୁ ବ୍ୟାପି ଯାଇଥିଲା ଏବଂ ଅବଶେଷରେ ରାଜୁଡ଼ାଶାସନ ଲୋପ ପାଇଥିଲା। ସୂକ୍ଷ୍ମଭାବରେ ଦେଖିଲେ ଏ ନାଟକର ମୂଳ ସୂତ୍ରଧର ହେଉଛନ୍ତି ଶ୍ରୀ ନବକୃଷ୍ଣ ଚୌଧୁରୀ। ପୁରୀ, କଟକ, ବାଲେଶ୍ୱର ପ୍ରଭୃତି ଇଂରେଜ ଶାସିତ ଅଞ୍ଚଳକୁ ମୋଗଲବନ୍ଦୀ କୁହାଯାଉଥିଲା। ଗଡ଼ଜାତର ରାଜାଙ୍କ ଭଳି ମୋଗଲବନ୍ଦୀରେ ଜମିଦାରମାନେ ସର୍ବେସର୍ବା ଥିଲେ। ଇଂରେଜମାନେ ୧୯୧୩ ଓଡ଼ିଶା ପ୍ରଜାସତ୍ତ୍ୱ ଆଇନରେ ଚାଷୀମାନଙ୍କୁ ସେମାନଙ୍କ ଚାଷ ଜମି ଉପରେ କେତେକ ଅଧିକାର ଦେଇଥିଲେ ହେଁ ପ୍ରଜାଙ୍କ ବାଡ଼ିବଗିଚାରେ ଥିବା ଗଛର ଫଳ ଏବଂ ପୋଖରୀର ମାଛ ଉପରେ ମଧ୍ୟ ପ୍ରଜାଙ୍କର ଅଧିକାର

ନଥିଲା। ଏସବୁ ଜମିଦାର ଲୁଟି ନେଉଥିଲେ। କୌଣସି ପ୍ରଜା ଜମି ଖଣ୍ଡିଏ ବିକ୍ରିକଲେ ଜମିଦାରଙ୍କ ସିରସ୍ତାରେ ଖରିଦଦାରଙ୍କ ନାମ ଦର୍ଜ କରିବାପାଇଁ ଅତ୍ୟଧିକ ପାଉଣା ଦେବାକୁ ହେଉଥିଲା। ଏହାକୁ ଦାଖଲ ଖାରଜ ରୋଷମ କୁହାଯାଉଥିଲା। ଜମିଦାରଙ୍କ ଭଳି ମଠ ମହନ୍ତମାନଙ୍କର ଅତ୍ୟାଚାରର ମଧ୍ୟ ସୀମା ନଥିଲା। ଏମାନେ ବେଠି, ଭେଟି ଓ ଅନ୍ୟାନ୍ୟ ପାଉଣା ତ ନେଉଥିଲେ; ତାଛଡ଼ା ପ୍ରଜାଙ୍କ ଉପରେ ନାନା ଅକଥନୀୟ ଅତ୍ୟାଚାର କରୁଥିଲେ। ମୋର ମନେ ଅଛି ପୁରୀ ଜିଲ୍ଲାର ଗୋଟିଏ ମଠ ମହନ୍ତଙ୍କ ଜମିଦାରୀ ଇଲାକାରେ ନିୟମ ଥିଲା ଯେ ସେଇ ଇଲାକାର କୌଣସି ଲୋକର ବାହାଘର ହେଲେ ବୋହୂ ଚତୁର୍ଥୀ ଦିନ ମହନ୍ତ ମହାରାଜାଙ୍କ ଶୟନକକ୍ଷକୁ ଆସିବ। ଏଭଳି ଅକଥନୀୟ ବ୍ୟଭିଚାର ଧର୍ମ ନାମରେ ଚାଲିଥିଲା ଏବଂ ଲୋକେ ନାଚାର ଅବସ୍ଥାରେ ଯାକୁ ସମ୍ଭାଳି ନେବା ଫଳରେ କ୍ରମେ ଏହା ଚଳଣିରେ ପଡ଼ିଯାଇ ଥିଲା। ୧୯୩୩-୩୪ ମସିହାରୁ ଶ୍ରୀଯୁକ୍ତ ଚୌଧୁରୀ ରାଜା, ଜମିଦାର, ମଠ ମହନ୍ତ ଆଦିଙ୍କର ଶୋଷଣ ଓ ବ୍ୟଭିଚାର ବିରୁଦ୍ଧରେ ଗଣ ଆନ୍ଦୋଳନ ଓ ସଂଗଠିତ ପ୍ରତିରୋଧ ଚଳାଇଥିଲେ। ୧୯୩୬ରେ ସେ ବ୍ୟବସ୍ଥା ସଭାକୁ ନିର୍ବାଚିତ ହୋଇ ଆସିବା ପରେ ପରେ ସରକାରୀ ସ୍ତରରେ ଏ ଦିଗରେ କାର୍ଯ୍ୟାନୁଷ୍ଠାନ କରାଇଥିଲେ। ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ କରାଯାଇ ଦାଖଲ-ଖାରଜ, ରୋଷମ ଉଠାଇ ଦିଆଯାଇଥିଲା ଓ ପ୍ରଜାମାନଙ୍କୁ ନିଜ ଜମିରେ ଗଛ ମାଛ ଉପରେ ଅଧିକାର ଦିଆଯାଇଥିଲା। ହିନ୍ଦୁ-ଦେବୋତ୍ତର ଆଇନ ପ୍ରଣୟନ କରି ମଠ, ମନ୍ଦିର ସମ୍ପତ୍ତିର ଅପବ୍ୟବହାର ଉପରେ କଟକଣା ପ୍ରୟୋଗ କରାଯାଇଥିଲା ଏବଂ କାଳକ୍ରମେ ସ୍ୱେଚ୍ଛାଚାରୀ ମହନ୍ତ ଓ ସେବକମାନଙ୍କ ହାତରୁ ଏ ସଂପତ୍ତି କାଢ଼ିନେଇ ଏହାର ପରିଚାଳନା ଦାୟିତ୍ୱ ଗୋଟିଏ କମିଟିକୁ ଦିଆ ଯାଇଥିଲା। ଅତ୍ୟଧିକ ଲାଭଖୋର ମହାଜନମାନଙ୍କ ଦାଉରୁ ଋଣ ଗ୍ରହିତାମାନଙ୍କୁ ରକ୍ଷା କରିବାପାଇଁ ମହାଜନୀ ଆଇନ ପାସ୍ କରାଯାଇ କାର୍ଯ୍ୟକାରୀ କରାଗଲା। ଗରୀବ ଲୋକଙ୍କ ସୁରକ୍ଷା ପାଇଁ ଏ ସବୁକୁ ସରକାରୀ ସ୍ତରରେ ପ୍ରଥମ ପଦକ୍ଷେପ ବୋଲି କୁହାଯାଇପାରେ।

୧୯୩୯ ମସିହା। ଇଂରେଜ ସରକାର ଭାରତୀୟମାନଙ୍କ ଇଚ୍ଛା ବିରୁଦ୍ଧରେ ଭାରତକୁ ୨ୟ ବିଶ୍ୱଯୁଦ୍ଧରେ ସାମିଲ କରିବା ହେତୁ କଂଗ୍ରେସ ଦଳ ବିରୁଦ୍ଧରେ ଭାରତକୁ ୨ୟ ବିଶ୍ୱଯୁଦ୍ଧରେ ସାମିଲ କରିବା ହେତୁ କଂଗ୍ରେସ ଦଳ ଶାସନ ଦାୟିତ୍ୱରୁ ଅପସରିଗଲେ ଏବଂ ଶେଷ ସଂଗ୍ରାମ ପାଇଁ ଦେଶବାସୀଙ୍କୁ ପ୍ରସ୍ତୁତ କରିବାକୁ ଲାଗିଲେ। ସେତେବେଳେ ଓଡ଼ିଶା କଂଗ୍ରେସ ଆନୁଷ୍ଠାନିକ ଭାବେ ବାମପନ୍ଥୀମାନଙ୍କ ନିୟନ୍ତ୍ରଣାଧୀନ ଥାଏ। ମାଳତୀଦେବୀ ଥାନ୍ତି ଏହାର ସଭାପତି ଏବଂ ସୁରେନ୍ଦ୍ର ଦ୍ୱିବେଦୀ ଥାନ୍ତି ସଂପାଦକ। ୧୯୪୨ ପ୍ରାରମ୍ଭରେ ଯୁଦ୍ଧର ଘନଘଟା ନିବିଡ଼ତର ହୋଇ ଆସୁଥାଏ। ଏକ ପକ୍ଷରେ ଇଂଲଣ୍ଡ ଓ ଋଷିଆ ଏବଂ ଅପର ପକ୍ଷରେ ଜର୍ମାନୀ ଇଟାଲୀ ଓ ଜାପାନ ମଧ୍ୟରେ ପ୍ରବଳଯୁଦ୍ଧ ଫଳରେ ବ୍ରିଟିଶ ସାମ୍ରାଜ୍ୟ ଟଳମଳ ହେଉଥାଏ। ଜାପାନର ରଣତରୀ ଓଡ଼ିଶା ଉପକୂଳରେ ମଝିରେ ମଝିରେ ବୋମାବର୍ଷଣ କରୁଥାଏ। ଲୋକଙ୍କ ମନବଳ ଯେପରି ଭାଙ୍ଗି ନ ଯାଏ, ସେମାନଙ୍କ ଭିତରେ ଯେଭଳି ଆତଙ୍କ ବ୍ୟାପିନଯାଏ ସେଇ ଦୃଷ୍ଟିରୁ ଉପକୂଳ ଅଞ୍ଚଳରେ ସ୍ୱେଚ୍ଛାସେବକ ସଂଗଠନ ଗଢ଼ି ଲୋକଙ୍କୁ ବଳଦେବା ପାଇଁ ଏବଂ ଶାନ୍ତି ଶୃଙ୍ଖଳା ରକ୍ଷା ବ୍ୟବସ୍ଥା କରିବା ପାଇଁ କେତେକ ବଛାବଛା କର୍ମୀଙ୍କୁ ଉପକୂଳ ଅଞ୍ଚଳରେ ଅବସ୍ଥାପିତ କରିବା ପାଇଁ ମୀରାବେନଙ୍କ

କରିଆରେ ଗାନ୍ଧିଜୀ ବାର୍ତ୍ତାପଠାଇ ଥାନ୍ତି। ସେଦିନ ବାପି ଓ ନୁମା ମୋତେ ସ୍ୱରାଜ୍ୟାଶ୍ରମକୁ ଡ଼ାକିଲେ ଏବଂ ମୋତେ କେତେକ ବଂଧୁଙ୍କ ସହ କଲେଜ ଛାଡ଼ି ଏ କାମ ହାତକୁ ନେବାପାଇଁ ଅନୁରୋଧ କଲେ। ଏ ସମୟରେ ଗାନ୍ଧିଜୀଙ୍କ ଅଗ୍ନିବର୍ଷା ଲେଖା ଆମ୍ଭମାନଙ୍କ ମନକୁ ଉଚ୍ଚାଟ କରୁଥାଏ। ତେଣୁ ମୁଁ, ବନମାଳି ପଟ୍ଟନାୟକ, ଉପେନ୍ଦ୍ର ମହାନ୍ତି ପ୍ରଭୃତି କଲେଜ ଛାଡ଼ିଦେଲୁ ଓ ପୁରୀ ଜିଲ୍ଲା କଂଗ୍ରେସ କମିଟି ସଙ୍ଗେ ସାମିଲ ହୋଇ ଉପକୂଳବର୍ତ୍ତୀ ଗାଁ ମାନଙ୍କରେ କାମ କଲୁ। କିଛି ଦିନପରେ ଭାରତଛାଡ଼ ଅଗଷ୍ଟ ବିପ୍ଲବରେ ଆମମାନଙ୍କୁ ଗିରଫ କରି ନେଇ ସରକାର ଜେଲରେ ରଖିଲେ।

ଦୀର୍ଘ ୩ ବର୍ଷ ଧରି ଜେଲ ଭିତରେ ବାପିଙ୍କ ଅତି ନିକଟରେ ରହିବାର ସୌଭାଗ୍ୟ ଆମମାନଙ୍କୁ ମିଳିଥିଲା। ବାହାର ଭଳି ଭିତରେ ମଧ୍ୟ ସେ କର୍ମୀଙ୍କର ଜ୍ଞାନ ପରିସର ବଢ଼ାଇବା ପାଇଁ ବରାବର ଲାଗିଥାନ୍ତି। କାମ, ପଢ଼ା, ଖେଳ ହସି ଖୁସି ସବୁ ଭିତରେ କର୍ମୀମାନଙ୍କୁ ମଜାଇ ରଖିବା, ତାଙ୍କର ଗୋଟିଏ ବିଶେଷତ୍ୱ। ଏତେ ବଡ଼ଲୋକ ହୋଇ ମଧ୍ୟ ମାମୁଲି କର୍ମୀଙ୍କ ସହ ସାଙ୍ଗ ସାଥିଙ୍କଭଳି କାରବାର ତାଙ୍କ ଭଳି କ୍ୱଚିତ୍ କେହି କରିବା ଦେଖାଯାଏ। କର୍ମୀଙ୍କ ଭିତରେ ଦୁଃଖ ନୈରାଶ ଯେପରି ନ ପଶିବ, ଉତ୍ସାହ ଉନ୍ମାଦନା ଯେପରି ମଉଳି ନ ଯିବ ସେ ବିଷୟରେ ସେ ନାନା କୌଶଳ ପ୍ରୟୋଗ କରୁଥିଲେ।

୧୯୪୫ ଶେଷ ବେଳକୁ ଇଂରେଜ ସରକାର ବନ୍ଦୀମାନଙ୍କୁ ଜେଲରୁ ଖଲାସ କରି ଦେଲେ ଏବଂ ୧୯୪୬ରେ ନିର୍ବାଚନ ହେଲା। ଏଥିରେ କଂଗ୍ରେସ ଦଳ ବିପୁଳ ସଂଖ୍ୟାଗରିଷ୍ଠତା ହାସଲ କରି ମନ୍ତ୍ରୀମଣ୍ଡଳ ଗଢ଼ିଲା। ଶ୍ରୀ ହରେକୃଷ୍ଣ ମହତାବ ହେଲେ ମୁଖ୍ୟମନ୍ତ୍ରୀ ଏବଂ ଶ୍ରୀ ଚୌଧୁରୀ ହେଲେ ରାଜସ୍ୱ ମନ୍ତ୍ରୀ। ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ଶ୍ରୀ ମହତାବ ଓ ଶ୍ରୀ ଚୌଧୁରୀ କାନ୍ଧକୁ କାନ୍ଧ ମିଳାଇ କାମ କରିଛନ୍ତି। ଶ୍ରୀ ମହତାବଙ୍କ କର୍ମକୁଶଳତାକୁ ଶ୍ରୀ ଚୌଧୁରୀ ବରାବର ତାରିଫ କରନ୍ତି; ମାତ୍ର ନୀତିଗତ ଭାବେ ଉଭୟଙ୍କ ମଧ୍ୟରେ ମୌଳିକ ମତପାର୍ଥକ୍ୟ ଥିଲା। ଶ୍ରୀ ଚୌଧୁରୀ ଡ଼ରାଇ ଶାସିବାର ବିରୋଧୀ ଥିଲେ। ଶାସନ କ୍ଷମତାକୁ କାବୋଡ଼ି ନ ଧରି ସହଯୋଗୀମାନଙ୍କ ଭିତରେ ବିଛାଇ ଦେଲେ ଶାସନ ଉନ୍ନତ ହେବ ବୋଲି ତାଙ୍କର ମତଥିଲା। ସହକର୍ମୀମାନଙ୍କ ଗୌରବରେ ସେ ନିଜକୁ ଗୌରାବାନ୍ୱିତ ମନେ କରୁଥିଲେ ଏବଂ ସେମାନଙ୍କୁ ନିଜ ଉନ୍ନତିର ପାହାଚ଼ କରିବାର ଚ଼ିନ୍ତା ମଧ୍ୟ କେବେ ତାଙ୍କ ମନକୁ ଛୁଇଁ ନଥିଲା। ବରଂ ସେମାନଙ୍କୁ ଆଗରେ ବସାଇ ନିଜେ ପଛରେ ବସିବାରେ ସେ ଗୌରବ ବୋଧ କରୁଥିଲେ। ଶ୍ରୀଯୁକ୍ତ ଚୌଧୁରୀ ଥିଲେ ଏକମାତ୍ର ବ୍ୟକ୍ତି ଯାହାଙ୍କର ସମଗ୍ର ଓଡିଶାର ବିଭିନ୍ନ ଜମିଜମା ବ୍ୟବସ୍ଥା ସଂପର୍କରେ ବାସ୍ତବ ଓ ଆଇନଗତ ଗଭୀର ଜ୍ଞାନଥିଲା। ଯେତେବେଳେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଜମିଜମା ଆଇନ ବ୍ୟବସ୍ଥାର ପ୍ରଚ଼ଳନ ଥାଏ। ଓଡ଼ିଶାର ଯେଉଁ ଅଞ୍ଚଳ ପୂର୍ବରୁ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା ସେଠାରେ ସେହି ପ୍ରଦେଶର ଜମିଜମା ଆଇନ କାର୍ଯ୍ୟକାରୀ ହେଉଥାଏ। ତାହାଛଡ଼ା ପ୍ରତ୍ୟେକ ଦେଶୀୟ ରାଜ୍ୟରେ ସେମାନଙ୍କର ନିଜସ୍ୱ ରାଜସ୍ୱ ଆଇନର ଚ଼ଳଣ ଥାଏ। ଏ ସବୁ ବ୍ୟବସ୍ଥାର ସମନ୍ୱୟ ବିଧାନ କରି ତଥା ଚ଼ାଷୀ ଓ ସରକାର ମଧ୍ୟରେ ରହିଥିବା ମଧ୍ୟସତ୍ତ୍ୱକୁ ଉଚ୍ଛେଦ କରି ଏକ ପ୍ରଗତିଶୀଳ ଜମିଜମା ବ୍ୟବସ୍ଥାର ରୂପ ଦେବାପାଇଁ ଶ୍ରୀ ଚୋଧୁରୀଙ୍କର ଅଧ୍ୟକ୍ଷତାରେ ଏକ କମିଟି ୧୯୪୬ରେ ଗଠନ କରାଯାଇଥିଲା। ୧୯୪୮ ଜାନୁଆରୀ ୩୦ ତାରିଖ ଦିନ ମହାମାନବ ମହାତ୍ମା

ଗାନ୍ଧୀଙ୍କ ହତ୍ୟା ଶ୍ରୀ ଚୌଧୁରୀଙ୍କ ଚିନ୍ତା ରାଜ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ସମାଜ ଓ ରାଜନୀତି କ୍ଷେତ୍ରରେ ଗଢ଼ି ଉଠିଥିବା ନ୍ୟସ୍ତ ସ୍ୱାର୍ଥର ମିଳିତ ଷଡ଼ଯନ୍ତ୍ର ଏ ହତ୍ୟା ପଛରେ ରହିଥିବା କଥା ତାଙ୍କୁ ଜଳଜଳ ଦେଖା ଯାଇଥିଲା । ସେ ଅସ୍ଥିର ହୋଇ ପଡ଼ିଥିଲେ । କ୍ଷମତା ରାଜନୀତି ଉପରୁ ତାଙ୍କର ଆସ୍ଥା ତୁଟି ଯାଇଥିଲା । ଏ ଘଟଣାର ମାତ୍ର ୨ ମାସ ପରେ ୧୯୪୮ ମାର୍ଚ୍ଚ ମାସରେ ତାଙ୍କର ଏକମାତ୍ର ପୁଅ କାଲୁ ୧୬ ବର୍ଷ ବୟସରେ ଦେହାନ୍ତ କଲା । ଏହାର ପରେ ପରେ ଏପ୍ରିଲ ମାସରେ ସେ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇ ଅନୁଗୁଳ ଚାଲି ଯାଇଥିଲେ । ମନ୍ତ୍ରୀତ୍ୱ ଛାଡ଼ିଥିଲେ ମଧ୍ୟ ସେ ଜମିଜମା କମିଟିର ସଭାପତି ଭାବରେ କାମ କରିବା ପାଇଁ ରାଜି ହୋଇଥିଲେ । ଏହି କମିଟି ୧୯୪୯ ଜୁଲାଇ ମାସରେ ତାଙ୍କର ରିପୋର୍ଟ ଦେଇଥିଲା । ଏହା ଓଡ଼ିଶା ଜମିଜମା କମିଟି ବା ଚୌଧୁରୀ କମିଟି ରିପୋର୍ଟ ନାମରେ ପ୍ରଖ୍ୟାତ । ଶାସନର ବିକେନ୍ଦ୍ରୀକରଣ ପାଇଁ ଏବଂ ଶକ୍ତିଶାଳୀ ପଞ୍ଚାୟତ ରାଜ ବା ଗ୍ରାମ ସ୍ୱରାଜ୍ୟ ସ୍ଥାପନ ପାଇଁ ଏହି ରିପୋର୍ଟରେ ଯେଉଁ କ୍ରାନ୍ତିକାରୀ ପ୍ରସ୍ତାବମାନ ଦିଆଯାଇଥିଲା ତାହା ସମଗ୍ର ଭାରତର ଚିନ୍ତା ରାଜ୍ୟରେ ଅଭିନବ ବିପ୍ଳବ ସୃଷ୍ଟି କରିଥିଲା ।

୧୯୫୦ ଏପ୍ରିଲ ମାସରେ ଶ୍ରୀ ମହତାବ୍ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଯୋଗ ଦେଲେ । ଶ୍ରୀ ଚୌଧୁରୀଙ୍କର ବିରାଟ ବ୍ୟକ୍ତିତ୍ୱ ଏବଂ ପ୍ରଗତିଶୀଳ ଚିନ୍ତା ଓ କାର୍ଯ୍ୟ ପାଇଁ ତାଙ୍କୁ ପଣ୍ଡିତ ଜବାହରଲାଲ ନେହେରୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଏହି ସମୟରେ ପଣ୍ଡିତ ନେହେରୁ ପୁରୀଠାରେ ବାପାଙ୍କୁ ଭେଟି ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରିବାପାଇଁ ତାଙ୍କୁ ଏପରି ଚାପି ଧରିଲେ ଯେ ସେ ତାଙ୍କ ଅନୁରୋଧ ଏଡ଼ି ନ ପାରି ରାଜିହେଲେ ଏବଂ ୧୯୫୦ ଏପ୍ରିଲ ମାସରୁ ଓଡ଼ିଶା ଶାସନ କ୍ଷେତ୍ରରେ ଏକ ଅଭିନବ ଅଧ୍ୟାୟର ସୃଷ୍ଟି ହେଲା ।

୧୯୪୬ ଠାରୁ ୧୯୫୬ ଯାଏ ଦଶ ବର୍ଷ ଧରି ମୁଁ ଓଡ଼ିଶା ବିଧାନସଭାର ସଦସ୍ୟ ଥାଇ ଶ୍ରୀ ଚୌଧୁରୀଙ୍କ ନେତୃତ୍ୱରେ ମୋର ରାଜନୈତିକ ତଥା ବିଧାୟକ ଜୀବନ ଗଠନ କରିଥିଲି । ଶାସନ ତଥା ବିରୋଧୀ ଦଳର ବହୁ ସଦସ୍ୟ ମୋରି ପରି ତାଙ୍କୁ ଗୁରୁଭଳି ମାନୁଥିଲେ । ମୁଖମନ୍ତ୍ରୀଙ୍କୁ ବ୍ୟବସ୍ଥା ସଭାର ନେତା (Leader of the House) ବୋଲି କୁହାଯାଏ । ଶ୍ରୀ ଚୌଧୁରୀହିଁ ଏକମାତ୍ର ମୁଖ୍ୟମନ୍ତ୍ରୀ ଯାହାଙ୍କ ପାଖରେ ଉଭୟ ପକ୍ଷର ସମସ୍ତ ସଦସ୍ୟଙ୍କର ମୁଣ୍ଡ ନଇଁ ଯାଉଥିଲା । ସେ ବାସ୍ତବରେ ଗୃହର ନେତା ସମ୍ମାନ ପାଉଥିଲେ ।

ରାଜସ୍ୱ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଭାବରେ ଶ୍ରୀ ଚୌଧୁରୀ ବହୁ ପ୍ରଗତିଶୀଳ ଆଇନ ପ୍ରଣୟନ କରିଥିଲେ ଏବଂ ଶାସନର ମୋଡ଼ ବଦଳାଇ ଦେଇଥିଲେ । କୋରାପୁଟ ଓ ଗଞ୍ଜାମ ମାଳ ଅଞ୍ଚଳରେ ପ୍ରଚଳିତ ମୁସ୍ତାଜାରୀ ପ୍ରଥା ଉଚ୍ଛେଦ କରି ମୁସ୍ତାଦାରମାନଙ୍କର ଶୋଷଣ ଓ ଅତ୍ୟାଚାରରୁ ନିରୀହ ଆଦିବାସୀମାନଙ୍କୁ ରକ୍ଷା କରାଯାଇଥିଲା । ଭାଗଚାଷୀ ତା'ର ଚାଷ କରୁଥିବା ଜମିରୁ କିପରି ଉଚ୍ଛେଦ ନ ହେବ ଏବଂ ଉତ୍ପାଦନର ନ୍ୟାଯୋଚିତ ଅଂଶ ପାଇବ ସେ ଦିଗରେ ବ୍ୟବସ୍ଥା ଭାଗଚାଷ ଆଇନ ଓ ଚାଷୀ ସାହାଯ୍ୟ ଆଇରେ କରାଯାଇ ଥିଲା ।

୧୯୫୧-୫୨ ମସିହାରେ ତତ୍କାଳୀନ ଅର୍ଥମନ୍ତ୍ରୀ ହିସାବରେ ଶ୍ରୀ ଚୌଧୁରୀ ସର୍ବପ୍ରଥମେ ଓଡ଼ିଆରେ ବଜେଟ ଭାଷଣ ଦେଇ ଏକ ନୂତନ ପରମ୍ପରା ସୃଷ୍ଟି କରିଥିଲେ ଏବଂ ସରକାରୀ ଭାଷା ଆଇନ ପ୍ରଣୟନ କରି ସରକାରୀ ଦପ୍ତର ଓ ଆଇନ

ଅଦାଲତରେ ସବୁକାମ ଓଡ଼ିଆରେ କରାଯିବ ବୋଲି ନିର୍ଦ୍ଦେଶ ଦେଇଥିଲେ। କମିଦାରୀ ଉଚ୍ଛେଦ ଆଇନ କରି ସାନବଡ଼ ପ୍ରାୟ ୩ ଲକ୍ଷ କମିଦାରୀର ଉଚ୍ଛେଦ କରାଯାଇଥିଲା। ଏହା ଫଳରେ ଏକ ଅତ୍ୟାଚାରୀ ସାମନ୍ତ ଯୁଗର ଅବସାନ ଘଟିଲା। ଗ୍ରାମପଞ୍ଚାୟତ ଆଇନ ପ୍ରଣୟନ କରି ୧୯୫୦-୫୧ରେ ପ୍ରଥମେ ଗ୍ରାମପଞ୍ଚାୟତ ନିର୍ବାଚନ କରାଯାଇଥିଲା।

ଅଞ୍ଚଳ ଶାସନ ଆଇନ ତାଙ୍କ ସମୟର ଏକ ଯୁଗାନ୍ତକାରୀ ଆଇନ। ସ୍ୱାଧୀନ ଭାରତରେ ଶାସନର ବିକେନ୍ଦ୍ରୀକରଣ ପାଇଁ ଯେଉଁ ପରିକଳ୍ପନା ଥିଲା ଅଞ୍ଚଳ ଶାସନ ଆଇନରେ ତାହାକୁ ସର୍ବୋତଭାବେ ରୂପାୟିତ କରାଯାଇଥିଲା। ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ଅଞ୍ଚଳ ସଭା ହାତରେ ସେ ଅଞ୍ଚଳର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ, ସେଚନ, ସମବାୟ, ପଶୁପାଳନ ଓ ରାସ୍ତା ନିର୍ମାଣ ଆଦି ଯାବତୀୟ କାର୍ଯ୍ୟର ଦାୟିତ୍ୱ ଦିଆଯାଇଥିଲା ଏବଂ ଭୂରାଜସ୍ୱ ଆଦାୟ କରି ଖର୍ଚ୍ଚ କରିବାର ଅଧିକାର ମଧ୍ୟ ଦିଆଯାଇଥିଲା। ଶ୍ରୀ ଚୌଧୁରୀ ଦୀର୍ଘ ୩ ବର୍ଷ ଧରି ଏଥିପାଇଁ ପ୍ରଗାଢ଼ ପରିଶ୍ରମ କରିଥିଲେ। ବିଧାନସଭାର ସବୁ ଦଳର ବଛାବଛା ସଦସ୍ୟମାନଙ୍କୁ ନେଇ ଗଢ଼ା ଯାଇଥିବା ଏକ ସିଲେକ୍ଟକମିଟି ୪୭ ଥର ବସି ଏ ଆଇନର ଖୁଣ୍ଟିନାଣ୍ଟି ବ୍ୟବସ୍ଥା କରିଥିଲେ ; ଏବଂ ୧୯୫୫ ମସିହା ଡ଼ିସେମ୍ବର ୧୨ ତାରିଖ ଦିନ ଏହି ଆଇନ ବ୍ୟବସ୍ଥା ସଭାରେ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା।

ଏହାର କେତେ ମାସ ପରେ ଶ୍ରୀ ଚୌଧୁରୀ ଭାଗଚାଷୀମାନଙ୍କର ଉଚ୍ଛେଦ ଉପରେ ଅଧିକ କଟକଣା ପ୍ରୟୋଗ କରି ଏବଂ ଚାଷ ଉତ୍ପାଦନର ୬ ଭାଗରୁ ୫ ଭାଗ ଚାଷୀ ପାଇବ ବୋଲି ବ୍ୟବସ୍ଥା ରଖି ଯେଉଁ ଚାଷୀ-ସାହାଯ୍ୟ ଆଇନ (Tenant relief bill) ବିଧାନସଭାରେ ଆଗତ କରିଥିଲେ ଯାହା କଂଗ୍ରେସ ଦଳ ଭିତରୁ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲା। ସେଥିରେ ମର୍ମାହତ ହୋଇ ଶ୍ରୀ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ କଂଗ୍ରେସ ଦଳରୁ ଅଲଗା ହୋଇ ଯାଇଥିଲେ। ତାଙ୍କ ଅନ୍ତେ ଶ୍ରୀ ମହତାବ ମୁଖ୍ୟମନ୍ତ୍ରୀ ହେଲେ ଏବଂ ଶ୍ରୀ ଚୌଧୁରୀଙ୍କ ପରିକଳ୍ପିତ ଶାସନ ବିକେନ୍ଦ୍ରୀକରଣ ବ୍ୟବସ୍ଥାକୁ କାର୍ଯ୍ୟକାରୀ କଲେ ନାହିଁ। ଅଞ୍ଚଳ ଶାସନ ଆଇନର ବିଶେଷ ଦିନର ଆଲୋଚନାରେ ଶ୍ରୀ ଚୌଧୁରୀ ବିଧାନସଭା କକ୍ଷରେ ନିକର ମନୋଭାବ ବ୍ୟକ୍ତ କରି ଭାବ ବିହ୍ୱଳ କଣ୍ଠରେ କହିଥିଲେ, (ଆଗାମୀ ନିର୍ବାଚନରେ) "ମୁଁ କୌଣସି ଅଞ୍ଚଳରେ ଚେଷ୍ଟାକରି ପଞ୍ଚାୟତର ସଭ୍ୟ ହେବି ଏବଂ ସେଠାରୁ ଅଞ୍ଚଳ ସଭାସଭ୍ୟ ହୋଇ ଚେୟାରମ୍ୟାନ ହେବି। ତା' ନ ହେଲେ ମୋର ଯେଉଁ ଆକାଂକ୍ଷା ରହିଛି ତାହା ଅପୂରଣ ରହିଯିବ। ଅଞ୍ଚଳ ସଭାର ଚେୟାରମ୍ୟାନ୍ ହେଲେ ଯେଉଁ ସୁଯୋଗ ମିଳିବ ତାହା ମନ୍ତ୍ରୀ ହେଲେ ମିଳିବ ନାହିଁ, ଏମ୍.ଏଲ୍.ଏ. ହେଲେ ମିଳିବ ନାହିଁ, ସରକାରୀ କର୍ମଚାରୀ ହେଲେ ମିଳିବ ନାହିଁ। ସେ ଯେଉଁ ସୁଯୋଗ ମିଳିବ ତାହା ଲୋଭନୀୟ ମନେ ହେଉଛି"।

ଶ୍ରୀଯୁକ୍ତ ଚୌଧୁରୀଙ୍କର ଏ ଆକାଂକ୍ଷା ଅପୂରଣ ରହିଗଲା। ଭାରତରେ ଶାସନ ବ୍ୟବସ୍ଥା ବିକେନ୍ଦ୍ରିତ ହେବା ପରିବର୍ତ୍ତେ ଅଧିକାରୁ ଅଧିକ କେନ୍ଦ୍ରୀଭୂତ ହେବାରେ ଲାଗିଛି। ସେଇ କେନ୍ଦ୍ରୀଭୂତ ବ୍ୟବସ୍ଥାର ଶିକାର ହୋଇ ୧୯୭୫ ମସିହାରେ କାରାଗାରର ନିର୍ଜନ କୋଠରୀରେ ଦୀର୍ଘଦିନ ଆବଦ୍ଧ ରହିବା ଫଳରେ ତାଙ୍କର ସ୍ୱାସ୍ଥ୍ୟ ଯେଭଳି ଭାଙ୍ଗି ପଡ଼ିଲା ତହିଁରୁ ସେ ଆଉ ଉଠିପାରିଲେ ନାହିଁ। ୧୯୮୪ ମସିହା ଜୁନମାସ ୨୪ ତାରିଖ ଦିନ ସେ ସବୁଦିନ ପାଇଁ ଆଖି ବୁଜିଦେଲେ।

# ମନେପଡ଼େ ତୁମକଥା

ଡକ୍ଟର କୁଞ୍ଜବିହାରୀ ମହାନ୍ତି

କିଏ ସେ ଡାକି ଦେଲା ଯେ
କାହାର କଥାରେ ପଡ଼ି ଚାଲିଗଲ ?
ଏବେ ସବୁ ଶୂନଶାନ
ଯେଣିକି ଚାହିଁଲେ ଦିଶେ
ତୁମ ହସ ହସ ମୁହଁ
ମନଖୋଲା ଖିଲି ଖିଲି ହସ
ଭାସି ଆସେ ରହି ରହି

ଏବେ ତ ସରିନି ଦୁଃଖ
ଝଡ଼ି-ବଢ଼ି-ମରୁଡ଼ି ଓ ରୋଗ-ଭୋକ-ଶୋଷ
କବଳିତ କରିଦିଏ ମଣିଷକୁ ଆଜି
ଏ ବେଳରେ ମନେପଡ଼େ ତୁମକଥା
ମାନବର ସେବା ତୁମେ
କରିଥିଲ ଜୀବନର ବ୍ରତ,
ଏବେ ସବୁ ଦୁଃଖ ଏଠି ଥିବାବେଳେ
ତୁମେ କିଆଁ ଚାଲିଗଲ ?
ଝୁରୁଛନ୍ତି ସଭିଏଁ ସତତ ।

ପବନ ବହିଲେ ଏଠି
କାନେ କାନେ କହିଦିଏ
ତୁମରି ରାଗିଣୀ,
ଜୋଛନା ଆସିଲେ ଏଠି ତୁମଲାଗି
ହସଫୁଟେ ସବୁରି ମୁହଁରେ,
ସତେ ଅବା ତୁମେ ଏଠି ଦୋଳିଖେଳ
ଜୀବନର ପ୍ରତି ନିଶ୍ୱାସରେ ।

ଆକାଶ ଦେଖିଲେ ଆଜି
ମନେ ପଡ଼େ ତୁମ କଥା
ତୁମେ ଥିଲ ଆକାଶଠୁ
ବିଶାଳ-ଉଦାର
ସମୁଦ୍ର ଦେଖିଲେ ଆଜି
ମନେପଡ଼େ ତୁମକଥା
ତୁମେଥିଲ ସମୁଦ୍ରଠୁ
ଅତଳ-ଗଭୀର,
ଅହରହ ଶୁଭୁଥିଲା ହୃଦୟତନ୍ତ୍ରୀରୁ ତୁମ
ଜୀବନ ସଂଗୀତ
ସ୍ନେହ-ପ୍ରେମ-ଶାନ୍ତି-କରୁଣାର ।

ଏ ଦେଶରେ ମନ୍ତ୍ରୀ, ଯନ୍ତ୍ରୀ, ନେତା, ଶିଳ୍ପପତି
ଗାଡ଼ି-ଘୋଡ଼ା, ଅଟ୍ଟାଳିକା ହାଉଯାଉ
ଅଭାବ ରହିଛି ଯାହା ମଣିଷ ପଣିଆ
ଯେମିତି ମଣିଷ ପରି ମଣିଷଟେ ଖୋଜାବେଳେ,
ବାରବାର ମନେପଡ଼େ ତୁମକଥା
ଆଜିର ଏ ସ୍ୱାର୍ଥପର ଜନ-ଜଙ୍ଗଲରେ ।

ହେ ବୁଦ୍ଧନଗର 'ବୁଦ୍ଧ' !
ତୁମ ନାଆଁ ଏମିତିକା
ମମତାର ମହକ ଯେ
ଗାଆଁରୁ ସହରଯାଏ-
ମାଟିରୁ ଆକାଶ
କ୍ଷେତରୁ ଖମାର ଯାଏ
ସଭିଏଁ ସେ ବାସ୍ନାରେ ବିଭୋର,
ତୁମେ ଥିଲ ଏ ମାଟିର ଥାନାପତି
ତୁମକୁ ମୋ କୋଟି ନମସ୍କାର ।

ପ୍ରାକ୍ତନ ଅଧ୍ୟକ୍ଷ, ନିମାପଡ଼ା କଲେଜ ନିମାପଡ଼ା, ପୁରୀ ।

# ଅଶ୍ରୁ-ତର୍ପଣ

**ଶ୍ରୀମତୀ ଉଷାରାଣୀ ଦାସ**

ହେ ସ୍ୱର୍ଗୀୟ ପିତା, ହେ ମହାନ୍ ଆତ୍ମା
ତୁମ ପାଦେ କରୁ ଅଶ୍ରୁ-ତର୍ପଣ,
ବିଷାଦର ବିଧୂର ଲଗନେ ହେ ବଂଧୁ
ତୁମେ ନଶ୍ୱର, ତୁମେ ଅନିର୍ବାଣ।

ସମୟର ସୀମାରେଖା ଡେଇଁ ବାହୁଡ଼ିଲ
ମହତ ପଣେ ଉଦ୍‌ଭାସିତ କରି,
ଅନେକ ବାକୀକାମ ପୂରଣ ହୋଇନାହିଁ
ଅସହାୟେ ନୟନୁ ଝରାନ୍ତି ବାରି।

ପାରି ହୋଇ ମୃତ୍ୟୁ-ବୈତରଣୀ ନଦୀ
ଚାଲିଗଲ ଦୂରେ ବହୁଦୂରେ,
ଖୋଜୁଛନ୍ତି ତୁମକୁ ଦିବାନିଶି
ତୁମ ପ୍ରୀୟ ବଂଧୁ ସହୋଦରେ।

ଅନାବିଳ ସ୍ନେହ, ଅତୁଟ ବଂଧନ
ଧୈର୍ଯ୍ୟ ତୁମ ହିମାଳୟ,
ତୁମ ଆଦର୍ଶରେ ଗଢ଼ା ଯା ଜୀବନ
ନାହିଁ ତାର ପରାଜୟ।

ତୁମ ତ୍ୟାଗ, ନିଷ୍ଠା, ସେବା, ଆଦର୍ଶକୁ
ଜୀବନେ ପାଥେୟ କରି,
ହିଂସାଦ୍ୱେଷଭରା ଆଜିଏ ସଂସାରେ
ବଞ୍ଚିବୁ କୁହ କିପରି ?

ମେଘମାଳେ ରହି, ଦିଅହେ ଝରାଇ
ଆଶୀଷର ମଧୁଧାରା,
ଯୁଗ, ଯୁଗ ପାଇଁ ତୁମେ ରହିଥିବ
ହୃଦୟରେ ଅପାଶୋରା।

**୭, ଉଷାଭବନ, ୟୁନିଟ-୩,
ଷ୍ଟେସନ ସ୍କୋୟାର, ଭୁବନେଶ୍ୱର**

●●

# ଅନୁଚିନ୍ତା

ସଞ୍ଜୁତା ମହାନ୍ତି

କର୍ମବହୁଳ ଜୀବନରେ ଖୁସିଗପ କରିବାପାଇଁ ଫୁରସତ ମିଳେନି, ମିଳନ୍ତି ନାହିଁ ରୁଚିପୂର୍ଣ୍ଣ ମଣିଷ। ବେଳେ ବେଳେ ଜୀବନର ଦୋଛକିରେ ଅକସ୍ମାତ ଭେଟ ହୋଇଯାଏ ସେମାନଙ୍କ ସହିତ, ଯେଉଁମାନଙ୍କ ସହ ଭାବର ବିନିମୟ ହୋଇପାରେ। ଓଜନିଆ ଜୀବନଟା ହାଲୁକା ହାଲୁକା ଲାଗେ। ସ୍ମୃତିର ପଟାଳିରେ ଭାସିଯାଏ ଅଦିନିଆ ମେଘ। ଶୀତୁଆ ପବନରେ ମନ ଖୁସି ହୋଇଯାଏ।

ନିକଟରେ ଘର କାମରେ ବାହାରକୁ ଯାଉ ଯାଉ ହଠାତ୍ ଦେଖା ହୋଇଗଲା ଡକ୍ଟର ତପନ ମହାନ୍ତିଙ୍କ ସଙ୍ଗେ। ସେ ସ୍ୱାମୀଙ୍କ ସାଙ୍ଗରେ ବାରଣ୍ଡାରେ ବସି ଲାୟନସ୍ କ୍ଲବ୍ ସମ୍ବନ୍ଧରେ କଥାବାର୍ତ୍ତା ହେଉଥାନ୍ତି। ମୋତେ ଦେଖି ସଙ୍ଗେ ସଙ୍ଗେ ସେ ଚେୟାର ଛାଡ଼ି ଠିଆ ହେଲେ ଏବଂ ମୋତେ ସମ୍ଭାଷଣ ଜଣାଇଲେ। ସ୍ୱାମୀ ତାଙ୍କର ପରିଚୟ କରାଇଦେଲେ। କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ଠିଆ ହୋଇ ମୋର ପ୍ରଶଂସା ଗାନ କଲେ ଏବଂ ଆମ ଘର ସମ୍ମୁଖରେ ଥିବା ବଗିଚାର ଭୂୟସୀ ପ୍ରଶଂସା କରିଚାଲିଲେ। ସେ ମୋ ବିଷୟରେ ଶୁଣିଥିଲେ ଏବଂ ମୋତେ ବହୁବାର ଦୂରରୁ ଦେଖିଥିଲେ।

ସଭ୍ୟ ଓ ବିଚାରବନ୍ତ ମଣିଷମାନେ ନାରୀ ଜାତିକୁ ସମ୍ମାନ ଦେଇ ଶିଖିଥାନ୍ତି। ସାଧାରଣଭାବେ ଠିଆ ହୋଇ ଭଦ୍ରମହିଳାଙ୍କୁ ସମ୍ଭାଷଣ ଜଣାଇବା ସୌଜନ୍ୟତା ବୋଲି ଗ୍ରହଣ କରାଯାଇଥାଏ। ଜୀବନର ଗତି ପଥରେ ଏପରି ବିଚାରବନ୍ତ ମଣିଷଙ୍କ ସଂଖ୍ୟା ବହୁତ କମ୍। ତପନବାବୁ ସେଥିପାଇଁ ବିଶେଷ ପ୍ରଶଂସାର ଅଧିକାରୀ।

ପରିଚୟରୁ ଜାଣିଲି ସେ ହେଉଛନ୍ତି ସ୍ୱର୍ଗତ ଜୟକୃଷ୍ଣ ମହାନ୍ତି ଓ ସ୍ୱର୍ଗତ କିରଣଲେଖା ମହାନ୍ତିଙ୍କ ସୁଯୋଗ୍ୟ ସନ୍ତାନ। ଜୟକୃଷ୍ଣ ବାବୁ ସ୍ୱାଧୀନତା ପରେ ପ୍ରଥମେ ନିମାପଡ଼ା ଓ କାକଟପୁର ବିଧାନ ସଭା ଏବଂ ପରେ ପିପିଲି ବିଧାନ ସଭା ମଣ୍ଡଳୀରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ। ପରେ ପରେ ତାଙ୍କ ପତ୍ନୀ କିରଣଲେଖା ମଧ୍ୟ ପିପିଲି ବିଧାନ ସଭା କ୍ଷେତ୍ରରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ।

ମୋର ମନେ ପଡ଼ିଗଲା ମୋର ଜେଜେ ବାବୁ ଗୋବିନ୍ଦ ପ୍ରସାଦ ସିଂହଙ୍କ କଥା। ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଆଳି କନିକା ବିଧାନ ସଭା କ୍ଷେତ୍ରରୁ ପ୍ରଥମ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ। ତାଙ୍କର କାର୍ଯ୍ୟାବଳୀ ଅଦ୍ୟାବଧି ସେ ଅଞ୍ଚଳରେ ସ୍ମରଣୀୟ ହୋଇ ରହିଛି।

ଭଲ ଲାଗିଲା, ଆମେ ଦୁଇଜଣ ରାଜନୈତିକ ପରିବାରର ଦାୟାଦ। ନିଜର ନିଜର ବୋଲି ଲାଗିଲେ। ତାଙ୍କ ସାଙ୍ଗରେ ପୂର୍ବରୁ ପରିଚୟ ହୋଇଥିଲେ ଜୟକୃଷ୍ଣ ବାବୁ ଓ କିରଣଲେଖା ଦେବୀଙ୍କ ସହ ନିଶ୍ଚିତ ଭାବରେ ପରିଚୟ ହୋଇପାରିଥାନ୍ତା। ସ୍ୱାଧୀନତା ଆନ୍ଦୋଳନରେ ତାଙ୍କର ସହଯୋଗର ବିବରଣୀ ତାଙ୍କଠାରୁ ଶୁଣିବାର ସୁଯୋଗ ମିଳିଥାନ୍ତା। ଜଣେ ଆଦର୍ଶବାଦୀ ନେତା ହିସାବରେ ତାଙ୍କର ଅନୁଭୂତି ନିଶ୍ଚିତ ଭାବରେ ରାଜନୈତିକ ଜୀବନର ଝଡ଼ଝଞ୍ଜାକୁ ଅତିକ୍ରମ କରିବାପାଇଁ ମୋତେ ସାହାଯ୍ୟ କରିଥାନ୍ତା।

ଭଗବାନଙ୍କ ନିକଟରେ ପ୍ରାର୍ଥନା, ତାଙ୍କର ଆତ୍ମାର ସଦ୍‌ଗତି ହେଉ।

ପୂର୍ବତନ ବିଧାୟକ
ବୋରାଇ ନିର୍ବାଚନ ମଣ୍ଡଳୀ

# ଜୟୀ ଭାଇ

**କୃଷ୍ଣା ମହାନ୍ତି**

ଗତବର୍ଷ ଅଗଷ୍ଟ ୨୫ ତାରିଖ ରାତି ଦଶଟା ପରେ ଫୋନ ବାଜିଲା। ତପନର ଶାନ୍ତ ଗମ୍ଭୀର ସ୍ୱର ଶୁଭିଲା- "ଡିନୁ ମାଉସୀ, ବାପା ଚାଲିଗଲେ। ଆମେ କାଲି ସକାଳ ଆଠଟା ବେଳକୁ ପୁରୀ ସ୍ୱର୍ଗଦ୍ୱାରକୁ ନେଇଯିବୁ।" -କେଇଦିନ ପୂର୍ବରୁ ଯାଇ ନର୍ସିଂହୋମ୍‌ରେ ଦେଖି ଆସିଥିଲି। ସେ ବହୁତ କଷ୍ଟ ପାଉଥିଲେ। ତପନ, ଡଲି, ଗୌରୀ, ସୋମା ଓ ପରିବାରର ସମସ୍ତେ ଚିକିତ୍ସା ଓ ସେବାରେ ଲାଗି ରହିଥିଲେ। ଜୀବନଦୀପ କ୍ରମେ କ୍ଷୀଣ ହୋଇ ଆସୁଛି ଜାଣି ମଧ୍ୟ କେଉଁଠି ଏକ ଦୁର୍ବାର ଆଶା ଥିଲା-କିଛି ଗୋଟାଏ ଅଲୌକିକ ଘଟି ଭଲ ହୋଇଯିବେ ପରା ! ସକାଳେ ଫୋନ୍‌ରେ ଚକ୍ରଭାଇ ଠାରୁ ଖବର ପାଇଥିଲି ଅବସ୍ଥା ବିଶେଷ ଭଲ ନୁହେଁ। ତଥାପି ଛାତି ଭିତରଟା କେମିତି ଗୁଛି ହୋଇଗଲା। ତେବେ ତପନକୁ ସାନ୍ତ୍ୱନା ଦେବାକୁ କହିଦେଲି- "କଷ୍ଟରୁ ମୁକ୍ତି ପାଇଗଲେ।" -କିନ୍ତୁ ଆମେ ? ଆମେ ତ ମୁରବୀ ହରା ହୋଇଗଲୁ ! ଆଉ କାହା ପାଖକୁ କିଛି ପରାମର୍ଶ ପାଇଁ କି ଟିକିଏ ସାନ୍ତ୍ୱନା ପାଇବାକୁ ଧାଇଁଯିବି ? କାହା ପାଖରେ ବସି ଘଣ୍ଟା ଘଣ୍ଟା ନାନା କଥା ଗପୁଥିବି ! କିଏ ବସି ବଳେଇ ବଳେଇ ଖୁଆଉଥିବ ଖାଉଥିବି ! "କାହିଁକି ଏତେ ଛେନାରୁ ଚୋପା ଛଡ଼େଇ ପଚାରୁଛ ?" କହି କାହା ଉପରେ ଆଉ ଚିଡ଼ିଯିବି ଓ ସେ ହେଁ ହେଁ ହସି ମୋତେ ଆଉରି ଚିଡ଼ଉଥିବେ, ମନ ଭାଙ୍ଗି ପଡ଼ିଲା ବେଳେ ପିଠି ଥାପୁଡ଼େଇ ମନରେ ଦମ୍ଭ ଦେଉଥିବେ ଆଗକୁ କାମ କରି ଯିବା ପାଇଁ ! ଏକା ସାଙ୍ଗରେ ଏମିତି କେତେ କଥା ମନେ ପଡ଼ି ମୁଣ୍ଡରେ ଭିଡ଼ ଜମିଗଲା-ପିଲାଦିନୁଁ ଆଜିଯାଏ ଅନେକ କଥା ମନେ ପଡ଼ିଗଲା।

ଚୌଧୁରୀ ପରିବାର ସାଙ୍ଗରେ ଜୟୀ ଭାଇଙ୍କର ଏକ ଅନନ୍ୟ ସଂପର୍କ ଯୋଡ଼ି ହୋଇ ଯାଇଥିଲା। ଉକ୍ତ ସଂପର୍କ ଆତ୍ମୀୟଙ୍କ ଠାରୁ ଯେପରି ଆଉରି ନିବିଡ଼। ଛାତ୍ରାବସ୍ଥାରେ ସେ ଆସି ବାଖରାବାଦ ଘରେ ରହି ରେଭେନ୍‌ସା କଲେଜରେ ପାଠ ପଢ଼ିଲେ ଓ ବୁବୁଅପା, କାଳୁ ଭାଇଙ୍କୁ ପଢ଼ାଇବାର ଦାୟିତ୍ୱ ନେଇଥିଲେ। ଚୁନୀଅପାଠୁ ଶୁଣିଛି- ସେ ଯେତେବେଳେ ପ୍ରଥମ କରି ମୋ' ବୁଢ଼ିମା'ଙ୍କର ସମ୍ମୁଖୀନ ହୋଇଗଲେ- "ବୁଢ଼ିମା ପଚାରିଲେ ତମେ କିଏ ?" ସେ କହିଲେ- "ଆଜ୍ଞା ମୁଁ ଜୟକୃଷ୍ଣ", "ଆଜ୍ଞା ଜୟକୃଷ୍ଣ ମହାନ୍ତି"- "ଆରେ, ତେବେ ତମେ ତ ମୋ' ଭାଇ। ଏଠି କ'ଣ କରିବାକୁ ଆସିଛ ?" "ଆଜ୍ଞା, ବୁବୁ, କାଳୁଙ୍କୁ ପଢ଼ାଇବାକୁ ଆସିଛି। ମୁଁ ବି କଲେଜରେ ପଢୁଛି।" -ସାଙ୍ଗେ ସାଙ୍ଗେ ସେ ପ୍ରତାପଶାଳିନୀ ବୁଢ଼ିମା'ଙ୍କ ହୃଦୟରେ ସ୍ଥାନ ପାଇଗଲେ। ବୋଧହୁଏ ୟେ ମୋ' ଜନ୍ମ ପୂର୍ବର ଘଟଣା। ମୋ' ଜନ୍ମପରେ ନୁମା-ବାପି ମୋତେ କିପରି ଭାବରେ ଲାଳନ ପାଳନ କରୁଥିଲେ ମୁଁ ଜୟୀଭାଇଙ୍କ ମୁହଁରୁ ବହୁବାର ଶୁଣିଛି। ମୋର ଉଠିବାର, ଗାଧୋଇବା, ଖାଇବା-ଶୋଇବା ସମୟ ଏପରି ଧରାବନ୍ଧା ଥିଲା ଯେ ସେ ସେଇ ଅନୁସାରେ ତାଙ୍କ ନିତ୍ୟକର୍ମକୁ ନିୟନ୍ତ୍ରିତ କରି ପାରୁଥିଲେ। ବଡ଼ି ଭୋରରୁ ଉଠି ମୋର ସବୁ କାମ ସାରି ସେମାନେ ଘରକାମ ସାରି, ପୁଣି ମତେ ଖୁଆଇ, ଶୁଆଇ ତାଙ୍କର

ଦେଶକାମରେ ବାହାରି ଯାଉଥିଲେ। ତରୁଣ କର୍ଯ୍ୟୀଭାଇଙ୍କ ମନରେ ସନ୍ତାନ ପାଳନରେ ଜଣେ ବାପାର ଭୂମିକାର ପ୍ରଭାବ ଗଭୀର ଭାବରେ ପଡ଼ିଥିଲା ବୋଲି ସେ ନିଜେ ସ୍ୱୀକାର କରୁଥିଲେ ଓ ନିଜେ ମଧ୍ୟ ଏକ ଆଦର୍ଶ ପିତା ହୋଇ ପାରିଥିଲେ।

ଛାତ୍ରାବସ୍ଥାରୁ ହିଁ କର୍ଯ୍ୟୀଭାଇ ସବୁକାମ ବ୍ୟବସ୍ଥିତ ଓ ସୁଚାରୁରୂପେ କରି ପାରୁଥିଲେ। ସ୍କୁଲ ଜୀବନରେ ୧୯୩୦-୩୧ ମସିହାରୁ ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ ଓ ପୁରୀ ଜିଲ୍ଲାରେ କଂଗ୍ରେସ ସଂଗଠନ କାମ କରୁଥିଲେ। ସରକାରଙ୍କ ବିଷଦୃଷ୍ଟିର ଆଡୁଆଳରେ ରହିବା ପାଇଁ ନଡ଼ିଆପତ୍ର ଓ ଖଜୁରୀ ପତ୍ରର ପଲା କରି ରହନ୍ତି ଓ ପୁଲିସର ସନ୍ଦେହ ଘେରକୁ ଆସିବା ଆଗରୁ ପଲାର ସ୍ଥାନ ବଦଳାନ୍ତି। ସେ ସମାଜବାଦ ଦ୍ୱାରା ଆକୃଷ୍ଟ ହୋଇ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ସହ କଂଗ୍ରେସ ସମାଜବାଦୀ ଗୋଷ୍ଠୀ ଅନ୍ତର୍ଭୁକ୍ତ ହେଲେ। ଏଣୁ ବାଖରାବାଦ ଘରେ ରହି କଲେଜରେ ପଢ଼ିବାକୁ ସ୍ଥିର କଲେ। ସବୁଥିରେ ତାଙ୍କର ପାରଦର୍ଶିତା ଦେଖି ସଉଦା ଆଦି ବାହାର କାମରେ ନୁମା ଓ ବୁଢ଼ିମା ଉଭୟ ତାଙ୍କ ଉପରେ ନିର୍ଭର କରୁଥିଲେ। ନୁମାର ତ ଆଉ କାହାରି କାମ ପସନ୍ଦ ନଥିଲା। ବାପି ତାଙ୍କ ପ୍ରତ୍ୟୁତ୍ପନ୍ନମତିତ୍ୱରେ ନିର୍ଭର କରୁଥିଲେ। ସେଇ ସମୟରୁ ନୁମା, ବାପି ଓ ତରୁଣ ଜୟକୃଷ୍ଣ ଏପରି ଭାବରେ ବାନ୍ଧି ହୋଇଗଲେ ଯେ ସେ ସଂପର୍କ ସାରା ଜୀବନ ଅବିଚ୍ଛେଦ୍ୟ ରହିଲା।

ଭାରତଛାଡ଼ ଆନ୍ଦୋଳନରେ କର ବା ମର ଡାକରା ଦେଇ ଗାନ୍ଧିଜୀ ବନ୍ଦୀ ହେଲେ ଓ ତାଙ୍କ ପରେ ଦେଶସାରା ଆନ୍ଦୋଳନକାରୀ ମାନେ ବନ୍ଦୀହୋଇ ଦେଶର ସବୁ ବନ୍ଦୀଶାଳା ଭରିଦେଲେ। ମାଳତୀ ଦେବୀ ଓ ସୁରେନ୍ଦ୍ର ଦ୍ୱିବେଦୀ ୧୯୪୨ ଅଗଷ୍ଟ ୯'ରେ ବମ୍ବେ ଯାଇ ଜାତୀୟ ପତାକା ଉତ୍ତୋଳନ ପରେ କିପରି ଓଡ଼ିଶା ଫେରିଲେ ଓ ତା'ପରେ କ'ଣ ହେଲା- ସୁରେନ୍ଦ୍ର ଦ୍ୱିବେଦୀ ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି ଓ ଆଉ କେତେକଙ୍କ ଜୀବନୀରେ ମଧ୍ୟ ତାହା ବର୍ଣ୍ଣିତ ଅଛି। ନୁମା ଧରା ହୋଇ କଟକ ଜେଲ୍‌ରେ ରହିଲେ। ମୋର ବୟସ ୩ ବର୍ଷରୁ ଅଧିକ ହୋଇ ଯାଇଥିବାରୁ ନିୟମ ଅନୁଯାୟୀ ନୁମା ସହିତ ଜେଲ୍ ଭିତରକୁ ଯାଇ ପାରିଲି ନାହିଁ। ମୁଁ ଓ ମୋ' ବଡ଼ଭାଇ ରହିଗଲୁ ଆମ ବୁଢ଼ିମା' ପାଖରେ। ବାପି ଆଗରୁ ବନ୍ଦୀ ହୋଇ ସାରିଥିଲେ। ଗୋଟି ଗୋଟି ହେଇ ପରିବାରର ସମସ୍ତେ ବନ୍ଦୀ ହେଲେ। ବୁବୁଅପା ମଧ୍ୟ ୧୩ ବର୍ଷ ବୟସରେ ବନ୍ଦୀ ହେଲା। କଟକ ଜେଲ୍‌ରେ ମହିଳା ୱାର୍ଡରେ ଅନ୍ୟମାନଙ୍କ ମଧ୍ୟରେ ତିନିଜଣ କିଶୋରୀ ବନ୍ଦିନୀ ଥିଲେ। ବୁବୁଅପା ତେର, ମାଳ ଅପା ଚଉଦ ଓ କିରଣ ଅପା ପନ୍ଦର ବର୍ଷର। ସେମାନେ ବନ୍ଦୀଶାଳାକୁ ଆନନ୍ଦମୟ ବିଦ୍ୟାଳୟରେ ପରିଣତ କରି ଅନ୍ୟ ବନ୍ଦିନୀମାନଙ୍କୁ ଜେଲର ଦୁଃଖ ଅନୁଭବ କରିବାକୁ ଦେଲେ ନାହିଁ। ମୋ' ଦେହ ଅତି ଖରାପ ହୋଇଯିବାରୁ ମୋ' ବୁଢ଼ିମା' ଡରିଯାଇ ମୋତେ ନେଇ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖରେ ପହଞ୍ଚାଇ କହିଲା- "ମୁଁ ଯାକୁ ବଞ୍ଚାଇ ପାରିବି ନାହିଁ। ଆପଣ ଯାହା କରିବେ କରନ୍ତୁ।" -ସୁପରିଣ୍ଟେଣ୍ଡେଣ୍ଟ ମୋ' ଅବସ୍ଥା ଦେଖି ନୁମା ପାଖରେ ଛାଡ଼ିଲେ ଓ ମୋର ଚିକିତ୍ସା କଲେ। ମୁଁ ମାସାଧିକ କାଳ ମହିଳା ୱାର୍ଡର ସମସ୍ତଙ୍କର ଯତ୍ନ ଆଦର ପାଇ ରହିଥିଲି। ନୁମା ଓ ବୋଉ ସାଙ୍ଗକୁ ଅନେକ ମାଉସୀ, ଭାଉଜ ଓ ବଡ଼ ଭଉଣୀ ମିଳିଗଲେ। ବୁବୁ ଅପା ତ ଥିଲା। କିନ୍ତୁ ମାଳଅପା ଓ କିରଣ ଅପା ମୋତେ ବହୁତ ଆଦର ଦେଇଥିଲେ। ଜେଲ ଭିତରେ କିରଣଅପାର ନୁମା ସାଙ୍ଗରେ ଏପରି ଏକାତ୍ମତା ହୋଇଗଲା ଯେ ଖଲାସ ହେବାପରେ ନୁମାର ବାକିରାଉତ ଛାତ୍ରାବାସ ପ୍ରତିଷ୍ଠା

କରିବାର ପରିକଳ୍ପନାରେ ସେ ସାମିଲ ହୋଇଗଲା । ବର୍ଗୀର ସେବାଘରେ ରମାଦେବୀ ଓ ଅନ୍ନପୂର୍ଣ୍ଣା (ଚୁନୀଅପା)ଙ୍କ ଠାରୁ ପାଇଥିବା ତାଲିମ୍ ଓ ଜେଲ୍‌ରେ ପଢ଼ିଥିବା ପାଠକୁ ସମ୍ବଳ କରି ୧୮ ବର୍ଷର କିରଣବାଳା ରାୟ ନିଜ ବାପା, ବୋଉ, ଭାଇ, ଭଉଣୀ, ଘରଦ୍ୱାର ଛାଡ଼ି ଚାଲି ଆସିଲେ ନୂମା ପାଖକୁ ଅନୁଗୁଳ। ତାଳଚେର, ହିନ୍ଦୋଳ, ଢେଙ୍କାନାଳ, ନୟାଗଡ଼ ପ୍ରଭୃତି ଗଡ଼ଜାତ ଆନ୍ଦୋଳନ କର୍ମୀଙ୍କ ପୁଅ-ଝିଅଙ୍କୁ ଏକାଠି କରି ଆରମ୍ଭ ହେଲା ବାଜିରାଉତ ଛାତ୍ରାବାସ। ୫ ବର୍ଷରୁ ୧୧ ବର୍ଷ ଭିତରେ ପିଲାମାନଙ୍କୁ ସମ୍ଭାଳିଲେ କିରଣ ଅପା। ଜିବିଖୋର ତିନୁ, ଗୁଲୁଗୁଲୁ କଥା କହୁଥିବା ପାଞ୍ଚବର୍ଷର ଝିଅ ସାବି, ନୋଲକ, ବଟଫଳ ଖୋଲିଦେବାରୁ ବାହୁନି କାନ୍ଦୁଥିବା ବିଜୁଳି, ଉକୁଣି ମୁଣ୍ଡି ମୀରା, ଘରକୁ ଯିବାକୁ ଅଥୟ ହେଉଥିବା ସୁଲ, ଖୁଲ ସମସ୍ତଙ୍କୁ।- ପୁଅମାନଙ୍କର ତ ବିଭିନ୍ନ ରକମର ଦୁଷ୍ଟାମି। କମଳା, ପିଜୁଳି ବଗିଚାର ଫଳ ପାକଳ ହେଇ ତୋଳିବା ଯାଏ ରହେନାହିଁ, ଖାଇବା ପିଇବା ବ୍ୟବସ୍ଥା, ପାଠପଢ଼ା ଆଦି ମଧ୍ୟ କିଛିଦିନ ଏକା ସମ୍ଭାଳିଲେ। ତା'ପରେ ଋଷି ଗୁରୁଜୀ କ୍ରମେ ବାବାଜୀଭାଇ, ଶଶିଭାଇ, ବୁବୁଅପା, ବଇଭାଇ ପ୍ରଭୃତି ପହଞ୍ଚି କିରଣ ଅପାର କାମ ଟିକିଏ ଲାଘବ ହେଲା ବେଳକୁ କର୍ଯ୍ୟୀଭାଇ-କିରଣଅପା ବାହାଘର ଠିକ୍ ହୋଇଗଲା। ତାଙ୍କ 'ମାଷ୍ଟ୍ରେ'ଙ୍କୁ କିରଣଅପା ବାହାହେଉଛି ବୋଲି ବୁବୁଅପା ଓ କାଳୁ ଭାଇ ଭାରି ଖୁସି ହେଉଥାନ୍ତି। କିନ୍ତୁ କିରଣ ଅପା ବାହାଘର ପରେ ଆମକୁ ଛାଡ଼ି କର୍ଯ୍ୟୀଭାଇଙ୍କ ପାଖରେ ଚାଲିଯିବ ଭାବି ମୋର କର୍ଯ୍ୟୀଭାଇଙ୍କ ଉପରେ ଭାରି ରାଗ ହେଉଥାଏ। ବାପି ସେତେବେଳେ ରାଜସ୍ୱମନ୍ତ୍ରୀ ଭାବରେ କେଉଁଝର କୋଠିରେ ରହୁଥାଏ। ସେଇଠି କିରଣଅପା କର୍ଯ୍ୟୀଭାଇଙ୍କ ବାହାଘର ହେଲା। କିରଣ ଅପାର ଇଚ୍ଛାରେ ବାପି କନ୍ୟାକର୍ତ୍ତା ହେଲା। ଏମାନଙ୍କ ବାହାଘରର କିଛିମାସ ପରେ ବୁବୁଅପା-ନାରାୟଣ ଭାଇ ମଧ୍ୟ ସେଇ କେଉଁଝର କୋଠିରେ ବାହାହେଲେ ଓ ବୁବୁଅପା ଗୁଜରାତର ୱେଡ଼ଛୀକୁ ଚାଲିଗଲା। କର୍ଯ୍ୟୀଭାଇ ଓ କିରଣଅପା ପୁରୀରେ ରହୁଥିବାରୁ ପ୍ରାୟ ଦେଖା ହେଇ ଯାଉଥିଲା। କାଳୁ ଭାଇକୁ ହରାଇ ନୂମା-ବାପି ଯେତେବେଳେ ଅତ୍ୟନ୍ତ ମାନସିକ ପୀଡ଼ା ଭିତରେ ଥା'ନ୍ତି, ବାପି ମନ୍ତ୍ରୀପଦରୁ ଇସ୍ତଫା ଦେଇ ଆସି ଅନୁଗୁଳରେ ରହିଲେ। ସେତେବେଳେ କିରଣ ଅପା ଆସି ରହିଲା। ତପନ ଜନ୍ମ ହେଲା। କିରଣ ଅପା ତପନକୁ ନେଇ କିଛି ମାସ ବାଜିରାଉତ ଛାତ୍ରାବାସରେ ରହିଲା। କୁନି ତପନକୁ ପାଖରେ ପାଇ ବାପି-ନୂମାଙ୍କର ଦାରୁଣ ଦୁଃଖ ସମୟରେ କିଛିଟା ସାନ୍ତ୍ୱନା ମିଳୁଥିଲା। ଦୁହେଁ ତାକୁ ନେଇ ସମୟ କଟାଉଥିଲେ। ବାପି ଯେପରି ଶିଶୁ ପାଳନରେ ନୂମାକୁ ସାହାଯ୍ୟ କରୁଥିଲା, କର୍ଯ୍ୟୀଭାଇ ସେହିପରି ଭାବରେ ସେମାନଙ୍କ ସନ୍ତାନ ମାନଙ୍କୁ ପାଳନ କରିବାରେ କିରଣ ଅପାକୁ ସାହାଯ୍ୟ କରିବାର ମୁଁ ଦେଖିଛି।

କର୍ଯ୍ୟୀଭାଇଙ୍କର ପ୍ରତ୍ୟେକ କାମ ଅତି ବ୍ୟବସ୍ଥିତ ଓ ପରିପାଟୀ ଥିଲା। -ତାହା ରାଜନୀତି କ୍ଷେତ୍ରରେ ହେଉ, ସମାଜ ସେବା କ୍ଷେତ୍ରରେ ହେଉ କି କୌଣସି ସଂସ୍ଥା ବା ସଂଗଠନ ପରିଚାଳନା ହେଉ କିମ୍ବା ନିଜ ଘର କାମ ବା ବାଡ଼ି ବଗିଚା କରିବା ହେଉ-ସବୁ କାମକୁ ପରିଚ୍ଛନ୍ନ ଭାବରେ ସମାନ ଗୁରୁତ୍ୱ ଦେଇ କରୁଥିଲେ। ଟିକିନିଖି ଭାବରେ ବିଚାର କରି କାମ ନିର୍ଭୁଲ ହେଲା କି ନାହିଁ ଦେଖନ୍ତି- ପଛକେ ସେ କାମରେ ବିଳମ୍ବ ହେଉ। ଆମେ କହୁ 'ଛେନାରୁ ଚୋପା ଛଡ଼ାଉଛନ୍ତି'। ନୂମା କାମ ସଠିକ୍ ଚାହାନ୍ତି କିନ୍ତୁ ଅପେକ୍ଷା କରିବାର ଧୈର୍ଯ୍ୟ ନଥାଏ। ନୂମା ଚିଡ଼ିଗଲା ବେଳକୁ କର୍ଯ୍ୟୀଭାଇ ହସିହସି ବେଶ୍ ସୁନ୍ଦର

ଭାବରେ ସେ କଥାକୁ ନୁମାକୁ ବୁଝାଇ ଦିଅନ୍ତି । ନୁମା, ବାପିଙ୍କୁ ସେ ଯେପରି ବୁଝି ପାରୁଥିଲେ, ବହୁତ କମ୍ ଲୋକ ସେପରି ପାରୁଥିଲେ। ବାପି ମୁଖ୍ୟମନ୍ତ୍ରୀ ଥିଲାବେଳେ ସେ ବାପିଙ୍କର ହନୁମାନ ଭଳି ଥିଲେ ବୋଲି ଅନେକେ କହିବାର ଶୁଣିଛି ।

ଓଡ଼ିଶାର ପ୍ରାୟ ସବୁ ରଚନାତ୍ମକ କ୍ଷେତ୍ରରେ ଜୟୀଭାଇଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲା । ନୁମା, ବାପି ଯେଉଁ କାମରେ ତାଙ୍କର ସାହାଯ୍ୟ ଲୋଡ଼ିଛନ୍ତି, ସେ ଆସି କାୟମନୋବାକ୍ୟରେ ସେ କାମରେ ଲାଗି ପଡ଼ିଛନ୍ତି । ଅନେକ ଜଟିଳ ସମସ୍ୟାକୁ ମଧ୍ୟ ବେଶ୍ ଚତୁରତାର ସହ ସମାଧାନ କରିଛନ୍ତି । କିରଣ ଅପା ସରଳ ସ୍ୱଭାବର ଥିଲା- ଯାହା ମନରେ ଭାବେ କହି ପକାଏ-କେହି ଦୁଃଖ ପାଇବ କି କ'ଣ ଭାବେ ନାହିଁ । ନୁମା ମଧ୍ୟ ସମ ସ୍ୱଭାବର । ବେଳେବେଳେ ଦୁହିଁଙ୍କର କଥା କଟାକଟି ହୁଏ, ମୁଁ ଦେଖିଛି ଜୟୀଭାଇ ଅନ୍ୟ ଏକ ପ୍ରସଙ୍ଗ ଉତ୍‌ଥାପନ କରି କଥାର ସୁଅ ବଦଳାଇ ଦିଅନ୍ତି କିମ୍ବା ଚୁପ୍ ରହି ସଂପୂର୍ଣ୍ଣ ନିରପେକ୍ଷ ଭୂମିକା ଗ୍ରହଣ କରନ୍ତି । ଧୀରେ କହି ଦିଅନ୍ତି- "ମା' ଝିଅଙ୍କର ଏ ଝଗଡ଼ା ଅତି ସ୍ନେହର ଲକ୍ଷଣ।"

ଉତ୍କଳ ନବଜୀବନ ମଣ୍ଡଳର ସହ ସଂପାଦକ ଭାବରେ ଜୟୀଭାଇ ଆସି ବୋଧହୁଏ ୧୯୫୮ ମସିହାରେ ଯୋଗଦେଲେ । କିରଣ ଅପା, ତପନ, ଡ଼ଲି, ଗୌରୀ ଓ ଛୋଟ ସୋମାକୁ ନେଇ ଛାତ୍ରାବାସ ପରିସର ଭିତରେ ଆସି ରହିବାରୁ ମୋର ଆନନ୍ଦର ସୀମା ରହିଲା ନାହିଁ। କିନ୍ତୁ ସେଇବର୍ଷ ମୋର ବାହାଘର ହୋଇଗଲା । ଜୟୀଭାଇ ଓ କିରଣ ଅପା ଆସି ନୁମା ବାପିଙ୍କ ସଂସାରର ସମସ୍ତ ଦାୟିତ୍ୱ ବହନ କରିନେଲେ। ଆମର ଓ ଅତିଥି ଅଭ୍ୟାଗତ ସମସ୍ତଙ୍କର ଖାଇବା ପିଇବା କିରଣ ଅପା ଘରେ ହେଲା । ଶାଶୁ ଘରକୁ ଯିବା ଆଗରୁ ମୁଁ କିରଣ ଅପା ପାଖରୁ ଖୁବ୍ ଆଦର ଯତ୍ନ ପାଇଲି ଓ କିଛି ଘରକରଣା ତାଲୀମ ମଧ୍ୟ ପାଇଲି। ଉତ୍କଳ ନବଜୀବନ ମଣ୍ଡଳର କାର୍ଯ୍ୟାଳୟ ଓ ପରିସରକୁ ବ୍ୟବସ୍ଥିତ କରିବାରେ ଜୟୀଭାଇଙ୍କର ଅକ୍ଳାନ୍ତ ପରିଶ୍ରମ ସେତେବେଳେ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଏ। ମହିଳା ତାଲୀମ ଶିବିର ଏବଂ ମାତୃମଙ୍ଗଳ କେନ୍ଦ୍ର ସେତେବେଳେ ପୂରାଦମ୍‌ରେ କାର୍ଯ୍ୟରତ ଥାଏ । ବିଭିନ୍ନ ଜିଲ୍ଲାର ଆଦିବାସୀ କ୍ଷେତ୍ର ମାନଙ୍କରେ ସବୁଠାରୁ ଅଧିକ କାମ ସମ୍ଭବତଃ ସେହି ସମୟରେ ହୋଇଥିଲା। ୧୯୬୨ ମସିହାରେ ମୁଁ ମହୀଶୂରରୁ ଆସି ଦେଖେ ଜୟୀଭାଇ, କିରଣ ଅପା ପିଲାମାନଙ୍କୁ ନେଇ ପୁରୀ ଫେରି ଯାଇଛନ୍ତି । ତା'ପରେ ସେ ଓଡ଼ିଶା ଖଦୀ ବୋର୍ଡର ଦାୟିତ୍ୱ ନେଇ ଭୁବନେଶ୍ୱରରେ ଆସି ରହିଲେ ଓ ପୁଣି ମଧ୍ୟେ ମଧ୍ୟେ ଆମର ଆଡ୍ଡା ଜୟୀଭାଇ କିରଣ ଅପାଙ୍କ ଘରେ ଜମିଲା । ମୋ' ଭଳି ମୋ' ପିଲାମାନେ ମଧ୍ୟ କିରଣ ମାଉସୀ ଓ ଜୟୀ ମଉସାଙ୍କ ଠାରୁ ଖୁବ୍ ସ୍ନେହ ଓ ଆଦର ପାଇଲେ ।

ନୁମା-ବାପିଙ୍କ ଜୀବିତାବସ୍ଥାରେ ଭୁବନେଶ୍ୱରରେ ଥାଇ ସେ ସେ ଉତ୍କଳ ନବଜୀବନ ମଣ୍ଡଳ ଓ ବାଜି ରାଉତ ଛାତ୍ରାବାସର ପରିଚାଳନା କାର୍ଯ୍ୟରେ ସଂପୂର୍ଣ୍ଣ ସଂପୃକ୍ତ ରହୁଥିଲେ । ବହୁବର୍ଷ ସେ ବାଜିରାଉତ ଛାତ୍ରାବାସର ସଭାପତି ରହିଲେ। ୧୯୯୩ ମସିହାରେ ବିଭୂତିବାବୁ ଭାରତୀୟ ଜନସଂଚାର ସଂସ୍ଥାନର ପ୍ରଥମ ନିର୍ଦ୍ଦେଶକ ହୋଇ ଆସି ଢେଙ୍କାନାଳରେ ଯୋଗଦେବାରୁ ଜୟୀଭାଇ ମୋତେ ଛାତ୍ରାବାସର ଦାୟିତ୍ୱ ନେବାକୁ ପ୍ରବର୍ତ୍ତାଇଲେ। ନୁମା ସେତେବେଳକୁ ଅସୁସ୍ଥ ହୋଇଗଲାଣି ଓ ଚାଲିବାର କ୍ଷମତା ହରାଇଲାଣି । ବାର୍ଦ୍ଧକ୍ୟର ଅସହାୟତା ଅନୁଭବ କରୁଥାଏ। ୧୯୯୫ ମସିହାରୁ ସେ ମୋତେ ଛାତ୍ରାବାସର ଜେନେରାଲ ବଡି ବୈଠକରେ ବାଜିରାଉତ

ଛାତ୍ରାବାସର ସଭାପତି ନିର୍ବାଚିତ କଲେ ଓ ସେ କାମ ମୁଁ କିପରି ଭଲ ଭାବରେ ତୁଲାଇବି ସେ ଦିଗରେ ସଜାଗ ଦୃଷ୍ଟି ରଖିଲେ । ଯେତେବେଳେ ବାଟବଣା ହେଲା ପରି ଲାଗେ କି ସରକାରୀ ସ୍ତରରେ କିଛି କାମ ଅଟକିଯାଏ ମୁଁ ତାଙ୍କ ପାଖରେ ଯାଇ ପହଞ୍ଚିଯାଏ । ସେ ବଳ ଦିଅନ୍ତି ଓ ସାହାଯ୍ୟ କରନ୍ତି । ତାଙ୍କ ଦେହ ଖରାପ ସତ୍ତ୍ୱେ ବି ତାଙ୍କ ଦ୍ୱାରା ଯେତେଦୂର ସମ୍ଭବ ସେ କରନ୍ତି । ଶେଷ କେତେବର୍ଷ ଅଧିକ ଥର ଅନୁଗୁଳ ଯିବା ସମ୍ଭବ ହେଉନଥିଲା । ଅଶେଷ କଷ୍ଟନେଇ ବାର୍ଷିକୋତ୍ସବର ପ୍ରାୟ ସବୁ ବୈଠକରେ ବସି କେତେ ଗଠନମୂଳକ ପ୍ରସ୍ତାବ ଓ ପରାମର୍ଶ ଦିଅନ୍ତି । ଶେଷରେ ଆସି ନପାରିବାରୁ ନବଜୀବନ ମଣ୍ଡଳର କାର୍ଯ୍ୟକାରୀ ସମିତି ବୈଠକ ଓ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟର ବୈଠକ ତାଙ୍କ ଘରେ ହେଉଥିଲା । ଅତି ଯତ୍ନ ସହକାରେ ସେ ସମସ୍ତଙ୍କର ଖାଇବାର ବ୍ୟବସ୍ଥା କରନ୍ତି । ଉତ୍କଳ ନବ ଜୀବନ ମଣ୍ଡଳର ସମାଜ ସେବା କ୍ଷେତ୍ରମାନଙ୍କୁ ନିଜେ ଆଉ ଯାଇ ପାରୁ ନଥିବାରୁ ସେ ଯେଉଁ ବେଦନା ଅନୁଭବ କରୁଥିଲେ ତାଙ୍କ ପାଖରେ ଯାଇ ବସିଲେ ଜାଣି ପାରୁଥିଲି । ସେଥିପାଇଁ ସବୁବେଳେ ସେ ଚିନ୍ତା ଓ ଉଦ୍‌ବେଗ ପ୍ରକଟ କରୁଥିଲେ ।

ଉତ୍କଳ ନବଜୀବନ ମଣ୍ଡଳ ମାଳତୀ ଦେବୀଙ୍କୁ ଏକ ଲକ୍ଷ ଟଙ୍କାର ଥଳି ଭେଟି ଦେବାରେ ସେ ଅଗ୍ରଣୀ ଭୂମିକା ନେଇଥିଲେ । ଏହି ରାଶି ଏବଂ ଯମୁନାଲାଲ ବଜାଜ ପୁରସ୍କାର ରାଶିକୁ ମିଶାଇ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନରେ ସେହିଁ ମୁଖ୍ୟ ଉଦ୍ୟୋକ୍ତା ଥିଲେ । ନୁମାର ସ୍ୱାସ୍ଥ୍ୟ ଖରାପ ହୋଇ ଯିବାପରେ ଉତ୍କଳ ନବଜୀବନ ମଣ୍ଡଳର ଦାୟିତ୍ୱ କହିବାକୁ ଗଲେ ଜୟୀଭାଇ ହିଁ ବହନ କରିଥିଲେ । କର୍ମୀ ଭଉଣୀ ମାନଙ୍କୁ ନୈତିକ ସାହସ ଯୋଗାଇବା ଓ ସେମାନଙ୍କର ସୁବିଧା ଅସୁବିଧା ବୁଝିବା ଯେପରି ତାଙ୍କର କର୍ତ୍ତବ୍ୟ ହୋଇ ଯାଇଥିଲା ।

ସ୍ୱାମୀ ଲକ୍ଷ୍ମଣାନନ୍ଦଙ୍କ ହତ୍ୟା ପରେ ଯେଉଁ ସାଂପ୍ରଦାୟିକ ଦଙ୍ଗା ଆରମ୍ଭ ହେଲା ସେଥିରେ ଆମେ ଅନେକେ ହଠାତ୍ କିଛି କରିବାକୁ ଚାହୁଁଥିଲେ ମଧ୍ୟ କରି ପାରିଲୁ ନାହିଁ । ଆମର କର୍ତ୍ତବ୍ୟ କ'ଣ ଆମକୁ କିଏ କହିବ ? ଜୟୀଭାଇ ତ ଶଯ୍ୟାଶାୟୀ- ବାଟ କିଏ ଦେଖାଇବ ? ଏହି ଚିନ୍ତା ଘାରିଲା ବେଳକୁ ବାଜିରାଉତ ଛାତ୍ରାବାସ ଓ ନବଜୀବନ ମଣ୍ଡଳର କର୍ମୀମାନଙ୍କୁ ମୁରବୀ ଶୂନ୍ୟ କରି ସମସ୍ତ ନୈତିକ ଦାୟିତ୍ୱ ଆମ ସମସ୍ତଙ୍କ ଉପରେ ନ୍ୟସ୍ତ କରି ସେ ପର ପାରିକୁ ଚାଲିଗଲେ । ମାଳତୀ ଦେବୀ ଓ ମନମୋହନ ଚୌଧୁରୀଙ୍କ ପରେ ଜୟୀଭାଇଙ୍କ ବିୟୋଗ କେବଳ ଏ ଦୁଇ ଅନୁଷ୍ଠାନ ନୁହେଁ ଓଡ଼ିଶାର ସର୍ବୋଦୟ ଜଗତର ସବୁ ଅନୁଷ୍ଠାନ ପାଇଁ ଏକ ଶକ୍ତ ଧକ୍କା ହେଲା । ବର୍ଷେ ବିତି ଯାଇଥିଲେ ମଧ୍ୟ ସେ ଧକ୍କା ସଦ୍ୟ ଆଘାତ ଭଳି ଲାଗୁଛି । ତାଙ୍କ ଜୀବନାଦର୍ଶ ଆମକୁ କର୍ତ୍ତବ୍ୟ ପଥରେ ଆଗେଇ ନେଉ ଏହି ପ୍ରାର୍ଥନା କରୁଛି ।

**ସମ୍ପାଦିକା**

**ବାଜିରାଉତ ଛାତ୍ରାବାସ, ଅନୁଗୋଳ**

ଛାତ୍ରାବାସର ସଭାପତି ନିର୍ବାଚିତ କଲେ ଓ ସେ କାମ ମୁଁ କିପରି ଭଲ ଭାବରେ ତୁଲାଇବି ସେ ଦିଗରେ ସଜାଗ ଦୃଷ୍ଟି ରଖିଲେ । ଯେତେବେଳେ ବାଟବଣା ହେଲା ପରି ଲାଗେ କି ସରକାରୀ ସ୍ତରରେ କିଛି କାମ ଅଟକିଯାଏ ମୁଁ ତାଙ୍କ ପାଖରେ ଯାଇ ପହଞ୍ଚିଯାଏ । ସେ ବଳ ଦିଅନ୍ତି ଓ ସାହାଯ୍ୟ କରନ୍ତି । ତାଙ୍କ ଦେହ ଖରାପ ସତ୍ତ୍ୱେ ବି ତାଙ୍କ ଦ୍ୱାରା ଯେତେଦୂର ସମ୍ଭବ ସେ କରନ୍ତି । ଶେଷ କେତେବର୍ଷ ଅଧିକ ଥର ଅନୁଗୁଳ ଯିବା ସମ୍ଭବ ହେଉନଥିଲା । ଅଷ୍ଟ କଷ୍ଟନେଇ ବାର୍ଷିକୋତ୍ସବର ପ୍ରାୟ ସବୁ ବୈଠକରେ ବସି କେତେ ଗଠନମୂଳକ ପ୍ରସ୍ତାବ ଓ ପରାମର୍ଶ ଦିଅନ୍ତି । ଶେଷରେ ଆସି ନପାରିବାରୁ ନବଜୀବନ ମଣ୍ଡଳର କାର୍ଯ୍ୟକାରୀ ସମିତି ବୈଠକ ଓ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟର ବୈଠକ ତାଙ୍କ ଘରେ ହେଉଥିଲା । ଅତି ଯତ୍ନ ସହକାରେ ସେ ସମସ୍ତଙ୍କର ଖାଇବାର ବ୍ୟବସ୍ଥା କରନ୍ତି । ଉତ୍କଳ ନବ ଜୀବନ ମଣ୍ଡଳର ସମାଜ ସେବା କ୍ଷେତ୍ରମାନଙ୍କୁ ନିଜେ ଆଉ ଯାଇ ପାରୁ ନଥିବାରୁ ସେ ଯେଉଁ ବେଦନା ଅନୁଭବ କରୁଥିଲେ ତାଙ୍କ ପାଖରେ ଯାଇ ବସିଲେ ଜାଣି ପାରୁଥିଲି । ସେଥିପାଇଁ ସବୁବେଳେ ସେ ଚିନ୍ତା ଓ ଉଦ୍‌ବେଗ ପ୍ରକଟ କରୁଥିଲେ ।

ଉତ୍କଳ ନବଜୀବନ ମଣ୍ଡଳ ମାଳତୀ ଦେବୀଙ୍କୁ ଏକ ଲକ୍ଷ ଟଙ୍କାର ଥଳି ଭେଟି ଦେବାରେ ସେ ଅଗ୍ରଣୀ ଭୂମିକା ନେଇଥିଲେ । ଏହି ରାଶି ଏବଂ ଯମୁନାଲାଲ ବଜାଜ ପୁରସ୍କାର ରାଶିକୁ ମିଶାଇ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟ ଗଠନରେ ସେହିଁ ମୁଖ୍ୟ ଉଦ୍ୟୋକ୍ତା ଥିଲେ । ନୁମାର ସ୍ୱାସ୍ଥ୍ୟ ଖରାପ ହୋଇ ଯିବାପରେ ଉତ୍କଳ ନବଜୀବନ ମଣ୍ଡଳର ଦାୟିତ୍ୱ କହିବାକୁ ଗଲେ କର୍ମୀଭାଇ ହିଁ ବହନ କରିଥିଲେ । କର୍ମୀ ଭଉଣୀ ମାନଙ୍କୁ ନୈତିକ ସାହସ ଯୋଗାଇବା ଓ ସେମାନଙ୍କର ସୁବିଧା ଅସୁବିଧା ବୁଝିବା ଯେପରି ତାଙ୍କର କର୍ତ୍ତବ୍ୟ ହୋଇ ଯାଇଥିଲା ।

ସ୍ୱାମୀ ଲକ୍ଷ୍ମଣାନନ୍ଦଙ୍କ ହତ୍ୟା ପରେ ଯେଉଁ ସାଂପ୍ରଦାୟିକ ଦଙ୍ଗା ଆରମ୍ଭ ହେଲା ସେଥିରେ ଆମେ ଅନେକେ ହଠାତ୍ କିଛି କରିବାକୁ ଚାହୁଁଥିଲେ ମଧ୍ୟ କରି ପାରିଲୁ ନାହିଁ । ଆମର କର୍ତ୍ତବ୍ୟ କ'ଣ ଆମକୁ କିଏ କହିବ ? କର୍ମୀଭାଇ ତ ଶଯ୍ୟାଶାୟୀ- ବାଟ କିଏ ଦେଖାଇବ ? ଏହି ଚିନ୍ତା ଘାରିଲା ବେଳକୁ ବାଜିରାଉତ ଛାତ୍ରାବାସ ଓ ନବଜୀବନ ମଣ୍ଡଳର କର୍ମୀମାନଙ୍କୁ ମୁରବୀ ଶୂନ୍ୟ କରି ସମସ୍ତ ନୈତିକ ଦାୟିତ୍ୱ ଆମ ସମସ୍ତଙ୍କ ଉପରେ ନ୍ୟସ୍ତ କରି ସେ ପର ପାରିକୁ ଚାଲିଗଲେ । ମାଳତୀ ଦେବୀ ଓ ମନମୋହନ ଚୌଧୁରୀଙ୍କ ପରେ କର୍ମୀଭାଇଙ୍କ ବିୟୋଗ କେବଳ ଏ ଦୁଇ ଅନୁଷ୍ଠାନ ନୁହେଁ ଓଡ଼ିଶାର ସର୍ବୋଦୟ ଜଗତର ସବୁ ଅନୁଷ୍ଠାନ ପାଇଁ ଏକ ଶକ୍ତ ଧକ୍କା ହେଲା । ବର୍ଷେ ବିତି ଯାଇଥିଲେ ମଧ୍ୟ ସେ ଧକ୍କା ସଦ୍ୟ ଆଘାତ ଭଳି ଲାଗୁଛି । ତାଙ୍କ ଜୀବନାଦର୍ଶ ଆମକୁ କର୍ତ୍ତବ୍ୟ ପଥରେ ଆଗେଇ ନେଉ ଏହି ପ୍ରାର୍ଥନା କରୁଛି ।

**ସମ୍ପାଦିକା**

**ବାଜିରାଉତ ଛାତ୍ରାବାସ, ଅନୁଗୋଳ**



ଯେଉଁମାନଙ୍କୁ ଖୁବ୍ ଭଲପାଆନ୍ତି........
ଜୀବନର ଶେଷ ଦିନମାନଙ୍କରେ ସେଇମାନଙ୍କ ସହିତ ।



ଦୁଇ ପାର୍ଶ୍ୱରେ ଦୁଇଜଣ ସତର୍କ ପ୍ରହରୀ



ଅଜସ୍ର ଶୁଭେଚ୍ଛା ବି ବଞ୍ଚାଇ ରଖିପାରିଲା ନାହିଁ



ତୁମେ ଗଲାପରେ

# ଅତିକ୍ରାନ୍ତ ମାଇଲ ଖୁଣ୍ଟ - ମହାସଂଗ୍ରାମର

**ଜନ୍ମ -**

୧୯୧୮ ମସିହା ସେପ୍‌ଟେମ୍ବର ୩ ତାରିଖ ଜନ୍ମାଷ୍ଟମୀ ଦିନ ପୁରୀ ଜିଲ୍ଲା ନିମାପଡ଼ା ଅନ୍ତର୍ଗତ ଗଡ଼ତୋରିହିଁ ଗ୍ରାମରେ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତା ଶ୍ରୀ ବାଞ୍ଛାନିଧି ମହାନ୍ତି ଓ ମାତାଙ୍କ ନାମ ଶ୍ରୀମତୀ ଦୋଣି ମହାନ୍ତି। ମଝିଆ ଭାଇ ୰ ଅଭିରାମ ମହାନ୍ତି ଜଣେ ବିଶିଷ୍ଟ ସମାଜସେବକ ଓ ସ୍ୱାଧୀନତା ସଂଗ୍ରାମୀ ଥିଲେ। ବାଲ୍ୟାବସ୍ଥାରେ ପିତାଙ୍କର ମୃତ୍ୟୁ ହୋଇଥିଲା।

**ଶିକ୍ଷା -**

ଅତି କମ୍ ବୟସରୁ ପିତାଙ୍କ ମୃତ୍ୟୁ ଏବଂ ଆର୍ଥିକ ଅନାଟନ ଯୋଗୁଁ ବାଲ୍ୟାବସ୍ଥାରେ ଗାଁ ଛାଡ଼ି ପୁରୀ ମଙ୍ଗୁମଠରେ ୩ୟ ଶ୍ରେଣୀରେ ପାଠ ପଢ଼ା ଆରମ୍ଭ କଲେ। ପୁରୀ ଆଙ୍ଗ୍ଲୋବେଙ୍ଗଲ୍ ସ୍କୁଲରୁ କମନ୍ ମାଇନର୍ ପରୀକ୍ଷାରେ ସମଗ୍ର ବିହାର ଏବଂ ଓଡ଼ିଶା ପ୍ରଦେଶରେ ପ୍ରଥମ ସ୍ଥାନ ଅଧିକାର କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲେ। ୧୯୩୬ ମସିହାରେ ରେଭେନ୍‌ସା କଲେଜରେ ବିଜ୍ଞାନ ଛାତ୍ର ଭାବେ ଅଧ୍ୟୟନ କଲେ। ୧୯୪୨ ମସିହାରେ କେମେଷ୍ଟ୍ରି ଅନର୍ସ ନେଇ ବି.ଏସ୍.ସି. ପଢୁଥିବା ବେଳେ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ କାରାବରଣ କଲେ।

**ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ଓ କାରାବାସ-**

ଛାତ୍ରାବସ୍ଥାରେ ପଶ୍ଚିମବଙ୍ଗର ସଶସ୍ତ୍ର ସଂଗ୍ରାମୀ-ମାନଙ୍କ ସହ ଯୋଗସୂତ୍ର ରକ୍ଷା କରିଥିଲେ। ୧୯୩୧ ମସିହାରେ ଏମ୍.ଇ. ସ୍କୁଲରେ ଛାତ୍ରଭାବେ ସରକାରୀ ବିରୋଧୀ ବିକ୍ଷୋଭରେ ଯୋଗଦେଇ ପୋଲିସ୍ ଦ୍ୱାରା ଗିରଫ ହେଲେ। ପୁରୀରେ ପଢୁଥିବା ବେଳେ ବଙ୍ଗଳାରୁ ନିର୍ବାସିତ ବିପ୍ଳବୀ ଯତୀନ୍ଦ୍ରନାଥ ଗୁହଙ୍କ ସଂସ୍ପର୍ଶରେ ଆସି ସନ୍ତ୍ରାସବାଦୀ ଆନ୍ଦୋଳନରେ ସାମିଲ୍ ହୋଇଥିଲେ। ୧୯୩୭ ମସିହାରେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ସାନିଧ୍ୟ ଲାଭ କରି କୃଷକ ଆନ୍ଦୋଳନ ଓ ଗଡଜାତ ପ୍ରଜା ଆନ୍ଦୋଳନରେ ଯୋଗ ଦେଲେ। ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ପୁରୀ ରେଳଷ୍ଟେସନରୁ ଗିରଫ ହେଲେ ଏବଂ ଦୀର୍ଘ ୩ବର୍ଷ କଟକ ଓ ବ୍ରହ୍ମପୁର ଜେଲରେ ସଶ୍ରମ କାରାଦଣ୍ଡ ଭୋଗକଲେ। ୧୯୪୫ ମସିହା ଅଗଷ୍ଟ ୨୬ ତାରିଖଦିନ କାରାମୁକ୍ତ ହୋଇ ପୁନର୍ବାର ସ୍ୱାଧୀନତା ସଂଗ୍ରାମ ଓ ଅନ୍ୟାନ୍ୟ ଗଠନମୂଳକ କାର୍ଯ୍ୟରେ ନିଜକୁ ସଂପୃକ୍ତ ରଖିଲେ।

**ବିବାହ ଓ ପାରିବାରିକ ଜୀବନ -**

୧୯୪୭ ମସିହା ମେ ମାସ ୨୦ ତାରିଖ ଦିନ କଟକ ଜିଲ୍ଲାର ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ କିରଣଲେଖା ମହାନ୍ତିଙ୍କ ସହ ତାଙ୍କର ବିବାହ ହେଲା। ଏହି ବିବାହରେ ବରକର୍ତ୍ତା ଥିଲେ ଜନନାୟକ ଡ଼. ହରେକୃଷ୍ଣ ମହତାବ ଓ କନ୍ୟାପିତା ଥିଲେ ଶ୍ରୀ ନବକୃଷ୍ଣ ଚୌଧୁରୀ। ଆଚାର୍ଯ୍ୟ ହରିହର ଦାସ ଏ ବିବାହରେ ପୁରୋହିତ ହୋଇଥିଲେ।

- ୧୯୪୮ ମସିହା ଏପ୍ରିଲ ୨୦ ତାରିଖର ଦିନ ଅନୁଗୁଳଠାରେ ପ୍ରଥମ ସନ୍ତାନ ତପନ କୁମାରଙ୍କ ଜନ୍ମ।

- ୧୯୫୧ ମସିହା ଫେବୃୟାରୀ ୧୨ ତାରିଖ ଦିନ ଦ୍ୱିତୀୟ ସନ୍ତାନ ସବିତାଙ୍କ ଜନ୍ମ।

- ୧୯୫୫ ମସିହା ଜୁନ୍ ୧୦ ତାରିଖ ଦିନ ଭୁବନେଶ୍ୱରରେ ତୃତୀୟ ସନ୍ତାନ ସୁଜାତାଙ୍କ ଜନ୍ମ।

- ୧୯୫୭ ମସିହା ମେ ୨୦ ତାରିଖ ଦିନ ପୁରୀରେ କନିଷ୍ଠ କନ୍ୟା ସୁମିତ୍ରାଙ୍କ ଜନ୍ମ।

**ଓଡ଼ିଶା ବିଧାନସଭାର ସଦସ୍ୟତା -**

୧୯୪୬ ମସିହାରେ ପ୍ରଥମ ବିଧାନସଭାକୁ ନିମାପଡ଼ା-କାକଟପୁର ନିର୍ବାଚନ ମଣ୍ଡଳୀରୁ ଭାରତୀୟ ଜାତୀୟ କଂଗ୍ରେସ ଟିକେଟରେ ନିର୍ବାଚିତ ହୋଇ ୧୯୫୧ ମସିହା ଯାଏ ପ୍ରତିନିଧିତ୍ୱ କରିଥିଲେ।

୧୯୫୨ ମସିହାରେ ପୁନର୍ବାର ପିପିଲି-ଡେଲାଙ୍ଗ ନିର୍ବାଚନ ମଣ୍ଡଳୀରୁ ଭାରତୀୟ ଜାତୀୟ କଂଗ୍ରେସ ପ୍ରାର୍ଥୀଭାବେ ନିର୍ବାଚିତ ହୋଇ ୧୯୫୬ ମସିହାଯାଏ ରାଜ୍ୟ ବିଧାନସଭାରେ ପ୍ରତିନିଧିତ୍ୱ କରିଥିଲେ।

ରାଜାରାଜୁଡ଼ା ଶାସନର ବିଲୋପ, ଜମିଦାରୀ ସତ୍ୱାଧିକାର ବିଲୋପ, ଓଡ଼ିଶା ଭୂସଂସ୍କାର ଆଇନ୍, ଭାଗଚାଷୀ ଆଇନ୍ ତଥା ଓଡ଼ିଆକୁ ସରକାରୀ ଭାଷାର ମାନ୍ୟତା ପ୍ରଦାନ କରିବା ବିଧେୟକ ପାଶ୍ କରିବାରେ ତାଙ୍କର ଭୂମିକା ସର୍ବଜନବିଦିତ।

**ଜରୁରୀ କାଳୀନ ପରିସ୍ଥିତିରେ କାରାବରଣ -**

ଇନ୍ଦିରାଗାନ୍ଧୀ ୧୯୭୫ ମସିହାରେ ସାରା ଭାରତବର୍ଷରେ ଜାରି କରିଥିବା ଜରୁରୀକାଳୀନ ପରିସ୍ଥିତିର ମୁକାବିଲା କରି ଗିରଫ୍ ହେଲେ ଓ ପୁରୀ ଜେଲ୍‌ରେ ବର୍ଷାଧିକ ସମୟ କାରାବରଣ କଲେ।

**ବିଭିନ୍ନ ସମୟରେ ବହନ କରିଥିବା ଗୁରୁଦାୟିତ୍ୱ -**

- ପୁରୀ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ - ୧୯୫୦ ମସିହା।

- ଭୁବନେଶ୍ୱରରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନ ଅଭ୍ୟର୍ଥନା ଏବଂ ପ୍ରଦର୍ଶନୀ କମିଟିର ସମ୍ପାଦକ - ୧୯୬୪ ମସିହା।

- ଉତ୍କଳ ନବଜୀବନ ମଣ୍ଡଳର ସମ୍ପାଦକ ୧୯୬୧-୬୨ ରୁ କୋଷାଧ୍ୟକ୍ଷ ୧୯୬୩ ମସିହା ରୁ ୧୯୮୬ ଏବଂ ସଭାପତି ୧୯୮୮ ରୁ ୧୯୮୯ ମସିହା।

- ଓଡ଼ିଶା ଖଦୀ ଓ ଗ୍ରାମଦ୍ୟୋଗ ବୋର୍ଡର ସଭାପତି ୧୯୬୫-୬୮ ମସିହା।

- ଉତ୍କଳ କଂଗ୍ରେସ ରାଜ୍ୟ ସଂପାଦକ - ୧୯୬୨ ମସିହା।

- ଓଡ଼ିଶା ଭୂଦାନ ଯଜ୍ଞ ସମିତିର ଉପସଭାପତି ଓ ପ୍ରଶାସନିକ ଅଧିକାରୀ ୧୯୭୮-୧୯୮୦ ମସିହା।

- ଓଡ଼ିଶା ଖଦୀ ଓ ଗ୍ରାମଦ୍ୟୋଗ ବୋର୍ଡର ସଭ୍ୟ ୧୯୯୦-୧୯୯୨ ମସିହା।

- ଆଚାର୍ଯ୍ୟ ହରିହର ସ୍ମୃତି ସଂସଦର ସଭାପତି

- ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟର ସଭାପତି।

- ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି।

- ଓଡ଼ିଶା ଖଦୀ ମଣ୍ଡଳର ସଭ୍ୟ।

- କଳାହାଣ୍ଡି ବିକାଶ ପରିଷଦର ଆଜୀବନ ସଦସ୍ୟ।

- ଉତ୍କଳ ଗାନ୍ଧୀସ୍ମାରକ ନିଧିର ସଂପାଦକ।

- ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ କମିଟିର ସଭ୍ୟ।

**ସମ୍ବର୍ଦ୍ଧନା ଓ ସମ୍ମାନ -**

- ୨ୟ ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ଚୌଧୁରୀ ସ୍ମାରକ ସମ୍ମାନ - ୨୦୦୪

- ଭାରତର ରାଷ୍ଟ୍ରପତି ଅବ୍‌ଦୁଲ୍ କଲାମଙ୍କ ଦ୍ୱାରା ସ୍ୱତନ୍ତ୍ର ସ୍ୱାଧୀନତା ସଂଗ୍ରାମୀ ସମ୍ମାନ - କ୍ରାନ୍ତିଦିବସ ୯ ଅଗଷ୍ଟ ୨୦୦୩ ମସିହା ।

- ଚିନ୍ତାମଣି ପାଣିଗ୍ରାହୀ ସ୍ମୃତି ସମ୍ମାନ - ୨୦୦୬

- ଜ୍ଞାନ ମଣ୍ଡଳ ଫାଉଣ୍ଡେସନ୍ ତରଫରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସମ୍ମାନ - ୨୦୦୪

**ଦେହାବସାନ**

ଭୁବନେଶ୍ୱରସ୍ଥିତ ନିଜଘର ୩୬, ବୁଦ୍ଧନଗରରେ ସେ ୧୯୬୯ ଠାରୁ ସପରିବାର ରହୁଥିଲେ । ୯୧ ବର୍ଷ ବୟସରେ ହଠାତ୍ ଗାଧୁଆ ଘରେ ପଡ଼ିଯାଇ ସଂଜ୍ଞାହୀନ ହୋଇଗଲେ । ପରବର୍ତ୍ତୀ ଅବସ୍ଥାରେ କଳିଙ୍ଗ ହସ୍‌ପିଟାଲ୍ ଏବଂ ସ୍ୱର୍ଣ୍ଣ ନର୍ସିଂହୋମ୍‌ରେ ପ୍ରାୟ ମାସାଧିକ କାଳ ଚିକିତ୍ସିତ ହେବା ସମୟରେ ସେ ଫୁସ୍‌ଫୁସ୍ କର୍କଟ ରୋଗରେ ପୀଡ଼ିତ ଥିବାର ଜଣାପଡ଼ିଲା । ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ୨୦୦୮ ମସିହା ଅଗଷ୍ଟ ମାସ ୨୫ ତାରିଖ ନନ୍ଦୋତ୍ସବ ଦିନ, ରାତି ୯ଟା ସମୟରେ ସେ ଦେହତ୍ୟାଗ କଲେ । ୨୬ ତାରିଖ ସକାଳେ ପୁରୀ ସ୍ୱର୍ଗଦ୍ୱାର ଠାରେ ଶେଷ କ୍ରିୟା ସମାପନ । ସେପ୍‌ଟେମ୍ବର ୪ ତାରିଖ ଦିନ ଦଶାହ ଉପଲକ୍ଷେ ସର୍ବଧର୍ମ ପ୍ରାର୍ଥନା ସଭାରେ ସମାଜର ବିଭିନ୍ନ ବର୍ଗର ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିଥିଲେ ।

# ନିଷ୍ଠାରେ ଅଟଳ ଅବିଚଳ ତପସ୍ୱୀ

ପ୍ରହଲ୍ଲାଦ କୁମାର ସିଂହ

୧୯୧୮ ସେପ୍ଟେମ୍ବର ତିନି ତାରିଖରେ ପୁରୀ ଜିଲ୍ଲାର ନିମାପଡ଼ା ନିକଟବର୍ତ୍ତୀ ତୋରିହଁ ଗାଁର ଏକ ଅସ୍ୱଚ୍ଛଳ ପରିବାରରେ ତାଙ୍କର ଜନ୍ମ। ବାଲ୍ୟାବସ୍ଥାରେ ପିତାଙ୍କୁ ହରାଇଥିଲେ। ବିଧବା ମାଆ ଓ ବଡ଼ ଦୂଇଭାଇଙ୍କ ତତ୍ତ୍ୱାବଧାନରେ ବାଲ୍ୟଶିକ୍ଷା ଶେଷ କରିବା ପରେ ମଉସାଁ ଭାଇ ସ୍ୱାଧୀନତା ସଂଗ୍ରାମୀ ଅଭିରାମ ମହାନ୍ତି ତାଙ୍କୁ ଉଚ୍ଚଶିକ୍ଷା ପାଇଁ ପୁରୀ ଆଣି ଏକ ମଠରେ ରଖାଇଥିଲେ। ପୁରୀ ଜିଲ୍ଲା ସ୍କୁଲରେ ଷଷ୍ଠରୁ ଏକାଦଶ ପର୍ଯ୍ୟନ୍ତ ପଢ଼ିବା ବେଳେ ତାଙ୍କ ସଂଗ୍ରାମୀ ଜୀବନର ମୂଳଦୂଆ ପଡ଼ିଥିଲା। ଷଷ୍ଠ ଶ୍ରେଣୀର ଛାତ୍ରଥିବା ବେଳେ ମାତ୍ର ୧୩ ବର୍ଷ ବୟସରେ ଜୟକୃଷ୍ଣ ୧୯୩୧ ମସିହାରେ ଖଦଡ଼ ପିନ୍ଧି, ହାତରେ କଂଗ୍ରେସ ପତାକା ଧରି ବ୍ରିଟିଶ୍ ବିରୋଧୀ ସ୍ଲୋଗାନ୍ ଦେଇ ପିକେଟିଂରେ ଯୋଗଦେବା ଥିଲା ଏକ ଉଲ୍ଲେଖନୀୟ ଘଟଣା। ସେଦିନ ପୁରୀ ଟାଉନ୍ ଥାନାରେ ତାଙ୍କୁ ଦିଆଯାଇଥିବା ଶାରୀରିକ ନିର୍ଯ୍ୟାତନା ତାଙ୍କୁ ଡରାଇବା ପରିବର୍ତ୍ତେ ଅବଶିଷ୍ଟ ଜୀବନ ପାଇଁ ସମସ୍ତ ଡର, ଭୟ ଛଡ଼ାଇ ଦେଇଥିଲା।

ଖୁବ୍ ଭଲ ପାଠ ପଢୁଥିଲେ ସେ। ଉତ୍କଟ ଦାରିଦ୍ର୍ୟ ମଧ୍ୟରେ ବି ନିଜର ନିଷ୍ଠା ଓ ଅଧ୍ୟବସାୟ ବଳରେ ଶ୍ରେଣୀରେ ପ୍ରଥମ ହେଉଥିବାରୁ ବିଦ୍ୟାଳୟର ଶିକ୍ଷକମାନଙ୍କର ସେ ସ୍ନେହର ପାତ୍ର ଥିଲେ। ପୁସ୍ତକ ଜ୍ଞାନ ସହ ଦେଶ ଓ ଜାତିର ଅବସ୍ଥାକୁ ସେ ଅଧ୍ୟୟନ କରୁଥିଲେ। ଏହି କ୍ରମରେ ପୁରୀରେ ଅବସ୍ଥାପନ କରୁଥିବା ବଙ୍ଗର କେତେକ ସଶସ୍ତ୍ର ସଂଗ୍ରାମୀଙ୍କ ସହ ତାଙ୍କର ନିୟମିତ ଯୋଗସୂତ୍ର ରହିଥିଲା। ନିଜର କେତେଜଣ ସହପାଠୀଙ୍କୁ ମଧ୍ୟ ସେ ଏଥିରେ ସାମିଲ୍ କଲେ। ମେଟ୍ରିକ ପାଶ୍ ପରେ ପ୍ରଧାନଶିକ୍ଷକ ହରିହର ମିଶ୍ର ତାଙ୍କୁ ସେତେବେଳର ବିଶିଷ୍ଟ ଉଦ୍ଭିଦ ବିଜ୍ଞାନୀ ତଥା ରେଭେନ୍ସା କଲେଜର ପ୍ରଫେସର ପ୍ରାଣକୃଷ୍ଣ ପରିଜାଙ୍କ ସହ ପରିଚିତ କରାଇଲେ। ପରିଜା ସାହେବଙ୍କ ପ୍ରେରଣା ଓ ସାହାଯ୍ୟ ନେଇ ସେ କଟକ ଆସି ରେଭେନ୍ସା କଲେଜରେ ଆଇ.ଏସ୍.ସି. ପଢ଼ିଲେ। ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବାବାଜୀ ଚୈତନ୍ୟ ଚରଣ ଦାସ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଆଦି ତାଙ୍କୁ ସହଯୋଗର ହାତ ବଢ଼ାଇଲେ। ତେବେ ପ୍ରଚଣ୍ଡ ଦାରିଦ୍ର୍ୟ ବିରୋଧରେ ଲଢ଼ି ଲଢ଼ି ସ୍ୱାଭିମାନୀ ହୋଇଉଠିଥିବା ଏହି ସଂଗ୍ରାମୀ ତରୁଣ ଟିଉସନ୍ କରି ପାଠପଢ଼ା କରିବା ସହ କର୍କଟ ରୋଗଗ୍ରସ୍ତା ମାଆଙ୍କୁ କଟକ ଆଣି ଡାକ୍ତରଖାନାରେ ଭର୍ତ୍ତିକଲେ। ଅବଶ୍ୟ ସେଠାରେ ତାଙ୍କ ମା'ଙ୍କର ଦେହାନ୍ତ ହୋଇଥିଲା। ଆଇ.ଏସ୍‌ସି. ପାଶ୍ କରି ସେ ରେଭେନ୍ସା କଲେଜରେ ରସାୟନ ବିଜ୍ଞାନ ଅନର୍ସ ନେଇ ବି.ଏସ୍‌ସି. ପଢ଼ିଲେ। ବିଭାଗୀୟ ପ୍ରଫେସର ବଳଭଦ୍ର ପ୍ରସାଦ ତାଙ୍କୁ ଅବଶ୍ୟ ଲେବୋରେଟୋରୀ ଆସିଷ୍ଟାଣ୍ଟ ଚାକିରୀଟିଏ ଦେଇଥିଲେ। ଏଣେ ଆନ୍ଦୋଳନର ତୂର୍ଯ୍ୟନାଦ, ତେଣେ ନିଜର ଭବିଷ୍ୟତ। ଜାତୀୟ କବି ବୀର କିଶୋରଙ୍କ 'ରଣ ଦୁନ୍ଦୁଭି'ର ଗର୍ଜନ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା।

ରଣ ସମୟରେ ବହି ଧରିବାକୁ
ମତେ ଆଉ ତମେ କହନା
ଛାତିର ରକତ ତାତି ଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା।

ଯୁବକ ମନ ତାଙ୍କର ଅଥୟ ହୋଇ ଉଠିଲା। ପଳାଇଲେ କଲିକତା। ଟେରରିଷ୍ଟ ପାର୍ଟି ସୌଜନ୍ୟରୁ ପିସ୍ତଲ ଚାଳନା, ବୋମା ତିଆରି, ଗରିଲା ଯୁଦ୍ଧ ଆଦି ତାଲିମ୍ ନେଇ ପୁଣି ଫେରିଲେ। ସେତେବେଳକୁ ଦ୍ୱିତୀୟ

ବିଶ୍ୱଯୁଦ୍ଧ ସମୟ। ଭୀରୁ ଇଂରେଜମାନେ ଜାପାନୀ ସେନା ଭୟରେ କଟକରୁ ଓଡ଼ିଶା ରାଜଧାନୀ ଉଠାଇ ନେଇଥାନ୍ତି ସମ୍ବଲପୁରକୁ। ନବବାବୁ, ମାଳତୀ ଦେବୀଙ୍କ ଘନ ଘନ ଡାକରା ଆସୁଥାଏ। ଶେଷରେ ସବୁଦିନ ପାଇଁ କଲେଜ ପାଠରେ ଡୋରିବାନ୍ଧି ଜୟକୃଷ୍ଣ, ସହପାଠୀ ବନମାଳୀ ପଟ୍ଟନାୟକ, ଉପେନ୍ଦ୍ର ମହାନ୍ତି, ଫକୀର ମିଶ୍ର ଆଦିଙ୍କ ସହିତ ଆନ୍ଦୋଳନର ବହ୍ନିକୁ ଇନ୍ଧନ ପ୍ରଦାନ କଲେ। ପୁରୀ ଜିଲ୍ଲାରେ ବୁଡ଼ିଯାଉଥିବା କଂଗ୍ରେସ ସଙ୍ଗଠନକୁ ଉଦ୍ଧାର ପାଇଁ ଆଚାର୍ଯ୍ୟ ହରିହରଙ୍କ ତାଲିମ୍‌ରେ ସେମାନେ ଲାଗିପଡ଼ିଲେ। ଅଳ୍ପ କେଇ ଦିନରେ ସେମାନେ ହୁଲସ୍ଥୁଲ୍ ପରିସ୍ଥିତି ସୃଷ୍ଟି କଲେ। ଚାହୁଁ ଚାହୁଁ ଆସିଲା ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ। ଲୁଚି ଛପି ଆନ୍ଦୋଳନକୁ ଏହି ଯୁବଗୋଷ୍ଠୀ ବ୍ୟାପକ କରୁଥାନ୍ତି। ଦିନେ ବାଣପୁରରୁ କାମସାରି ଫେରୁଥିବା ବେଳେ ପୁରୀ ରେଳଷ୍ଟେସନ୍‌ରେ ଗିରଫ୍ ହେଲେ ଜୟକୃଷ୍ଣ।

## ଜେଲ୍‌ରେ ହୁଲସ୍ଥୁଲ୍

ଜେଲ୍‌ରେ ବି ସେ ଅସମ୍ଭାଳ ପରିସ୍ଥିତି ସୃଷ୍ଟି କଲେ। ସହବନ୍ଦୀମାନଙ୍କ ସହ ତାଙ୍କୁ ପୁରୀ କୋର୍ଟକୁ ନିଆଯିବା ବେଳେ ସେ ଏପରି ଅବସ୍ଥା ସୃଷ୍ଟି କଲେ ଯେ ଶେଷରେ ଏସ୍.ପି.କୁ ହସ୍ତକ୍ଷେପ କରିବାକୁ ହେଲା। ବଡ଼ଦାଣ୍ଡରୁ କଚେରୀ ପର୍ଯ୍ୟନ୍ତ ଉଠିଲା ପଡ଼ିଲା। ବ୍ରିଟିଶ୍ ଗୋଲାମୀ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ପାଇଁ ବିଚାରାଳୟରେ ବିଚାରପତିଙ୍କୁ ତାଙ୍କ ଖୋଲା ଆହ୍ୱାନ ବେଶ୍ ଚର୍ଚ୍ଚା ହେଲା। ଶେଷରେ ଦେଶଦ୍ରୋହ, ସରକାରୀ କର୍ମଚାରୀ ଓ ପୋଲିସ୍‌ଙ୍କ କାର୍ଯ୍ୟରେ ବାଧାସୃଷ୍ଟି, ବିଚାରପତିଙ୍କୁ ଆନ୍ଦୋଳନ ପାଇଁ ଉସ୍‌କାଇବା ଆଦି ଅଭିଯୋଗରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ କାରାଦଣ୍ଡାଦେଶ ହେଲା। ସେତିକିବେଳେ ପୁରୀ ଜେଲ୍‌ରୁ ଆଉ ଦୁଇଜଣ ଯୁବ ସଂଗ୍ରାମୀ ଅଲେଖ ପାତ୍ର ଓ ଲୋକନାଥ ସେନାପତିଙ୍କ ପାଚେରୀ ଡେଇଁ ଚମ୍ପଟ୍ ମାରିବା ଘଟଣା ବି ଘଟିଥିଲା। ପୁରୀରୁ ଜୟକୃଷ୍ଣଙ୍କୁ ପଠାଗଲା ବ୍ରହ୍ମପୁର ଜେଲ୍‌କୁ। ସେଠି ବି ଅନ୍ୟ ଯୁବ ସଂଗ୍ରାମୀଙ୍କ ସହ ମିଶି ସେ ଜେଲ୍‌ରେ ଜାତୀୟ ପତାକା ଉଡ଼ାଇ ଏପରି ପରିସ୍ଥିତି ସୃଷ୍ଟିକଲେ ଯେ ଶେଷରେ ଜେଲ୍ ଭିତରେ ଲାଠି ଚାଳନା କରିବାକୁ ପୋଲିସ୍ ବାଧ ହୋଇଥିଲା। ବ୍ରହ୍ମପୁର ଜେଲ୍‌ରେ ସେ ବନ୍ଦୀ ଥିବାବେଳେ ମିଥ୍ୟା ମାମଲାରେ ଅଭିଯୁକ୍ତ କରି ସଂଗ୍ରାମୀ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯାଇଥିଲା। ଏଇ କାରାଗାରରେ ରାଜ୍ୟର ପ୍ରମୁଖ ସଂଗ୍ରାମୀମାନଙ୍କଠାରୁ ସେ ଯେଉଁ ଶିକ୍ଷା ପାଇଲେ ତାହା କୌଣସି ବିଶ୍ୱବିଦ୍ୟାଳୟରେ ବି ମିଳିନଥାନ୍ତା।

## ନିର୍ବାଚନ

ସ୍ୱାଧୀନତାର ସୂର୍ଯ୍ୟୋଦୟ ପୂର୍ବରୁ ୧୯୪୬ରେ ବିଧାନସଭା ନିର୍ବାଚନ ଲଢ଼ିବା ଉଦ୍ଦେଶ୍ୟରେ ସଂଗ୍ରାମୀମାନଙ୍କୁ ୧୯୪୫ର ଶେଷ ଭାଗରେ କାରାମୁକ୍ତ କରାଗଲା। ଜୟକୃଷ୍ଣ ଜେଲ୍‌ରୁ ଫେରି ପୁଣି କଂଗ୍ରେସ କାମରେ ମାତିଲେ। ଏଥର ଅଫିସ୍ ହେଲା ସହବନ୍ଦୀ ପୁରୀର ଭଗବାନ (ଜଟୀ) ପଢ଼ିଆରୀଙ୍କ ଦାଣ୍ଡଘର ଓ ବାରଣ୍ଡାରେ। ପଦ୍ମଚରଣ ସାମନ୍ତସିଂହାର, ଭବାନୀ ଚରଣ ପଟ୍ଟନାୟକ, ଗୋବିନ୍ଦ ତ୍ରିପାଠୀ, କସ୍ତୁରୀ ନାୟକଙ୍କ ଭଳି ଆଉ କେତେ ଜେଲ୍ ସାଥୀ ବି ଲାଗିପଡ଼ିଲେ। ନିଜପାଇଁ କିଛି ପାଇବାର ଆଶା ନାହିଁ କିମ୍ବା ନିଜର କିଛି ହଜିଯିବାର ଭୟ ନାହିଁ। ନିରଳସ କର୍ମୀଟିଏ। ହଠାତ୍ ଦିନେ ସାଥୀ ବନମାଳୀ ପଟ୍ଟନାୟକ ଝଡ଼ପରି ଆସି ତାଙ୍କୁ ଗୋଟିଏ ଫର୍ମରେ ଦସ୍ତଖତ ଦେବାକୁ କହିଲେ। ସେଇଟି ଥିଲା କାକଟପୁର-ଅସ୍ତରଙ୍ଗ-ଗୋପ-ନିମାପଡ଼ାକୁ ନେଇ ଗଠିତ ବିଧାନସଭା ଆସନ ପାଇଁ ପ୍ରାର୍ଥୀପତ୍ର। ରୋକ୍‌ଠୋକ୍ ମନାକରିଦେଲେ ସେ। ଆଚାର୍ଯ୍ୟ ହରିହର ଓ ଅନ୍ୟ ବହୁ ବୟସ୍କ ତଥା ବରିଷ୍ଠ ନେତା ଥିବାବେଳେ ସେ କାହିଁକି ପ୍ରାର୍ଥୀ ହେବେ ବୋଲି ପାଲଟା ପ୍ରଶ୍ନ କଲେ ରାଜ୍ୟ ନେତୃତ୍ୱକୁ। ପରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ମହାଶୟ ଆଦି ବହୁତ ବୁଝାଶୁଝା

କରିବାରୁ ସେ ପ୍ରାର୍ଥୀପତ୍ର ଦାଖଲ କଲେ ଓ ନିର୍ଦ୍ୱନ୍ଦରେ ନିର୍ବାଚିତ ହେଲେ ମଧ୍ୟ। ୧୯୫୨ରେ ବି ଦଳର ନିର୍ଦ୍ଦେଶରେ ସେ ପିପିଲି ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ବିଧାନସଭାକୁ ଆସିଥିଲେ। ଦଳୀୟ ପାଣ୍ଠିରୁ ମିଳିଥିବା ଅଢ଼େଇ ଶହ ଟଙ୍କା ମାତ୍ର ଦ୍ୱିତୀୟ ନିର୍ବାଚନରେ ତାଙ୍କ ପାଇଁ ଖର୍ଚ୍ଚ ହୋଇଥିଲା। ଦଳୀୟ ଟିକେଟ୍‌ଠାରୁ ଭୋଟ ପର୍ଯ୍ୟନ୍ତ ଅର୍ଥବଳ, ବାହୁବଳର ଆଜି ଯେତେବେଳେ ଖୋଲା ଅପପ୍ରୟୋଗ ଚାଲିଛି, ସେତେବେଳେ ସେ ନିଶ୍ଚୟ ଏକ ଉଦାହରଣ।

## ବିବାହ

ବିଧାୟକ ଥିବା ବେଳେ ୧୯୪୭ ମଇ ୨୦ ତାରିଖ ଦିନ ତାଙ୍କୁ ବିବାହ କରାଇ ଦିଆଗଲା କିରଣ ଲେଖା ରାୟଙ୍କ ସହ। ଆଚାର୍ଯ୍ୟ ମହାଶୟ ଓ ମାଳତୀ ଦେବୀ ଥିଲେ ଏହି ବିବାହର ସୂତ୍ରଧର। ମଣିକାଞ୍ଚନ ସଂଯୋଗ ପରି ମାତ୍ର ୧୬ ବର୍ଷ ବୟସରେ ଭାରତଛାଡ଼ ଆନ୍ଦୋଳନରେ କାରାବରଣ କରିଥିବା ବରୀ ଆଶ୍ରମର ଅନ୍ତେବାସିନୀ କୁମାରୀ କିରଣ ଲେଖା ହେଲେ ତାଙ୍କ ଜୀବନସାଥୀ। ଜାତି-ଜାତକ-ଯୌତୁକ ଓ ଆଡମ୍ବର ବିବର୍ଜିତ ଏହି ବିବାହ ବୈଦିକ ରୀତିରେ ହୋଇଥିଲା। ସେଦିନ ପୁରୁଣା ଖଦି ବସ୍ତ୍ର ପିନ୍ଧି ସାଇକେଲ୍‌ରେ ବିଧାୟକ ବର ଆସିଥିଲେ ପୁରୀ ରେଳ ଷ୍ଟେସନ୍‌କୁ। ସେଠାରୁ ରେଳଯୋଗେ କଟକ। ବରପିତା ହେଲେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ। ସେ ବରକୁ ଧରି ତାଙ୍କ କଟକ କିଲ୍ଲାକୋଠାରୁ ଗଲେ କନ୍ୟାପିତା ହୋଇଥିବା ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ କନିକା କୋଠୀକୁ। ଏହି ଆଦର୍ଶ ବିବାହ ଉତ୍ସବରେ ପୌରୋହିତ୍ୟ କରିଥିଲେ ସ୍ୱୟଂ ଆଚାର୍ଯ୍ୟ ହରିହର ଦାସ ଓ ବାବାଜୀ ବଳଭଦ୍ର ମିଶ୍ର। ଆଉ ବାରିକିଆଣୀ ଭୂମିକା ତୁଲାଇଥିଲେ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା - ଚୁନିଅପା।

## କାମ ଆଉ କାମ

ବିଧାୟକ ଭାବେ ଜୟକୃଷ୍ଣ ବାବୁ ସରକାରଙ୍କଠାରୁ ଯେଉଁ ଭତ୍ତା ପାଉଥିଲେ ସେଥିରୁ ଅଧରେ ଚଳି ଅବଶିଷ୍ଟାଂଶ କଂଗ୍ରେସ ପାଣ୍ଠିକୁ ଦେଉଥିଲେ। ନିଜ ନିର୍ବାଚନ ମଣ୍ଡଳୀରେ ସାଇକେଲଟିଏ ଧରି ଏ ମୁଣ୍ଡରୁ ସେମୁଣ୍ଡ ବୁଲୁଥିଲେ। ଯେଉଁ ଗାଁରେ ପହଞ୍ଚୁଥିଲେ ସେଠି ଲୋକେ ତାଙ୍କ ଖାଇବା ରହିବା କଥା ବୁଝୁଥିଲେ। ଭାଗଚାଷୀଙ୍କ ସ୍ୱାର୍ଥ ରକ୍ଷା, ଭୂସଂସ୍କାର, ଲୋକଙ୍କ ହାତକୁ କ୍ଷମତା ଅର୍ପଣ, ଓଡ଼ିଆକୁ ସରକାରୀ ଭାଷା କରିବା, ନିଶା ନିବାରଣ, ଆଦିବାସୀଙ୍କୁ ଶୋଷଣରୁ ମୁକ୍ତି ଆଦି କ୍ଷେତ୍ରରେ ଉଭୟ ସରକାରୀ କଳ ଓ ବିଧାନସଭାରେ ସେ ସକ୍ରିୟ ଭୂମିକା ଗ୍ରହଣ କରୁଥିଲେ। ନିଜ ନିର୍ବାଚନ ମଣ୍ଡଳୀରେ ସରକାରଙ୍କ ପ୍ରଣୀତ ଆଇନର କାର୍ଯ୍ୟକାରୀତା ପାଇଁ ସେ ପ୍ରତ୍ୟକ୍ଷ ଜନସମ୍ପର୍କ ଅଭିଯାନ ଚଳାଇ ଜମିଦାର ଓ ମଠମହନ୍ତଙ୍କ ହୃତ୍‌କମ୍ପନ ବଢ଼ାଇ ଦେଉଥିଲେ। ସେମାନଙ୍କ ହାତରୁ ଛଡ଼ାଇ ଅନେକ ଜମି ଚାଷୀଙ୍କୁ ମଧ୍ୟ ଦିଆଇଥିଲେ। କୃଷି, ରାସ୍ତାଘାଟ, ଶିକ୍ଷା ଆଦିର ବିକାଶ କ୍ଷେତ୍ରରେ ମଧ୍ୟ ଅନେକ କାର୍ଯ୍ୟ କରିଥିଲେ। ଏଥି ସହ କଂଗ୍ରେସ ସଙ୍ଗଠନ ପାଇଁ ମଧ୍ୟ ସମର୍ପିତ ହୋଇ କାର୍ଯ୍ୟ କରୁଥିଲେ। ବର୍ତ୍ତମାନର 'ପରସେଣ୍ଟଜ୍' ଓ 'ଷ୍ଟାଟସ୍ ଓରିଏଣ୍ଟେଡ୍' ରାଜନୀତିର ଲୁଟେରା, ପେଷାଦାର, ମୁନାଫାଖୋର ପ୍ରତିନିଧିଙ୍କୁ ଯେଉଁମାନେ ଦେଖୁଛନ୍ତି ସେମାନେ ଜୟକୃଷ୍ଣ ମହାନ୍ତିଙ୍କୁ ନିଶ୍ଚୟ କିମ୍ବଦନ୍ତୀ ମନେ କରିବେ।

ବିଧାନସଭାରୁ ଯିବା ପରେ ନବବାବୁ ଓ ମାଳତୀ ଦେବୀଙ୍କ ଅନୁରୋଧକ୍ରମେ ନବଜୀବନ ମଣ୍ଡଳର ଦାୟିତ୍ୱ ନେଇ ଆଦିବାସୀ କ୍ଷେତ୍ରରେ ଅନେକ କାର୍ଯ୍ୟ କଲେ। ଭୂଦାନ, ସର୍ବୋଦୟ ଆନ୍ଦୋଳନରେ ବି ତାଙ୍କର ଅବଦାନ ଉଲ୍ଲେଖନୀୟ। ରାଜ୍ୟ ଖଦି ବୋର୍ଡର ଅଧ୍ୟକ୍ଷ ଓ ଭୂଦାନ ଯଜ୍ଞ ସମିତିର ପ୍ରଶାସକ ଭାବେ ତାଙ୍କ ନିଷ୍ଠାପର ଉଦ୍ୟମକୁ ଏବେ ବି ଅନେକେ ଝୁରୁଛନ୍ତି। ବନ୍ୟା, ମରୁଡ଼ି, ବାତ୍ୟା ପରି ଦୁର୍ବିପାକ ହେଉ ଅଥବା ସାମ୍ପ୍ରଦାୟିକ ଦଙ୍ଗାଠାରୁ ଆରମ୍ଭ କରି ବିଭିନ୍ନ ଜନଆନ୍ଦୋଳନ ହେଉ ତାଙ୍କର ଉପସ୍ଥିତି ସର୍ବତ୍ର। ୯୦ ବର୍ଷ ବୟସରେ ମଧ୍ୟ ଅନୁଗୋଳରୁ ଗଜପତି ପର୍ଯ୍ୟନ୍ତ

ସେ ଘୁରି ବୁଲୁଥିଲେ। ଉତ୍କଳ ସର୍ବୋଦୟ ମଣ୍ଡଳ, ବାଜିରାଉତ ଛାତ୍ରାବାସ, ସର୍ବୋଦୟ ରିଲିଫ୍ କମିଟି, ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ, ଗାନ୍ଧୀ ସ୍ମାରକ ନିଧି, ସର୍ବୋଦୟ ପତ୍ରିକା, ଉତ୍କଳ ଖଦି ମଣ୍ଡଳ, କଳାହାଣ୍ଡି ବିକାଶ ପରିଷଦ ଆଦି ବହୁ ଅନୁଷ୍ଠାନ ସହ ସେ ସକ୍ରିୟ ଭାବେ ଜଡ଼ିତ ଥିଲେ। ଜୀବନର ଚଲାପଥରେ ଯେତେ ଧକ୍‌କା ଖାଇ ଆଘାତ ପ୍ରାପ୍ତ ହେଲେ ବି ଯାତ୍ରା ତାଙ୍କର ଅଟକି ନଥିଲା। ଅନ୍ୟମାନଙ୍କୁ ସମାଜ ଓ ଶାସନ ବ୍ୟବସ୍ଥାରେ ସୁଧାର ପାଇଁ ସେ ଶତତ ପ୍ରେରଣା ଦେଇ ଆସୁଛନ୍ତି।

ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ ଶାନ୍ତି ଆନ୍ଦୋଳନରେ ଯୋଗଦେଇ ଜୟକୃଷ୍ଣ ମଧ୍ୟ ସ୍ୱାଧୀନ ଭାରତରେ କାରାବରଣ କରିଛନ୍ତି। ନବବାବୁ, ମହତାବ ବାବୁ, ବିଜୁବାବୁ, ବିରେନ୍ ମିତ୍ର, ନୀଳମଣୀ ରାଉତରାୟ, ସଦାଶିବ ତ୍ରିପାଠୀ ଆଦିଙ୍କ ସହ ଏତେ ଘନିଷ୍ଠତା ଥାଇ ମଧ୍ୟ ସେ କେବେ କ୍ଷମତା ରାଜନୀତିରୁ ଫାଇଦା ଉଠାଇ ନାହାନ୍ତି।

୧୯୬୯ରୁ ଭୁବନେଶ୍ୱରରେ ସେ ଅବସ୍ଥାନ କଲେ। ସେତେବେଳେ ପରିବାର ଚଳାଇବା ପାଇଁ ଘରେ ସେ ଗୋପାଳନ ଓ କୁକୁଡ଼ାଚାଷ କରିବା ନିଷ୍ପତ୍ତି ଏବେକାର ରାଜନେତାମାନଙ୍କୁ ବିଶ୍ୱାସ ହେବନାହିଁ। ତାଙ୍କର ଚାରଟିଯାକ ସନ୍ତାନ ମଧ୍ୟରୁ ପୁଅ ତପନ ଓ ଝିଅ ସବିତା ଡାକ୍ତର, ଜ୍ୱାଇଁ ଅଖିଳମୋହନ ମଧ୍ୟ ଜଣେ ଡାକ୍ତର। ଅନ୍ୟ ଦୁଇଝିଅ ସୁଜାତା ଓ ସୁମିତ୍ରା ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତା। ସମସ୍ତେ ସ୍ୱାବଲମ୍ବୀ। ସମସ୍ତଙ୍କ ବିବାହ ମଧ୍ୟ ବିନା ଯୌତୁକରେ ହୋଇଛି। ୧୯୭୭ରେ ପତ୍ନୀ କିରଣ ଲେଖା ପିପିଲିରୁ ବିଧାନସଭାକୁ ନିର୍ବାଚିତା ହୋଇ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି। ସେବା ଓ ସଂଗ୍ରାମ କ୍ଷେତ୍ରରେ ଏ ଦମ୍ପତିଙ୍କ ଜୀବନର ପ୍ରତିଟି ପୃଷ୍ଠା ସମୁଜ୍ଜ୍ୱଳ। ୧୯୯୭ ମଇ ୧୧ ତାରିଖରେ କିରଣଲେଖାଙ୍କ ଦେହାବସାନ ଘଟିଛି। ସେ ସିନା ତାଙ୍କୁ ଏକଲା ଛାଡ଼ିଦେଇ ଚାଲିଗଲେ। ହେଲେ ଏକ ବୃହତ୍ତର ସାମାଜିକ ପରିବାରରେ ଅନେକ ଘରେ ଅଜାଠାରୁ ନାତି ପର୍ଯ୍ୟନ୍ତ ତିନିଟି ପିଢ଼ି ପାଇଁ ସେ ଆଦରର 'ଜୟୀ ଭାଇ' ଭାବେ ପରିଚିତ ଥିଲେ। ଜୀବନ ସଂଗ୍ରାମରେ ସଙ୍କଳ୍ପବଦ୍ଧ ମନ, ଶୁଦ୍ଧ ଚିନ୍ତନ, ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ଚାଲିଲେ ବିଜୟ ଯେ ସୁନିଶ୍ଚିତ ଏହାର ପ୍ରମାଣ ଥିଲେ ସେ। ଅନେକ ଦିଗହରାଙ୍କ ପାଇଁ ସେ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି। ତାଙ୍କ ବିୟୋଗରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି ହେଲା। ଯାହା ହୁଏତ ସହଜରେ ପୂରଣ ହୋଇ ପାରିବ ନାହିଁ।

ସରକାରୀ ଓକିଲ
ରାଜ୍ୟ ପ୍ରଶାସନିକ ନ୍ୟାୟାଧିକରଣ
ଭୁବନେଶ୍ୱର

# ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ : ଭିନ୍ନ ସ୍ୱାଦର ନେତୃତ୍ୱ

ଅମର ପ୍ରସାଦ ଶତପଥୀ

ଭାରତ ବର୍ଷର ସ୍ୱାଧୀନତା ଆନ୍ଦୋଳନର ସବୁଠୁ ବଡ଼ ଉପଲବ୍ଧି ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ ସୃଷ୍ଟି କରିବା। ଶାନ୍ତି ଓ ଅହିଂସ ପଥରେ ମହାତ୍ମା ଗାନ୍ଧୀଙ୍କ ପଦାଙ୍କ ଅନୁସରଣ କରି ଯେଉଁ କତିପୟ ବ୍ୟକ୍ତି ମୁକ୍ତି ସଂଗ୍ରାମର ମଶାଲ ଓଡ଼ିଶାରେ ଜଳାଇଥିଲେ, ସେମାନଙ୍କ ମଧ୍ୟରେ ସ୍ୱର୍ଗତଃ ଜୟକୃଷ୍ଣ ମହାନ୍ତି ଅନ୍ୟତମ। ସରଳ ଜୀବନ ଯାପନ କରିବା, ପ୍ରଚାର ଓ ପ୍ରତିଷ୍ଠା ଠାରୁ ମାଇଲ ମାଇଲ ଦୂରରେ ରହି ନିଜ ଲକ୍ଷ୍ୟ ଉପରେ ଅବିଚଳିତ ଭାବେ କାର୍ଯ୍ୟ କରିବା, ସ୍ୱର୍ଗତଃ ମହାନ୍ତିଙ୍କ ଜୀବନଯାପନ ଥିଲା।

୧୯୭୫-୭୭ରେ ଜରୁରୀକାଳୀନ ଅବସ୍ଥା ଦେଶରେ ଜାରି ହେଲା। ଏହି ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ଆମେ କେତେଜଣ ସାମିଲ ହୋଇଥିବା କାରଣରୁ ୧୭ ମାସରୁ ଅଧିକ ଜେଲ୍ ମଧ୍ୟରେ ଆବଦ୍ଧ ହୋଇ ରହିବା ପାଇଁ ପଡ଼ିଥିଲା। ଏହି ଅଟକବନ୍ଦୀ ଜୀବନ ମଧ୍ୟରେ, ପୁରୀ ଜେଲରେ ସ୍ୱର୍ଗତଃ ଜୟକୃଷ୍ଣ ମହାନ୍ତିଙ୍କ ସହ ମୋର ଦେଖା ହୁଏ। ଆଦରରେ ଆମେ ସମସ୍ତେ ତାଙ୍କ ଜୟାଭାଇ ବୋଲି ଡାକୁ। ସମସ୍ତଙ୍କୁ ଆପଣା କରିବାରେ ବୟସର ବ୍ୟବଧାନ ତାଙ୍କ ପାଇଁ ବାଧକ ହେଉନଥିଲା। ବିଶେଷ କରି ପୁରୀ ଜେଲ୍‌ରେ 'ମିଶା' ଅଟକବନ୍ଦୀମାନଙ୍କ ପାଇଁ 'ମେସ୍' ଚଳାଇବା ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା। କାହାର କ'ଣ, କୋଉ ଭଳିଆ ଖାଦ୍ୟ ଦରକାର, ଜୟାଭାଇ ମନଲାଖି ଏଇ କାର୍ଯ୍ୟଟିକୁ ସମସ୍ତଙ୍କର ମୁରବୀ ଭାବରେ ଚଳାଉଥିଲେ। ସେ ଭଳି ବ୍ୟକ୍ତିଙ୍କୁ ସହଜରେ ଭୁଲିବା ସମ୍ଭବ ନୁହେଁ। ଆଜି ସେହି ଅନୁଚ୍ଚ ବ୍ୟକ୍ତି ଓ ହସହସ ମୁହଁଟି ସ୍ମୃତିପଟରେ ଭାସି ଯାଉଛି। ସମସ୍ତଙ୍କୁ ଆପଣାଇ ନେବାର କଳା ତାଙ୍କଠାରେ ଥିଲା। ମୋ ଜାଣିବାରେ ତାଙ୍କ ଶତ୍ରୁ କେହିନଥିଲେ। ମିତ୍ର ସଂଖ୍ୟା ଅସୁମାରୀ ଥିଲା।

ସ୍ୱାଧୀନୋତ୍ତର ଭାରତବର୍ଷରେ ସେ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ। ସର୍ବୋଦୟ ଆନ୍ଦୋଳନରେ କେବଳ ସାମିଲ ହୋଇନଥିଲେ, ସବୁବେଳେ ଆଗଧାଡ଼ିରେ ରହୁଥିଲେ। ସେବା କରିବାରେ ସେ ଅପାର ଆନନ୍ଦ ଲାଭ କରୁଥିଲେ। ଆଜିର ବସ୍ତୁବାଦୀ ଦୁନିଆରେ ସେ ଏକ ଭିନ୍ନ ସ୍ୱାଦର ବ୍ୟକ୍ତିତ୍ୱ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ। ବିଭିନ୍ନ କ୍ଷେତ୍ରରେ ନେତୃତ୍ୱ ନେଇଥିଲେ ମଧ୍ୟ ଅହମିକା ତାଙ୍କୁ ସ୍ପର୍ଶ କରିପାରିନଥିଲା। ଅତ୍ୟନ୍ତ ସରଳ, ନିରାଡ଼ମ୍ବର ଜୀବନ ଯାପନରେ ହିଁ ତାଙ୍କର ବ୍ୟକ୍ତିଗତ ରୁଚି ଥିଲା। ସେଭଳି ଅମାୟିକ, ସମାଜ ପାଇଁ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ ଆଜିର ସ୍ୱାର୍ଥାନ୍ୱେଷୀ ସମାଜରେ ବିରଳ। ଘନ ଅନ୍ଧକାର ମଧ୍ୟରେ ସେ ଆଲୋକ ବର୍ତ୍ତୀକା। ସେହି ମହନୀୟ ସଦାଚାରୀ ବ୍ୟକ୍ତିଙ୍କୁ ଅତଃ ନମଃ।

ବିଧାୟକ, ବଡ଼ଚଣା

# କେତେକ ଅଭୁଲା ସ୍ମୃତି



11 Constitution House,
New Delhi,
August 15, 1949.

ସ୍ୱାଧୀନ ଭାରତର ପ୍ରଥମ "ସମ୍ବିଧାନ ସଭା"ର ସଦସ୍ୟ ମହାନ୍ ସଂଗ୍ରାମୀ ସାରଙ୍ଗଧର ଦାସଙ୍କର ସ୍ନେହାସିକ୍ତ ଆଶୀର୍ବାଦ

ଋଷିପ୍ରାଣ ଆଚାର୍ଯ୍ୟ ହରିହର ଦାସଙ୍କର ସ୍ୱହସ୍ତଲିଖିତ ପତ୍ର— ଏକ ଦୁର୍ଲଭ ଦସ୍ତାବିଜ



ଅଜସ୍ର ସ୍ମୃତି ବିଜଡ଼ିତ ତୁମର ଏ ପବିତ୍ର କୁଟୀରରେ
ଆଜି ଛାଇଛି କେତେ ନୀରବତା -